# ହରିଶଙ୍କର



( ଉପନ୍ୟାସ )



ଶ୍ରୀ ଉପେନ୍ଦ୍ରପ୍ରସାଦ ମହାନ୍ତି, ବି.ଏ., ଓ.ଇଓ.

ପ୍ରକାଶକ—
ଟକ ପବ୍ଲିଶିଙ୍ଗ ହାଉସ୍
ନୟାସଡ଼କ, କଟକ

ପ୍ରଥମ ସଂସ୍କରଣ
୧୯୪୭
ମୂଲ୍ୟ ଏକଟଙ୍କା ଦଶଅଣା ମାତ୍ର

ମୁଦ୍ରାକର—
ଶ୍ରୀ ଉମାଚରଣ ମହାନ୍ତି
କଟକ ପବ୍ଲିଶିଂ ପ୍ରେସ୍,
ତେଲଙ୍ଗାବଜାର, କଟକ

# ହରିଶଙ୍କର

## ଉପନ୍ୟାସ



### ପ୍ରଥମ ପରିଚ୍ଛେଦ ।

ହରିଶଙ୍କର ବିଦେଶ ଯାତ୍ରା କରିବାର ଠିକ୍ ପୂର୍ବଦିନ ମା ତାଙ୍କୁ କହିଲେ—"ହରି, ସତେ କାଲି ଯାଉଛୁ ?"

ହରିଶଙ୍କର ଜବାବ୍ ଦେଲେ—ହଁ, ମା, କାଲି ନ ଗଲେ ଉପାୟ ନାହିଁ । ଚିଠି ଉପରେ ଚିଠି, ତା ଉପରେ ଗୋଟାଏ ଟେଲିଗ୍ରାମ ମଧ୍ୟ ଆଜି ପାଇଛି । ସେମାନେ ମୋତେ ଅପେକ୍ଷା କରିଛନ୍ତି । ଅନେକ ଗୁଡ଼ାଏ କାମ କରିବାକୁ ଅଛି, ମୁଁ ନ ଗଲେ ସେମାନେ ବିରକ୍ତ ହେବେ । ତା ଛଡ଼ା ଗୋଟାଏ କାମର ଭାର ମୁଣ୍ଡ ଉପରେ ନେଇ ମୋତେ ନିଶ୍ଚିନ୍ତ ହୋଇ ବସି ରହିବାକୁ ଭଲ ଲାଗେ ନାହିଁ—ତା' ତ ତୁ ଜାଣୁ । ଶୀଘ୍ର ଯାଇ ସେ ସବୁ କାମ ସାରିବାକୁ ହେବ । ମୁଣ୍ଡ ଉପରେ ଗୋଟାଏ ମସ୍ତବଡ଼ ପଥରର ବୋଝ ଲଦା ହୋଇ ରହିଥିଲା ପରି ଜଣାଯାଉଛି, ତା ଗଲେ ରକ୍ଷା । ଯେ ଯା ହେଉ, ତୋର କିଛି କହିବାର ଅଛି ମା ?

ମା କହିଲେ—ନାହିଁ, କାହିଁକି ବାବା, ଅନେକ କଥା କହିବାର ଅଛି । ଅନେକ ଦିନରୁ ବି କହିବି କହିବି ବୋଲି ହେଉଛି କହି ପାରି ନାହିଁ । ତୁ ତ ସବୁବେଳେ ବ୍ୟସ୍ତ, ନାନା କାମରେ ହାତ

ଦେଇଛୁ । ଆଜ ଏଠି ଗୋଟେ ତ କାଲି ଆଉ ଏକ ଜାଗାରେ ।
କହିବାକୁ ଫୁରସତ୍ ମିଳୁଛି କେଉଁଠି ? ପୁଣି ସବୁକଥା ତ ସମାନ
ନୁହେଁ । ଏମିତ ଅନେକ କଥା ଅଛି, ଯା ଠିକଏ ବେଳକାଳ ଦେଖି
କହିବାକୁ ହୁଏ, ଆଉ ଧୀର ସ୍ଥିର ଭାବରେ ବି ଶୁଣିବାକୁ ହୁଏ ।
ଏ କାନରେ ଶୁଣି ଆର କାନରେ ବାହାର କରି ଦେବା ଭଳି କଥା ତ
ସବୁ ନୁହେଁ ।

ହରଶଙ୍କର ଅବାକ୍ ହୋଇ କହିଲେ—କେଉଁ କଥାଟା ତୋର
ଏ କାନରେ ଶୁଣି ଆର କାନରେ ବାହାର କରି ଦେଇଛି ମା ?

ମା ଜବାବ୍ ଦେଲେ—ତା କଣ ମୁଁ କହୁଛି ରେ ହରି ! ସେ ଭଳି
ଚିଲ ଆଉ ଯେ କେଉଁଜଣ କାହିଁକି, ମୋର ହରଶଙ୍କର ନୁହେଁ । ଏଟା
ମୁଁ ବେଶ୍ ଜାଣେ । ମା'ର କଥା ଯେ ଯେ କେବେ ଉଡେଇ ଦେଇ
ଦେଇଛି,—ତା ସାତ ଶତ୍ରୁ ବି କହି ପାରିବ ନାହିଁ, ମୋ କଥା ଦୂରରେ
ଥାଉ । କିନ୍ତୁ ଆଜ ଗୋଟାଏ ବଡ଼ କଥା କହିବାର ଅଛି ବାବା,
ତା ନ କହିଲେ ପ୍ରାଣଟା ବୁଝୁ ନାହିଁ । ତୁ ଠିକଏ ପାଖକୁ ଆ, ମୁଁ
କହୁଛି ।

ହରଶଙ୍କର କୌତୂହଳୀ ହୋଇ ପାଖକୁ ଘୁଞ୍ଚିଯାଇ ବସିଲେ ।
ମା ଆରମ୍ଭ କଲେ—ହରି, ସବୁ ଦିନେ କଣ ନିଜକୁ ଚିଲ ବୋଲି
ମନେ କରିଥିବୁ ?

ହରଶଙ୍କର ମା'ର କଥାଟା ଶୁଣି ହସି ଉଠିଲେ । କହିଲେ—
ଏଇଟା କି ତୋର "ବଡ଼" କଥା ମା ? ତୋ ପାଖରେ ମୁଁ ତ ନିଜକୁ
ବୁଢ଼ା ବୋଲି କଳ୍ପନା କରି ପାରୁ ନାହିଁ । ଆଜ କଣ ତୋ ଆଖିରେ
ମୁଁ ବୁଢ଼ା ପାକଲ ଦେଖା ଯାଉଛି ?

ମା ଉତ୍ତର ଦେଲେ—ହସିବାର କଥା ନୁହେଁ ବାବା । ମୁଁ ଯାହା କହୁଛି ଶୁଣ । ସମୟ ଥିଲା, ଯେତେବେଳେ ସମସ୍ତେ ତୋତେ ପିଲା ବୋଲି ମନେ କରୁଥିଲେ । ତୁ ସେତେବେଳେ ଇସ୍କୁଲ କଲେଜରେ ପାଠ ପଢ଼ୁଥିଲୁ । ଘର ସଂସାର କଣ ଜାଣି ନ ଥିଲୁ । ତୋର ବାପା ଥିଲେ ଘରର ମୁରବି, ସେ ସବୁ ହାଲ ବୁଝୁଥିଲେ, ସବୁ ବିଷୟ ତୁଲାଉଥିଲେ । ସେତେବେଳେ ଭୁଲରେ ବି ତୋତେ କେହି ଘରର ମାଲିକ ବୋଲି କହୁ ନ ଥିଲେ । କିନ୍ତୁ ଆଜି ତ ଆଉ ସେ କଥା ନାହିଁ ବାପା, ସବୁ ଦିନେ ତ ସବୁ କଥା ନ ଥାଏ । ତୋର ବାପାଙ୍କର କାଳ ହୋଇଯିବାର ଆଜିକୁ ଚାରିବର୍ଷ ହୋଇଗଲା । ତୁ ଏବେ ଘରର ମାଲିକ । ଆଜି ତୁ ଆଉ ଫାଙ୍କି ଦେଇ ବୁଲିଲେ ଚଳିବ କି ? ତୋତେ ସଂସାରର ଭାର ମୁଣ୍ଡାଇବାକୁହିଁ ହେବ । ସବୁ ଦିନେ ବାବାଜୀ ବୈରାଗୀ ପରି ହୋଇ ରହିବାଟା ସୁନ୍ଦର ଦିଶୁ ନାହିଁ ବାବା ।

ହରଶଙ୍କର ମା'ର ଉଦ୍ଦେଶ୍ୟଟା ଠିକ୍ ବୁଝି ପାରିଲେ ନାହିଁ । କହିଲେ—ଘର ସଂସାର କି ଆଉ ଉବୁଡ଼ି ଯାଉଛି ମା ? ବାପାଙ୍କର ସିନା କାଳ ହୋଇ ଯାଇଛି, କିନ୍ତୁ ତୁ ତ ଅଛୁ ? ତା ଛଡ଼ା ସମ୍ପତ୍ତି ବାଡ଼ି ଦେଖା ଶୁଣା କରିବା ପାଇଁ ତ ଲୋକର ଅଭାବ ନାହିଁ, ଘରେତ ମାମୁ ରହିଛନ୍ତି । ସବୁବେଳେ ସେ ତ ବୁଝାଶୁଝା କରୁଛନ୍ତି । ତାଙ୍କ ହାତରେ ତ ସମସ୍ତ ବିଷୟସମ୍ପତ୍ତି ନିରାପଦ । ଆଉ ବାବା ବଞ୍ଚିଥିବା ସମୟରେ ବି ସେ ଯେ ବେଶି କିଛି ବୁଝୁଥିଲେ ତା ନୁହେଁ,—ସବୁ ଭାର ତ ସେହି ମାମୁଙ୍କ ଉପରେହିଁ ଥିଲା । ତେବେ ଆଜି ଏ ଘରଟାର କଥା ଭାବି ତୁ ଏତେ ବ୍ୟତିବ୍ୟସ୍ତ ହେଉଛୁ କାହିଁକି ମା ?

ମା କହିଲେ—ତୁ ଯାହା କହିଲୁ ସବୁ ଠିକ୍ ବାବା । କିନ୍ତୁ ଏ ଘରଟା କଣ ଆଜି ଘର ଭଳି ଲାଗୁଛି ହରି !

ହରଶଙ୍କର ଆଶ୍ଚର୍ଯ୍ୟ ହୋଇ ପଚାରିଲେ—କାହିଁକି ମା ? କଣ ହୋଇଛି ?

ମା କହିଲେ—ନା, ବାବା, ଘରର ଶୋଭା ନାହିଁ । ଯାହା ନେଇ ଘରର ଶୋଭା, ତା ଯଦି ଘରେ ନ ଥାଏ ତେବେ ତା ସୁନ୍ଦର ହେବ କାହୁଁ ?

ହରଶଙ୍କର ପଚାରିଲେ—ତେବେ ଘରର ଶୋଭା ଆଉ କଣ ମା ?

ଏହା କହି ସେ ସତୃଷ୍ଣ ନୟନରେ ମା'ର ମୁହଁକୁ ଚାହିଁ ରହିଲେ । ମା ଟିକିଏ ଗୁମ୍ ମାରି କହିଲେ—ବୁଝିଲ୍ ନାହିଁରେ ହରି, ଘରର ଶୋଭା ବଢ଼େ ଘରର ବୋହୂକୁ ନେଇ, କିନ୍ତୁ ସେ ତ ଘରେ ଦଣ୍ଡେ ବି ରହିଲା ନାହିଁ,—ରହିବା ମଧ୍ୟ ତା ପକ୍ଷରେ ମୁଁ କଠିନ ଦେଖୁଛି । ତା ପରେ ପରିତ୍ତିରେ, ଏଡ଼େ ବଡ଼ ଘରଟାରେ ଆଉ କିଏ ଅଛି ଯାହାର ମୁହଁକୁ ଅନେଇ ମୁଁ କାଳକାଟିବି ? ଏତେ ଧନ ଦୌଲତ ଥାଇ ସୁଦ୍ଧା ମୋର କିଛି ନ ଥିଲା ପରି ମନେ ହେଉଛି । ତୁ କଣ ଏ ଅଭାବଟା ବୋଧ କରି ପାରୁନାହୁଁ ବାବା ? ଘରେ ଯଦି ଘରର ଲକ୍ଷ୍ମୀ ଥାନ୍ତା,—କୁଳର ରତ୍ନ କୁଳବୋହୂ ଥାନ୍ତା, ତା ହେଲେ ମୋର ଏ ସୁନାର ସଂସାରଟା ଏତେ ଦୁଃଖର ହୋଇ ନ ଥାନ୍ତା; ସେଥିରେ ଅନ୍ତତଃ ଟିକିଏ ଆନନ୍ଦର ଢେଉ ଖେଳୁଥାନ୍ତା । ତୋର ଅଭାବ, ମୁଁ ତାର ମୁହଁଟିକୁ ଚାହିଁ କେତେକ ପରିମାଣରେ ଭୁଲି ପାରୁଥାନ୍ତି । କିନ୍ତୁ ତା ବା କାହିଁ ? ତୁ ତ ଯୋଗୀ-ସନ୍ନ୍ୟାସୀଠାରୁ ଅଧିକ ହୋଇ ରହିଲୁ । ଏପରି ହେଲେ କଣ ସଂସାର ଚଳେ ବାବା ?

ଏହା କହି ମା ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇଲେ । ହରଶଙ୍କରଙ୍କ ଅନ୍ତରାମୂଳରେ ତା ଯାଇ ହଠାତ୍ ଗୋଟାଏ ଧକ୍କା ମାରିଲା ।

ହରଶଙ୍କର ବୁଝିଲେ—ମା'ର ବ୍ୟଥାଟିକ ଠିକ୍ କେଉଁ ଜାଗାରେ । ଏକାକନୀ ବିଧବାର ଅସ୍ମା ଯାହାଲାଗି ଅଜ ଆକୁଳ ହୋଇ ଉଠିଛି, ତାହା ହେଉଛି ପୁତ୍ରବଧୂ । ଏ ଘୁଝିଟି କାହିଁ ଯେ ଅଦ୍ୟାପି ତାକୁ ବଞ୍ଚିତ କରିଅଛନ୍ତି । ଏହି ପ୍ରସଙ୍ଗକୁ ଆଶ୍ରୟ କରି ତାଙ୍କ ହୃଦୟରେ କେତେ ଭାବ, କେତେ ସ୍ମୃତି ଆସି ଉପସ୍ଥିତ ହେଲା । ମାତ୍ର ସେ ସବୁ ବିଷୟ ବର୍ତ୍ତମାନ ଆଲୋଚନା କରିବାକୁ ନ ଯାଇ ସେ କୋମଳ ସ୍ନେହାର୍ଦ୍ର କଣ୍ଠରେ ପଚାରିଲେ—ମା, ସତେ କଣ ସେଥିପାଇଁ ତୁ ମନରେ କଷ୍ଟ କରୁ ? ତୋତେ କଣ ଏତା ଜୀର୍ ବାଧେ ?

ମା ଏ କଥାର ଉତ୍ତର ତୁଣ୍ଡରେ ନ ଦେଇ ଛଳଛଳ ଚକ୍ଷୁରେ ପ୍ରକାଶ କଲେ । ହରିଶଙ୍କର କହିଲେ ନା ମା, ଆଉ ମନ କଷ୍ଟ କର ନା । ଏଇ ସାମାନ୍ୟ ବିଷୟ ନେଇ ତୋର ପ୍ରାଣରେ ଯେ ଏତେ ବଡ଼ ଗଭୀର ବ୍ୟଥା ରହିଯାଇଛି, ତା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ତୋର ସେ ଅଭାବ ଆଉ ବେଶି ଦିନ ରହିବ ନାହିଁ । ତାହା ଶୀଘ୍ର ଦୂର କରିବାକୁ ମୁଁ ଚେଷ୍ଟା କରିବି ।

ଏହା କହି ହରିଶଙ୍କର ଉଠିଲେ । କହିଲେ—ମା, ଏବେ ମୁଁ ଯାଏ । ମୋର ଆଜ ଅନେକଗୁଡ଼ାଏ ଚିଠିପତ୍ର ଲେଖିବାକୁ ଅଛି । ସେ ଗୁଡ଼ାକ ଲେଖି ଆଜ ଡାକରେ ଦେବାକୁ ହେବ ।

ମା ପ୍ରସନ୍ନ ହୋଇ ବିଦାୟ ଦେଲେ । ଅନେକ ଦିନର ପୁଞ୍ଜୀଭୂତ ହୃଦୟ ବେଦନା ଯେପରି ଆଜ ଏକ ମୁହୂର୍ତ୍ତରେ ଧୂଆଁ ହୋଇଗଲା । ପ୍ରଜାପତିଙ୍କୁ ମନେ ମନେ ଦଣ୍ଡବତ କରି ସେ ଗୋଟାଏ କ୍ଷୁଦ୍ର ଆଶ୍ୱସ୍ତିର ନିଃଶ୍ୱାସ ତ୍ୟାଗ କଲେ । ପରଦିନ ସକାଳ ଗାଡ଼ିରେ ହରିଶଙ୍କର କଟକ ଯାତ୍ରା କଲେ ।

---

## ଦ୍ୱିତୀୟ ପରିଚ୍ଛେଦ

ପ୍ରହରାଜ ପରିବାର ଓଡ଼ିଶାର ଏକ ବିଶିଷ୍ଟ ଜମିଦାର ବଂଶ । ଏହି ବଂଶରେ ଜଣେ ଅଧେ ଲୋକ ଦେଶ ସୁଖ୍ୟାତି ଅର୍ଜନ କରି ଯାଇଛନ୍ତି, ମାତ୍ର ଅଖ୍ୟାତି ଅର୍ଜନ କରିଯାଇଛନ୍ତି ଅଧିକାଂଶ । ସାଧାରଣତଃ ଯେଉଁ ଯେଉଁ କାରଣରୁ ଆମଦେଶର ଜମିଦାରମାନଙ୍କର ଅଖ୍ୟାତିଲାଭ ହୋଇଥାଏ, ତାର କୌଣସି ଗୋଟିଏ କାରଣ ଏମାନଙ୍କର ଜୀବନ ଇତିହାସରେ ଅଭାବ ନ ଥିଲା । ପ୍ରଜାପୀଡ଼କ ହିସାବରେ ଏମାନଙ୍କର ସ୍ଥାନ ଥିଲା ଖୁବ୍ ଉଚ୍ଚରେ । ପ୍ରଜାର ରକ୍ତ ଶୋଷଣ କରି ଏମାନେ ବଢ଼ିଥିଲେ,—ଜମିଦାରୀର କାୟା ମଧ୍ୟ ବଢ଼ାଇଥିଲେ । ଯେତେ ଯେତେ ଉପାୟରେ ପ୍ରଜାର ରକ୍ତମାଂସ ଶୋଷଣ କରାଯାଇ ପାରେ ସେ ସମସ୍ତ ଉପାୟ ଏମାନଙ୍କୁ ସୁବିଦିତ ଥିଲା । ଦରିଦ୍ର-ନିର୍ଯାତନ ବିଦ୍ୟା ଏମାନେ ପିଲାଦିନରୁ ଶିକ୍ଷା କରୁଥିଲେ । ସେ ନିର୍ଯାତନ ଗ୍ରନ୍ଥର ପ୍ରତ୍ୟେକ ପୃଷ୍ଠା, ପ୍ରତ୍ୟେକ ପଂକ୍ତି ଏମାନଙ୍କର କଣ୍ଠସ୍ଥ ଥିଲା । ଲୋକେ କହୁଥିଲେ—ବାଘ ମୁହଁରୁ ହେଲେ ଉଦ୍ଧାର ମିଳିବ, ପ୍ରହରାଜବଂଶର ଲୋକ ହାତରୁ ଉଦ୍ଧାର ପାଇବା କଠିନ । ହେଲେ ଶୋଷିତର ବ୍ୟଥାବେଦନା ଏମାନେ ବୁଝୁ ନ ଥିଲେ,—ବୁଝି ପାରୁ ନ ଥିଲେ । ଉଦରର ଜ୍ୱାଳାରେ ଛଟପଟ ହୋଇ ଦରିଦ୍ରର ଦୁଃଖମୟ ଜୀବନ କିପରି କଟେ ତାହା ସେମାନେ ଭ୍ରମବଶତଃ ବି ଜାଣିବାକୁ ଚେଷ୍ଟା କରୁ ନ ଥିଲେ । ବିଳାସବାସନା ଚରିତାର୍ଥ କରିବା ସେମାନଙ୍କ ଜୀବନର ଚରମ ଲକ୍ଷ୍ୟ ଥିଲା । ଏହି ବଂଶର ଜଣେ ଜଣେ ଜମିଦାରଙ୍କର ପ୍ରଣୟିନୀ ସଂଖ୍ୟା ହିସାବ କରିବାକୁ ଗଲେ ଅଙ୍ଗୁଳିର ରେଖା ନିଅଣ୍ଟ ହେବ । ଏହି ବଂଶର ଲଖିପ୍ରହରାଜ (ଲକ୍ଷ୍ମୀକାନ୍ତ ପ୍ରହରାଜ) ଙ୍କର ଚିତ୍ତବିନୋଦ ପାଇଁ ସୁଦୂର କାଶ୍ମୀର ମୁଲକରୁ ବାଇଜୀ ଦଳ ହୋଇ ଆସୁଥିଲେ । ପ୍ରହରାଜେ ଦିନକୁ ରାତି ଓ ରାତିକୁ ଦିନ

କରୁଥିଲେ । ସାରଗଡ ବିଳାସବ୍ୟସନରେ କଟୁଥିଲା । ଉଦ୍ୟାନ-ବାଟୀର ସୁପ୍ରଶସ୍ତ କକ୍ଷରେ ଉଜ୍ଜ୍ୱଳଆଲୋକ ପ୍ରବାହ ମଧ୍ୟରେ ଅପ୍ସରୀ ନୃତ୍ୟର ଅଭିନୟ ହେଉଥିଲା,—ଅମୃତପାନର ଅନୁକରଣ କରି ଯାଉଥିଲା । ମର୍ତ୍ତ୍ୟମଣ୍ଡଳରେ ସ୍ୱର୍ଗର ସୁଖଭୋଗ କରିବା ଯେ ନିତାନ୍ତ ଅସମ୍ଭବ ନୁହେଁ ତାହାର ଗୂଢ଼ଧ୍ରୁବ ପ୍ରମାଣ ପ୍ରହରୀଙ୍କେ ଜଗତ୍‌ବାସୀଙ୍କୁ ପ୍ରଦାନ କରିଥିଲେ । ଏସବୁ ସୁଖୋପଭୋଗ ପାଇଁ ଅର୍ଥର ଅଭାବ ନ ଥିଲା । ପ୍ରକାଣ୍ଡ ଜମିଦାରୀର ନିରୀହ ପ୍ରଜାମାନେ ସମସ୍ତ ସୁଖୋତ୍ସବର ବ୍ୟୟ ନିର୍ବାହ କରୁଥିଲେ । ଜମିଦାରୀ ଖଣ୍ଡିକ ପରମ ଦୁଗ୍ଧବତୀ ଗାଭୀରୂପରେ ଜମିଦାର ବାବୁଙ୍କର ସେବା କରୁଥିଲା । ଯେତେବେଳେ ଯାହା ଦରକାର ସେତେବେଳେ ତାହା ପାଇବାପାଇଁ ଏହି ଗାଭୀ-ଟିକୁ ଦୋହନ କରି ହେଉଥିଲା । ଅତି ସୁନ୍ଦର ଗାଈ ପରି ସେ ତାହା ପ୍ରାଣପଣେ ଯୋଗାଉଥିଲା,—ଜମିଦାରବାବୁଙ୍କର ଅନିବାର୍ଯ୍ୟ ତୃଷ୍ଣା ମେଣ୍ଟାଇବାକୁ ଚେଷ୍ଟା କରୁଥିଲା । କିନ୍ତୁ ଏତେ ଅପବ୍ୟୟ ସତ୍ତ୍ୱେ ଜମିଦାର ପରିବାରର ଅବସ୍ଥା ଅକ୍ଷୁଣ୍ଣ ଥିଲା । ନାନା ଭାବରେ ନାନା ଦିଗରୁ କପରି ଅର୍ଥାଗମ ହୋଇପାରେ, ତାହାର ଉପାୟ ପ୍ରହରୀଙ୍କ-ମାନଙ୍କୁ ବେଶ୍ ଜଣାଥିଲା । ଜମିଦାରୀର କୌଣସି ପ୍ରଜା ନିଜ ବାଡ଼ିରୁ ଶୁଖିଲାଗଛର ସାମାନ୍ୟ ଡାଳ ଖଣ୍ଡିଏ କାଟିଲେ ପଚଶ ପଚିଶ ଜୋରିମାନା ହେଉଥିଲା । ଜହ୍ନି, କଖାରୁ, ଭେଣ୍ଡି, ବାଇଗଣ, କଦଳୀ ଯାହା କିଛି ଫସଲ ପ୍ରଜା ପ୍ରଥମେ ଅମଦାନି କରୁଥିଲା, ତାହା ଜମିଦାରଙ୍କର ଶ୍ରୀଚରଣରେ ଭେଟି ଦିଆହେଉଥିଲା । ତା ଛଡ଼ା ମୋଟ ଫସଲ ଅମଦାନିର ଅର୍ଦ୍ଧାଂଶ ଜମିଦାରବାବୁଙ୍କ ଭଣ୍ଡାରକୁ ଯାଉଥିଲା । ଜମିଦାରଘରର ସମସ୍ତ ଖର୍ଚ୍ଚ, ଏପରିକି ତେଲ ହଳଦୀ ପର୍ଯ୍ୟନ୍ତ ପ୍ରଜାମାନେ ମୁଣ୍ଡର ଝାଳ ତୁଣ୍ଡରେ ମାରି ଉତ୍ପାଦନ କରି ଦେଉଥିଲେ । ବିବାହ ବ୍ରତ ଇତ୍ୟାଦି ଉପଲକ୍ଷରେ ଜମିଦାରୀର ପ୍ରଜାଙ୍କୁ

କେତେ ଯେ ଶୋଷଣ କରୁ ହେଉଥିଲା, ତାହାର ଇୟତ୍ତା ନାହିଁ । ନୂଆ ଖଦ ବା ନୂଆ ଶାଢ଼ୀ ଖଣ୍ଡିଏ ପିନ୍ଧିବାକୁ ଗଲେ ପ୍ରଜାଙ୍କୁ କିଛି ଦକ୍ଷିଣା ଦେଇ ପିନ୍ଧିବାକୁ ପଡୁଥିଲା । ନଚେତ୍ ଜମିଦାରଙ୍କ ଚର ତାହା ଗୋପନରେ ବୁଝିନେଇ ମଣିମାଙ୍କ ଶ୍ରୀକର୍ଣ୍ଣଗୋଚର କର ଦେଉଥିଲେ ଏବଂ ଗରିବ ପ୍ରଜାକୁ ପଇସାକ ଜାଗାରେ ପାଞ୍ଚପଇସା ଦେବାକୁ ପଡୁଥିଲା । ପ୍ରହରାଜମାନଙ୍କର ପ୍ରଜାଶାସନ ଗଲା ଏହି ଧରଣର ।

ହରଶଙ୍କର ଏହି ପ୍ରହରାଜ ବଂଶର ବଂଶଧର । ପିତା ଶିବଶଙ୍କରଙ୍କର ପରଲୋକ ହୋଇଯିବା ପରେ ସେ ସମସ୍ତ ସମ୍ପତ୍ତିର ମାଲିକ । ହରଶଙ୍କର ଯୁବକ, ବୟସ ୨୫।୨୬ ବର୍ଷରୁ ଅଧିକ ନୁହେଁ । କଟକରେ ଶିକ୍ଷାଲାଭ କରି ଆସିଛନ୍ତି । ବି.ଏ. ପାସ୍ କରି ନାନା ଦେଶ ହିତକର କାର୍ଯ୍ୟରେ ବର୍ତ୍ତମାନ ନିଯୁକ୍ତ ।

ଭୂଗର୍ଭରୁ କଳା କୋଇଲା ବାହାରେ, ପଚାପାଣି ବାହାରେ, ବିଷାକ୍ତ ବାଷ୍ପ ବାହାରେ,—ଏହିପରି କେତେ କଣ ଅପଦାର୍ଥ ବାହାରେ; ପୁଣି ସେହି ଭୂଗର୍ଭରୁ ବାହାରେ ସୁନା, ରୁପା, ହୀରା, ମଣିମାଣିକ୍ୟ । ସେହିପରି ଏହି ପ୍ରହରାଜ ବଂଶରୁ କେତେ ଅପଦାର୍ଥ ଅମଣିଷ ବାହାରିଛନ୍ତି । ପୁଣି ସେହି ବଂଶରୁ ବାହାରିଛନ୍ତି—ହରିଶଙ୍କର । ପଙ୍କରୁ ପଙ୍କଜର ଉତ୍ପତ୍ତି । ହରିଶଙ୍କର ପୂର୍ବପୁରୁଷମାନଙ୍କର ଠିକ୍ ଓଲଟା । ପିତୃପିତାମହଙ୍କ ଆଚରଣଠାରୁ ତାଙ୍କ ଆଚରଣ ଏକାବେଳକେ ପୃଥକ୍, ଜମିନ୍ ଆସମାନ୍ ଫରକ; ସେ ଜମିଦାରୀର ଭାର ଗ୍ରହଣ କରିବା ଦିନଠାରୁ ଏକ ଅଭାବନୀୟ ପରିବର୍ତ୍ତନ ଘଟିଛି । ପୂର୍ବ ପଦ୍ଧତିର ଅନେକ ବ୍ୟତିକ୍ରମ ପ୍ରକାଶ ପାଇଛି । ଅବଶ୍ୟ ହରଶଙ୍କର ପ୍ରତ୍ୟକ୍ଷରେ ଜମିଦାରୀ ପରିଚାଳନା କେବେ ହେଲେ କରିବାକୁ ଯାଇନାହାନ୍ତି । ଜମିଦାରୀଠାରୁ ସେ ବହୁବର ଦୂରରେ

ରହୁଅଛିନ୍ତି । ଘରେ ସେ ଖୁବ୍ କମ୍ ରହନ୍ତି,—ଅଧିକାଂଶ ସମୟରେ ବିଦେଶରେ । ଜମିଦାରୀର କାର୍ଯ୍ୟରେ ତାଙ୍କର ବିଶେଷ କିଛି ସମ୍ପର୍କ ଥିଲା ପରି ଜଣାପଡ଼େ ନାହିଁ । ପିତା ଶିବଶଙ୍କରଙ୍କ ଅମଳରେ ବିଷୟ ସମ୍ପତ୍ତିର ତତ୍ତ୍ୱାବଧାନ ଯେଉଁମାନେ କରୁଥିଲେ ଆଜି ଠିକ୍ ସେହିମାନେହିଁ କରୁଛନ୍ତି,—ସେହି ଗୁମାସ୍ତା, ସେହି ତହସିଲଦାର, ସେହି କର୍ମଚାରୀ । ସର୍ବୋପରି ସେହି ସର୍ବଜନପୂଜ୍ୟ ମାତୁଳ କୃଷ୍ଣମାଧବ । ତଥାପି ଏହି ସମସ୍ତ ପୁରାତନ ମଧ୍ୟରେ ଯେପରି ନୂତନତ୍ୱର ବିକାଶ । ଜମିଦାରୀ ଗ୍ରହଣ କରିବାର ପ୍ରଥମ ଦିନରେହିଁ ହରିଶଙ୍କର ପୂର୍ବନୀତି ପରିବର୍ତ୍ତନ କରି ଉଦାରନୀତି ପ୍ରବର୍ତ୍ତନ କରିବା ଆରମ୍ଭ କରି ଦେଇଛନ୍ତି । ଯେଉଁଦିନ ହରିଶଙ୍କରଙ୍କର ପ୍ରକାଶ୍ୟରେ ପ୍ରିହରାଜ-ଗାଦିରେ ବସିବାର ସ୍ଥିର ହେଲା, ସେହିଦିନ ସେ କୃଷ୍ଣମାଧବଙ୍କୁ ପାଖକୁ ଡାକି କହିଲେ—ମାମୁ, ଏତେ ଗୁଡ଼ାଏ ସମାରୋହର ପ୍ରୟୋଜନ କଣ ! ଏଗୁଡ଼ାକ ମୋତେ ନିତାନ୍ତ ଅନର୍ଥକ ବୋଧ ହେଉଛି । ଏସବୁ କି ବାଦଦେଲେ ଚଳିବ ନାହିଁ ?

କୃଷ୍ଣମାଧବ ହସି ହସି କହିଲେ—କି ସମାରୋହ, ହରି ? ସମୟ ଥିଲା, ଯେତେବେଳେ ଏହା ଅପେକ୍ଷା ଢେର ଢେର ଛୋଟ ଘଟଣାରେ ବି ଲକ୍ଷ ଲକ୍ଷ ଟଙ୍କା ଉଡ଼ିଯାଇଛି । ଏ ତ ପୁଣି ଗାଦିନସିନ୍ ହେବା କଥା, ଆଉ କିଛି ନୁହେଁ । ସମସ୍ତଙ୍କ ଜୀବନରେ କଣ ଏପରି ମୁହୂର୍ତ୍ତ ଆସେ ? ରାମା, ଶାମା, ଭୀମା, ଉଗିଆ କେତେ କେତେ ଲୋକ ଏ ଦେଶ ଦୁନିଆରେ ବା ନାହାନ୍ତି ? କିନ୍ତୁ ସମସ୍ତଙ୍କୁ ତ ଗାଦିନସିନ୍ ହେବାକୁ ପଡ଼େ ନାହିଁ,—ସମସ୍ତେ ତ ରଜା ହୋଇ ରାଜଗାଦି ମାଡ଼ି ବସନ୍ତି ନାହିଁ । ବିଧାତା ଯାହା ଭାଗ୍ୟରେ ତାହା ଲେଖିଥାଏ, ସେହି ଏହା ହୁଏ । ଆଜି ସେହି ଭଗବାନଙ୍କ କୃପାରୁ ତୋର ଏ ଯୋଗ ଘଟିଛି । ଏଥିପାଇଁ ଟିକିଏ ଆମୋଦପ୍ରମୋଦ ନ ହେଲେ ଚଳିବ

କପର ? ତେବେ, ମୁଁ ତ ଅଗପର ଲକ୍ ଲକ୍ ଟଙ୍କା ଖର୍ଚ୍ଚ କରିବାକୁ ଯାଉ ନାହିଁ । ଏଇ ସାମାନ୍ୟ ପାଞ୍ଚ ସାତ ହଜାରରେ ସମସ୍ତ ମୁଣ୍ଡ ଲଗାଇବାର ଚେଷ୍ଟା କରୁଛ । ଏଥିକୁ ତୁ ଯଦି ସମାରୋହ ବୋଲି ଧରିବାକୁ ଯାଉ, ତା ହେଲେ ସେଟା ତୋର ଭୁଲ ନୁହେଁ କି ହରି ?

ହରିଶଙ୍କର କହିଲେ—ନା, ଭୁଲ ନୁହେଁ ମାମୁ । ମୋ ପକ୍ଷରେ ଏଟା ନିତାନ୍ତ ଗୋଟାଏ ନିର୍ଲଜ୍ଜ ବ୍ୟାପାର ପରି ମନେ ହେଉଛି । ଆମ ଆଖି ଆଗରେ ଯେତେବେଳେ ହଜାର ହଜାର ଲୋକ "ହା ଅନ୍ନ ହା ଅନ୍ନ" ହୋଇ ମରୁଛନ୍ତି, ସେତେବେଳେ ଏହି ତୁଚ୍ଛ ଘଟଣାଟାକୁ ନେଇ ଏପରି ଆଡ଼ମ୍ବର କରିବାଟା ସାଜେ କି ? ବରଂ ସେତିକି ଅର୍ଥ ବ୍ୟୟରେ ଲୋକଙ୍କର ତ କିଛି ମଙ୍ଗଳ କରାଯାଇପାରେ । ତା ହେଲେ ଅର୍ଥଟାର ସଦ୍‌ବ୍ୟବହାର ହେଲା ବୋଲି ମନେ କରାଯିବ । ତା ଛଡ଼ା ଏହି ଗାଦିରେ ବସିବା କଥାଟା ଗୋଟାଏ ଭେଦ ଭାବର ସୃଷ୍ଟି ନୁହେ କି ? ଅନ୍ୟ ଲୋକଙ୍କୁ ହୀନ ଦୃଷ୍ଟିରେ ଦେଖିବା, ନିଜକୁ ପ୍ରଭୁ ବୋଲି ମନେ କରିବା ଓ ସ୍ୱତନ୍ତ୍ର ବୋଲି ଭାବିବା—ଏହି ସବୁ ହୀନ ଆଦର୍ଶ ଉପରେ ଏହାର ପ୍ରାଣ ପ୍ରତିଷ୍ଠା ପିନା ! ଏ ସମସ୍ତ ପ୍ରଥା ଆମ ଦେଶରୁ, ନା ନା ସମଗ୍ର ପୃଥିବୀରୁ ଯେତେ ଶୀଘ୍ର ଲୋପ ପାଇବ, ମନୁଷ୍ୟ ମନୁଷ୍ୟ ଭିତରେ ସମ୍ପର୍କ ସେତେ ପରିମାଣରେ ଭଲ ହୋଇ ଉଠିବ ।

ଏହା କହି ହରଶଙ୍କର ସମୁଜ୍ଜ୍ୱଳ ନୟନରେ କୃଷ୍ଣମାଧବଙ୍କ ମୁହଁକୁ ଅନାଇଁ ରହିଲେ । କୃଷ୍ଣମାଧବ ମନେ ମନେ ଟିକିଏ କ୍ଷୁଣ୍ଣ ହେଲେ ସତ୍ୟ, ମାତ୍ର ବେଶି କିଛି ଆପତ୍ତି କରିବାଟା ବୁଦ୍ଧିମାନର କାର୍ଯ୍ୟ ନୁହେ ଭାବି କହିଲେ—ତେବେ, ଏ ସମସ୍ତ ଆୟୋଜନ କଣ ବନ୍ଦ କରିଦେବାକୁ ହେବ ହରି ?

ହରିଶଙ୍କର କୃଷ୍ଣମାଧବଙ୍କର ଅନ୍ତର୍ଗତ ଭାବ ବୁଝି ପାରିଲେ । କୃଷ୍ଣମାଧବ କେତେ କଣ ଆୟୋଜନ କରି ରଖିଛନ୍ତି, ସମସ୍ତ ଏକା-ବେଳକେ ବନ୍ଦ କରିଦେବାଟା ନିଶ୍ଚୟ ରୁଢ଼ତାର କାର୍ଯ୍ୟ ହେବ । ସେଥିରେ କୃଷ୍ଣମାଧବଙ୍କ ମନରେ ଆଘାତ ଲାଗିପାରେ । ଏହାଭାବି ସେ କହିଲେ—ତା କି ବର୍ତ୍ତମାନ ସମ୍ଭବ, ମାମୁଁ ? ତେବେ, ତା ସଙ୍ଗେ ସଙ୍ଗେ ଆଉ କିଛି ମଙ୍ଗଳକର ବ୍ୟବସ୍ଥା କି କରାଯାଇ ନ ପାରେ ?

କୃଷ୍ଣମାଧବ ଆଗ୍ରହରେ ପଚାରିଲେ—ଆଉ କଣ କରିବାକୁ ଚାହୁଁ, ହରି ? ଯାହା ତୋର ଇଚ୍ଛା, ତାହା ମୁଁ କରିବାକୁ ପ୍ରସ୍ତୁତ ଅଛି ।

ହରିଶଙ୍କର ଟିକିଏ ଚିନ୍ତାକରି କହିଲେ—ଅଚ୍ଛା, ପ୍ରଜାମାନଙ୍କୁ ଏ ଉପଲକ୍ଷରେ ଖଜଣାରୁ କିଛି ଅବ୍ୟାହତି ଦିଆଯାଇ ନ ପାରେ କି ମାମୁଁ ?

କୃଷ୍ଣମାଧବ ଏହା ଶୁଣି ବିସ୍ମିତ ହେଲେ । ଭାବିଲେ—ଏଇ ବୁଦ୍ଧି ନେଇ କଣ ଏ ପିତୃପିତାମହର ଜମିଦାରୀ ରକ୍ଷା କରିବ ! ଜମିଦାରୀ ସମ୍ଭାଳିବା କଣ ଖେଳଘର କଥା ! ଏହା ଭାବି ସେ ପଚାରିଲେ—କଣ କହୁଛୁ, ହରି ? ଖଜଣା ଛାଡ଼ି ଦେବାକୁ ଚାହୁଁ ? ସେଟା କି ସହଜ କଥା ! ତାର ପରିଣାମ କଣ ହୋଇପାରେ ତା ଥରେ ଭାବି ଦେଖିଛୁ କି ? କଥା କଥାକେ ଯଦି ଏପରି ଖଜଣା ଛାଡ଼ି କରି ଦିଆଯାଏ, ତେବେ ଜମିଦାରୀ ରକ୍ଷା କରିବା ଯେ ଦୁର୍ବିଷ ହେବ, ବାବା ।

ଏହା କହି ସେ ସାଂସାରିକ ଜ୍ଞାନ ବିବର୍ଜିତ ଏହି ଯୁବକର ଭାବପ୍ରବଣତାକୁ ଲକ୍ଷ୍ୟ କରି ମନେ ମନେ ହସିବାକୁ ଲାଗିଲେ । ଏଟା ନିତାନ୍ତ ଅବାସ୍ତବ ଧାରଣାର କିତାବ୍-ପଢ଼ା ବୁଦ୍ଧିର ନମୁନା ଛଡ଼ା ଆଉ କିଛି ନୁହେଁ—ଏହାହିଁ ତାଙ୍କୁ ସ୍ପଷ୍ଟ ପ୍ରତୀୟମାନ ହେଲା । ହରିଶଙ୍କର

କହିଲେ ନା, ମାମୁ—ସମସ୍ତ ଖଜଣା ଛାଡ଼ କରିବାକୁ ମୁଁ କହୁ ନାହିଁ । ଏହି ଚଳିତ ବର୍ଷର ପାଉଣାରୁ ସାମାନ୍ୟ କିଛି ଏ ଉପଲକ୍ଷରେ ଛାଡ଼ ଦେବାକୁ ମୋର ଇଚ୍ଛା । ତଦ୍ଦ୍ୱାରା ଜମିଦାରୀର ଯେ ବିଶେଷ କିଛି କ୍ଷତି ହେବ, ସେପରି ମୁଁ ମନେ କରୁନାହିଁ । ବରଂ ଆମ୍ଭମାନଙ୍କ ଆଡ଼ୁ କହିଁରୁ ଉଦାରତା ପ୍ରକାଶ ପାଆନ୍ତା ।

କୃଷ୍ଣମାଧବ ତଳକୁ ମୁହଁ କରି ଟିକିଏ ଚିନ୍ତା କଲେ । ଭାବିଲେ —ମାଲିକର ଇଚ୍ଛାହିଁ ତାଙ୍କର ଇଚ୍ଛା । ସମ୍ପତ୍ତି ହରିଶଙ୍କରର, ସେ ଯଦି ଖଜଣାରୁ କିଛି ଛାଡ଼ଦେବାକୁ ଚାହେଁ,—ବେଶ୍, ଦେଉ । ସେଥିରେ ବାଧା ଦେଇ କି ଫଳ ? ଏହା ଭାବି ସେ କହିଲେ— ଅଚ୍ଛା ହେଉ, ସେ ଦିନ ଏହି ମର୍ମରେ ଗୋଟାଏ ଘୋଷଣା କରି ଦିଆଯିବ । ଚଳିତ ବର୍ଷରେ ଖଜଣାର ଛ ଭାଗରୁ ଭାଗେ ପ୍ରଜାମାନଙ୍କୁ ମାଫ ଦିଆଗଲା ବୋଲି ଜଣାଇ ଦିଆଯିବ ।

ତଦନୁସାରେ ଏ ସୁସମ୍ବାଦ ପ୍ରଜାମାନଙ୍କୁ ଜଣାଇ ଦିଆଗଲା । ପ୍ରହରାଜ ବଂଶର ଚିରାଚରିତ ଶାସନ ପଦ୍ଧତି ସହିତ ଏହାର ଅମେଳ କେତେକେ ଲକ୍ଷ୍ୟ କଲେ । ଅନ୍ୟ କେତେକ ଏହାକୁ ସନ୍ଦେହ ଚକ୍ଷୁରେ ଦେଖିଲେ । ଦଶଗୁଣ ଅଡ଼ୁ ସତ୍ଗୁଣ ରକମ ଅଦାୟ କରିନେଇ ଶେଷରେ ଦିଇପଇସା ଖଇରାତ କରିଦେବାରେ ସେମାନେ ବେଶି କିଛି ଉଦାରତାର ଅଭାସ ପାଇଲେ ନାହିଁ । ତେବେ ଏହାକୁ ଯଥାଲାଭ ବୋଲି ଧରିନେଇ ମନକୁ ବୋଧ ଦେଲେ ।

ମାତ୍ର ହରିଶଙ୍କର ଜମିଦାରୀ ଶାସନର ଏହା କେବଳ ଅଗ୍ରୂମାରମ୍ଭ । ଏ ଘଟଣାର ପରେ ପରେ ଆଉ କେତେକ ଉଦାରତାର ସୂଚନା ପ୍ରକାଶ ପାଇଲା । ନୂତନ ଜମିଦାର ଅନ୍ୟ କେତେକ ସଂସ୍କାର ପ୍ରବର୍ତ୍ତନ କଲେ । ସେ ବର୍ଷ ଯୁନିଆଁ ବନ୍ଦ କରିବାପାଇଁ ଆଦେଶ ଦିଆଗଲା । ଜମିଦାରୀର କର୍ମଚାରୀମାନେ ଏ ଆଦେଶ ଶୁଣି ସ୍ତମ୍ଭିତ ହେଲେ ।

ସେମାନଙ୍କ ମନରେ ଧୋକା ପଶିଲା । ନୂଆ ଜମିଦାରବାବୁଙ୍କର ଗତି ପ୍ରକୃତି ନେଇ କେତେ ପ୍ରକାର ଆଲୋଚନା ସମାଲୋଚନା ହେଲା । "ବାବୁଙ୍କର ଏ କି ପାଗଳାମି; ଏମିତିକରି କଣ କି ଜମିଦାରୀ ବୁଝାଯାଏ ?" ସମସ୍ତେ ଏହାହିଁ କୁହାକୁହି ହେବାକୁ ଲାଗିଲେ ।

କୃଷ୍ଣମାଧବ ପ୍ରମାଦ ଗଣିଲେ । ଭଗିନୀ ସୁଧାପ୍ରିୟାଙ୍କୁ ସମସ୍ତ କଥା ଜଣାଇ କହିଲେ—ହରିର ଢଙ୍ଗ ଦେଖୁଛୁତ ? ଜମିଦାରୀ ଚଳାଇବା ଯେ କି କଷ୍ଟକର ତା ତ ସେ ବୁଝିଲା ନାହିଁ । ମନରେ ତ ସେଥିରେ ପଶିଲା ନାହିଁ—ବାହାରେ ବାହାରେ ରହିଲା । ମୋତେ ଯେ କି ଅସୁବିଧାରେ ପଡ଼ିବାକୁ ହେଉଛି, ତା ଦେଖିଲେ ସିନା ଜାଣନ୍ତା । ଏଥିକୁ ଉପାୟ କଣ କହିଲୁ ?

ସୁଧାପ୍ରିୟା ଏ କଥାର ଗୁରୁତ୍ୱ ବୁଝିଲେ । କିଛି କ୍ଷଣ ନୀରବ ରହି ପରେ କହିଲେ—ମୁଁ ଯେ ସେଦିନରୁ କହୁଛି, ପିଲାଟାର ମନ ଯେପରି ଘରେ ଲାଗିବ, ତାର କିଛି ବନ୍ଦୋବସ୍ତ କର । ତା ତ ତୁ ଏ ପର୍ଯ୍ୟନ୍ତ କଲୁ ନାହିଁ । ତାର ମନ ଉଡ଼ି ବୁଲିଲା । ହାତକୁ ଦି ହାତ ନ ହେବା ପର୍ଯ୍ୟନ୍ତ ସେଯା ହେଉଥିବ ।

କୃଷ୍ଣମାଧବ କହିଲେ—ସେ ଯେ ଆହୁରି ଏକ ମୁସ୍କିଲ କଥା, ଅପା । ବିବାହ ନାଁ ଶୁଣିଲେ ଯେ ସେ ଉଠି ମାରୁଛି ! ମୁଁ କଣ ସେ ଦିଗରେ ଆଖି ଫେରାଇ ନାହିଁ ? ଏଇକ୍ଷଣି କହିଲେ—ପାଞ୍ଚଗଣ୍ଡା ପାତ୍ରୀ ଯୋଗାଡ଼ କରିପାରିବି । ଜମିଦାର ଘରେ ଝିଅ ଦେବାକୁ କିଏ ନାରାଜ ? ସେଥିପାଇଁ ତ ଚିନ୍ତା । କିନ୍ତୁ ଯା କହନ୍ତି—"ଯାହାର ବାହା ତାର ମନ ନାହିଁ, ନା ଯାଇପଡ଼ିଶାଙ୍କୁ ନିଦ ନାହିଁ ।" ମୁଁ କୌଶଳ କରି କଣ ହରିର ମନ ବୁଝିବାକୁ ଚେଷ୍ଟା କରିନାହିଁ । କେତେ ଖଣ୍ଡରେ ବୁଝିଛି । ପ୍ରଥମେ ପ୍ରଥମେ ମୁଁ ମନେ କରିଥିଲି—ପାତ୍ରୀ ବୋଧହୁଏ ପସନ୍ଦ ହେଉନାହିଁ, ସେଇଥିପାଇଁ ସେ ବିଭା

ହେବାକୁ ନାରାଜ । କିନ୍ତୁ ପରେ ବୁଝିଲେ ତା ନୁହେଁ । ବନ୍ଧ୍ର ହେବାକୁ ତାର ଆଦୌ ଇଚ୍ଛା ନାହିଁ । ବନ୍ଧ୍ର ହେଲେ ଦେଶର କାମ କରିବାରେ କାଳେ ବାଧା ଘଟିବ । ଆଚମ୍ବିତ କଥା ନାନା ! ଏତେ ଲୋକ ଯେ ଦେଶର କାମ କରୁଚନ୍ତି ସେମାନେ ଯେପରି ଅଭିଆଡ଼ା ପେଡ ହୋଇ ରହିଛନ୍ତି;—ତାଙ୍କର ଦେପଦ୍ର ଘର-ଦ୍ୱାର, ପୁଅ ଝିଅ ଭାରିଯା କିଛି ନାହିଁ । ଏ ପାଗଳାମିକି ଉପାୟ କଣ ଅଛି ?

ରାଧାପ୍ରିୟା କଣ କହିବେ କିଛି ଭାବି ପାରିଲେ ନାହିଁ । ପୁଅର ଏ ବଚନ ସ୍ୱଭାବ ତାଙ୍କ ନିକଟରେ ଗୋଟାଏ ଅବୋଧ ପ୍ରହେଳିକା ପରି ପ୍ରତିଭାତ ହେଲା । ସେ ଚୁପ୍ ମାରି ବସି ରହିଲେ ।

କୃଷ୍ଣମାଧବ କହିଲେ—ନ ହେଲେ, ତମେ ଥରେ ଚେଷ୍ଟା କରି ଦେଖ ନାଁ । କି ଜାଣି ବା ତୁମ କଥାରେ ହରିର ମନ ବଦଳିପାରେ । ଦିଲ୍ଲିଠାର ଆଉ ଯେତେ ଦୋଷ ଥାଉ ନା କାହିଁକି, ମା'ର କଥାକୁ ଯେ ସେ ସହଜରେ କାଟି ଦିଏ ନାହିଁ,—ଏଇଟା ତାର ଗୋଟାଏ ମହତ୍ତ୍ୱ ଗୁଣ । ହରି ଏହି ଦୁଇ ତିନି ଦିନ ମଧ୍ୟରେ ଆସିବ ବୋଲି ତ ଲେଖିଛି । ଏ ଗୋଟାଏ ସୁଯୋଗ । ଏହି ସୁଯୋଗରେ ତାକୁ ମନେଇବାକୁ ଚେଷ୍ଟା କରି ଦେଖ ତ କଣ ହେଉଛି । ତମେ ଯା କହିଲ—ହାତ ଛଡ଼ାଠା ନ ହେବା ପର୍ଯ୍ୟନ୍ତ ହରିକୁ ଧରି ରଖିବା କଠିନ ହେବ । ହାତକୁ ଦି'ହାତ ହୋଇଗଲେ, ତେଣିକି ସେ ବାଟେ ଛନ୍ଦି ହୋଇ ପଡ଼ିବ । ଶିବ କୁଆଡ଼େ ? ପିଞ୍ଜରାରେ ପକ୍ଷୀ ନ ଥିବା ଯାଏ ସଇନା ଉଡ଼ି ବୁଲୁଥାଏ । ଥରେ ପଶିଲେ ତ ରହିଲା ।

ଏହା କହି କୃଷ୍ଣମାଧବ ଉଠିଲେ । ରାଧାପ୍ରିୟା ବସି ବସି ହରିଶଙ୍କରଙ୍କର ଏ ଅଦ୍ଭୁତ ପ୍ରକୃତିର ବିଷୟ ମନେ ମନେ ଆଲୋଚନା କରିବାକୁ ଲାଗିଲେ । ଯେତିକି ଆଲୋଚନା କଲେ, ତେତିକି ବହୁସ୍ୟରେ

ଅଭିଭୂତ ହେଲେ । ଏ ଯୁଗରେ କେତେ ଜମିଦାର ପିଲା ପାଠ ପଢ଼ି ମଣିଷ ନ ହେଉଛନ୍ତି ! କିନ୍ତୁ ଏଭଳି ବୈରାଗୀ ହୋଇଯାଉଛନ୍ତି କିଏ ? ହାୟ ରେ କପାଳ !

ଦୁଇଦିନ ପରେ ହରିଶଙ୍କର ଘରକୁ ଫେରିଲେ । ସାମାନ୍ୟ କେତେଟା ଦିନ ମାତ୍ର ରହି ପୁଣି କଟକ ବାହାରି ଗଲେ । କଟକ ଯିବା ପୂର୍ବରୁ ମା ରାଧାପ୍ରିୟାଙ୍କ ସହିତ ତାଙ୍କର ଯାହା କଥାବାର୍ତ୍ତା ହୋଇଥିଲା ତାହା ଆଗରୁ କୁହାଯାଇଛି ।

ରାଧାପ୍ରିୟା ଯଥାସମୟରେ ସମସ୍ତ ବିଷୟ ଭ୍ରାତା କୃଷ୍ଣମାଧବଙ୍କର କର୍ଣ୍ଣଗୋଚର କଲେ । କୃଷ୍ଣମାଧବ ତାହା ଶୁଣି ଚୁପହେଲେ ।

---

## ତୃତୀୟ ପରିଚ୍ଛେଦ

କିଛିଦିନ ପରେ ଦୁଇଜାଗାରେ ବିବାହ ପ୍ରସ୍ତାବ ଆସି ଉପସ୍ଥିତ ହେଲା । ପ୍ରଥମତଃ କେନ୍ଦ୍ରାପଡ଼ାର ଜୟରାମ ପାଢ଼ୀଙ୍କ ଘରୁ । ଦ୍ୱିତୀୟତଃ ଯାଜପୁରର ଜମିଦାର ସତ୍ୟବ୍ରତ ମହାପାତ୍ରଙ୍କ ଘରୁ । ଉଭୟ ଖାନ୍‌ଦାନ୍ ବୁନିଆଦ ବଂଶ; କେହି କାହାରିକୁ ଊଣା ନୁହେଁ । କୃଷ୍ଣମାଧବ ଉଭୟଙ୍କ ସହିତ କଥାବାର୍ତ୍ତା କରି ଦେବା ନେବା ସ୍ଥିର କରିବାକୁ ଗଲେ । ଉଭୟଙ୍କ ଶକ୍ତି ସାମର୍ଥ୍ୟ ବୁଝିଲେ । ଶେଷରେ କାହାକୁ ଜବାବ ଦେବେ, କାହାକୁ ବା ନ ଦେବେ, କିଛି ଠିକ୍ କରି ପାରିଲେ ନାହିଁ । ଉଭୟ ବଂଶର ପ୍ରତିଷ୍ଠା ସମାନ । ଉଭୟ ପାତ୍ରୀ ମଧ୍ୟ ରୂପଗୁଣରେ ପରସ୍ପରର ସମକକ୍ଷ । ତା ଛଡ଼ା, ଯୌତୁକାଦି ପ୍ରଦାନ ବିଷୟରେ ବି କେହି କାହାରଠାରୁ ହଟିଯିବାର ପାତ୍ର ନୁହନ୍ତି ।

କୃଷ୍ଣମାଧବ ରାଧାପ୍ରିୟାଙ୍କୁ ପଚାରିଲେ—କଣ କରାଯିବ କହିଲୁ, ନାନି ? ବଡ଼ ମୁସ୍କିଲରେ ପଡ଼ିଲି ଯେ ! କାହାକୁ ଜବାବ୍ ଦେବି, କାହାକୁ ନ ଦେବି କିଛି ଠିକ୍ କରି ପାରୁନାହିଁ । ଏକକୁ ଆରେକ ସରସ ।

ଏହା କହି ସେ ଉଭୟ ପକ୍ଷକୁ ତୁଳନା କରି ଯଥାଯଥ ଭାବରେ ସମସ୍ତ ବିଷୟ ବର୍ଣ୍ଣନା କରିଗଲେ । ସୁଦକ୍ଷ ଚିତ୍ରକର ପରି ଦୁଇଟି ସୁନ୍ଦର ମନୋହର ଚିତ୍ର ସେ ରାଧାପ୍ରିୟାଙ୍କ ଚିତ୍ତପଟରେ ଅଙ୍କନ କରିଦେଲେ । ଅବଶେଷରେ ଭଗିନୀଙ୍କୁ ସମ୍ବୋଧନ କରି କହିଲେ—ନାନି, ଏ ଦୁଇଟି ମଧ୍ୟରୁ ତୋର ଯେଉଁଟି ମନକୁ ପାଉଛି ସେଇଟି ବାଛି ନେ । ତୋହରି ଉପରେ ଏ ମୀମାଂସାର ଭାର ରହିଲା ।

ରାଧାପ୍ରିୟା ବଡ଼ ଅଡୁଆରେ ପଡ଼ିଲେ ।

କୃଷ୍ଣମାଧବ ତାଙ୍କର ଏ ଅବସ୍ଥା ଲକ୍ଷ୍ୟ କରି କହିଲେ—ଆଚ୍ଛା ନାନି, ଗୋଟାଏ କଥା କଲେ କିମିତିକା ହୁଅନ୍ତା ? ରାଧାପ୍ରିୟା ପଚାରିଲେ—କଣ ?

କୃଷ୍ଣମାଧବ ଜବାବ ଦେଲେ—ମୁ ଭାବୁଛି, କଥାଟା ନେଇ ଏକାବେଳକେ ହରିଶଙ୍କର ଉପରେ ପକାଇଦେବାକୁ । ତା ହେଲେ ସବୁ ଦଗରୁ ରକ୍ଷା ହୋଇଯାନ୍ତା । ଉପର ମୋର ବି ଏତେ ମୁଣ୍ଡ ଘୁରାଇବାକୁ ପଡ଼ନ୍ତା ନାହିଁ । ତାର ମନ ଅନୁସାରେ ସେ ମଧ୍ୟ ଗୋଟିକୁ ବାଛିନଅନ୍ତା । କନ୍ୟାପକ୍ଷଙ୍କୁ ମଧ୍ୟ ଜବାବ୍ ଦେବାକୁ ସୁବିଧା ହୁଅନ୍ତା । ପୁଅର ଯେଉଁଠି ବିଭା ହେବାକୁ ମନ ହେଲା ଆମର ସେଥିରେ କଣ କହିବାର ଅଛି,—ଏହି ଯୁକ୍ତି ଦେଖାଇ ଆମେ ବି ଏଥିରୁ ରକ୍ଷା ପାଇପାରନ୍ତେ; ନା, କଣ କହୁଛୁ ନାନି ?

ରାଧାପ୍ରିୟା ଅନ୍ଧାରରେ ଆଲୁଅ ଦେଖିଲେ । କହିଲେ—ହଁ, ତା ଯାହା କହିଲୁ ଠିକ୍, କୃଷ୍ଣ । ତା ଠାରୁ ଭଲ ଉପାୟ ତ ଆଉ କିଛି ଥିଲା ପରି ମୋତେ ଜଣାଯାଉନାହିଁ ।

ଅବଶେଷରେ ତାହାହିଁ ସାର ହେଲା । କୃଷ୍ଣମାଧବ ହରିଶଙ୍କରଙ୍କର ମତାମତ ବୁଝି ଜବାବ ଦେବେ ବୋଲି ଉଭୟ ପକ୍ଷଙ୍କୁ

ଜଣାଇଦେଲେ । ପରେ ସେ ହରଶଙ୍କରଙ୍କ ନିକଟକୁ ସମସ୍ତ ବିଷୟ ସୁବିସ୍ତୃତଭାବରେ ବର୍ଣ୍ଣନା କରି ଚିଠି ଲେଖିଲେ ।

ହରଶଙ୍କର ସେତେବେଳେ କଟକରେ ନ ଥିଲେ । ପୁରୀ ଜିଲ୍ଲାର ଏକ ବନ୍ୟାପ୍ଲାବିତ ପଲ୍ଲୀଗ୍ରାମରେ ବାସ କରୁଥିଲେ । ସେତେବେଳେ ଭୀଷଣ ବନ୍ୟାପ୍ରକୋପରେ ଦେଶସାରା ହା ହାକାର ପଡ଼ିଥାଏ । ବିଶେଷତଃ କଟକ ଓ ପୁରୀ ଜିଲ୍ଲାରେ । ମହାନଦୀ, କାଠଯୋଡ଼ି, କୁଆଖାଇ, ଭାର୍ଗବୀ, କୁଶଭଦ୍ରା ପ୍ରଭୃତି ନଦୀମାନଙ୍କର ଉପଦ୍ରବ-ବଶତଃ ଦେଶରେ ସଙ୍କଟମୟ ପରିସ୍ଥିତିର ସୃଷ୍ଟି ହୋଇଥାଏ । ଅସଂଖ୍ୟ ପରିବାର ଗୃହହୀନ, ଅନ୍ନହୀନ ହୋଇ ଅକୂଳ ସମୁଦ୍ରରେ ଭାସୁଥାନ୍ତି । ବନ୍ୟାଜଳ ଅନେକ ପରିମାଣରେ ଛାଡ଼ି ଯାଇଥାଏ ସତ, ମାତ୍ର ଲୋକଙ୍କର ଅବସ୍ଥା ନିତାନ୍ତ ଶୋଚନୀୟ ହୋଇ ରହିଥାଏ । ସେମାନଙ୍କୁ ସାହାଯ୍ୟ କରିବା ଲାଗି ହରିଶଙ୍କରଙ୍କ ସେବାଦଳ ଅକ୍ଳାନ୍ତ ପରିଶ୍ରମକରି ଅର୍ଥସଂଗ୍ରହ କରୁଥାନ୍ତି ଏବଂ ନିଜେ ହରିଶଙ୍କର ବିଭିନ୍ନ ସ୍ଥାନରେ କେନ୍ଦ୍ରଖୋଲି ସାହାଯ୍ୟ ବାଣ୍ଟୁଥାନ୍ତି । ଚୁଡ଼ା, ଗୁଡ଼, ଲୁଗା, ପଇସା, ଔଷଧ ନେଇ ଗ୍ରାମରୁ ଗ୍ରାମାନ୍ତର ଯାଇ ସହାୟ ସମ୍ବଳହୀନ ପଲ୍ଲୀବାସୀଙ୍କ ମଧ୍ୟରେ ଦୟାର ଅବତାର ସ୍ୱରୂପ ସେବାକର୍ମ ଆଚରଣ କରି ବୁଲୁଥାଆନ୍ତି ।

ହରିଶଙ୍କର ଯେଉଁ ପଲ୍ଲୀଗ୍ରାମରେ ଅବସ୍ଥାନ କରୁଥାନ୍ତି ତାର ନାମ କାକଟପୁର । ଗ୍ରାମଟି ଖୁବ୍ ବଡ଼ ନ ହେଲେ ସୁଦ୍ଧା ନିତାନ୍ତ ଛୋଟ ନୁହେଁ ।

ସନ୍ଧ୍ୟା ଆସନ୍ନ । କର୍ମୀମାନେ କେତେକ ଫେରିଲେଣି, କେତେକ ଫେରି ନାହାନ୍ତି । ହରିଶଙ୍କର ଗୋଟିଏ ଅର୍ଦ୍ଧଭଗ୍ନ ପକା ଗୃହର ଉପରେ ବସି ସହକର୍ମୀମାନଙ୍କ ସହିତ ନାନା ଆଲୋଚନାରେ ନିଯୁକ୍ତ । ଏହିପରି ସମୟରେ ଦୁଇଜଣ କର୍ମୀ ନିକଟବର୍ତ୍ତୀ ଗ୍ରାମରୁ

ଫେରିଲେ । ହରିଶଙ୍କର ସେମାନଙ୍କୁ ଯେଉଁ ଗୃହରେ ବସିଥିଲେ । ସେମାନେ ଉପସ୍ଥିତ ହେବାମାତ୍ରେ ସେ ପଚାରିଲେ—କାଲି ଯେଉଁ ଦୁଃସ୍ଥ ପୀଡ଼ିତ ମହିଳାଟିର କଥା କହୁଥିଲ ଆଜି ତାଙ୍କର ଅବସ୍ଥା କିପରି ?

କର୍ମୀବୃନ୍ଦ ଉତ୍ତର ଦେଲେ ଅତି ଶୋଚନୀୟ । କିନ୍ତୁ ସେ ଥରେ ଆପଣଙ୍କୁ ଦେଖିବାକୁ ଉତ୍ସୁକ । ବଡ଼ ବିକଳ ହୋଇ ସେ ଆମ୍ଭମାନଙ୍କ ହାତରେ ଖବର ଦେଇଛନ୍ତି—ହରିଶଙ୍କର ବାବୁଙ୍କୁ କହିବ,—ଏ ଅଭାଗିନୀ ଆଖି ମୁଦିବା ପୂର୍ବରୁ ଥରେ ଯେପରି ତାଙ୍କ ସାଙ୍ଗରେ ଦେଖାହୁଏ ।

ହରିଶଙ୍କର ପଚାରିଲେ—ଅବସ୍ଥା କଣ ଖୁବ୍ ଗୁରୁତର ?

କର୍ମୀବୃନ୍ଦ ଜବାବ ଦେଲେ—ହଁ ଖୁବ୍ ଗୁରୁତର, ଦେଖିଲେ ଆଖିରେ ଲୁହ ଆସେ । କେତେବେଳେ ଯେ କଣ ହେବ, ତା କହି ହେଉନାହିଁ ।

ହରିଶଙ୍କର ତୁରନ୍ତ ଉଠି କହିଲେ—ତେବେ ଚାଲ ।

କର୍ମୀମାନେ ବିସ୍ମିତ ହୋଇ ପଚାରିଲେ—ଏହିକ୍ଷଣି ? ଏ ଯେ ସନ୍ଧ୍ୟା ହୋଇ ଆସିଲାଣି ! କାଲି ସକାଳେ ଗଲେ ଚଳିବ ନାହିଁ ?

ହରିଶଙ୍କର କହିଲେ—ନା, ନା, ଏହି ମୁହୂର୍ତ୍ତରେ ଯିବାକୁ ହେବ । ବିଳମ୍ବ କଲେ, ହୁଏତ ଦୁଃଖିନୀର ଯାହା କହିବାର ଅଛି ତା ଅକୁହା ରହିଯାଇପାରେ ।

ଏହା କହି ସେ ଅତ୍ୟନ୍ତ ବ୍ୟଗ୍ର ହୋଇ ଉଠିଲେ । ସତେ ଯେପରି ଲକ୍ଷଜନ୍ମର ମମତା ବନ୍ଧନ ତାଙ୍କୁ ପ୍ରଚଣ୍ଡ ବେଗରେ ଆକର୍ଷଣ କରିବାକୁ ଲାଗିଲା । ହରିଶଙ୍କର ଚାଲିଲେ ।

# ଚତୁର୍ଥ ପରିଚ୍ଛେଦ

ସନ୍ଧ୍ୟାର ଅନ୍ଧକାର ପଲ୍ଲୀଟିକୁ ଘେରି ଯାଉଛି । ତାହାର ବୃକ୍ଷ-ଲତା, ଗୃହପ୍ରାନ୍ତର ସମସ୍ତ ସେହି ଅନ୍ଧକାର-ପାରବାରରେ ନିମଗ୍ନ । ହରଶଙ୍କର କର୍ମଚାରୀଙ୍କୁ ସଙ୍ଗରେ ନେଇ ସେହି ଅନ୍ଧକାର ଭିତରେ ଅଗ୍ରସର ହେଲେ । ଏହିପରି କିଛି ସମୟ ଚାଲି ଚାଲି ଅବଶେଷରେ ସେମାନେ ଲକ୍ଷ୍ୟସ୍ଥାନରେ ପହଞ୍ଚିଲେ । ସମ୍ମୁଖରେ ଗୋଟିଏ କ୍ଷୁଦ୍ରାୟତନ ପୁଷ୍କରିଣୀ, ତାହା ଜଳରାଶିରେ ପୂର୍ଣ୍ଣ । ଚତୁର୍ଦ୍ଦିଗରେ ତାଳତରୁଶ୍ରେଣୀ ନୀରବ ପ୍ରହରୀ ପରି ଦଣ୍ଡାୟମାନ । ବନ୍ୟାଜଳ ଏ ପର୍ଯ୍ୟନ୍ତ କିଛି କିଛି ଠିଆ ହୋଇ ରହିଛି । ପୁଷ୍କରିଣୀର ଏକ ପାର୍ଶ୍ୱରେ ବୃତିବେଷ୍ଟିତ ଗୋଟିଏ ପଲ୍ଲୀଭବନ । ମାଟିର ଘର । ଘରକୁ ଯିବାପାଇଁ ଯେଉଁ ରାସ୍ତା ଥିଲା ତାହା ବର୍ତ୍ତମାନ ଜଳମଗ୍ନ । ସେଥିରେ ଅଦ୍ୟାବଧି ଜଙ୍ଘେ ପାଣି । ବନ୍ୟା ଫଳରେ ଘରଟିର ଦକ୍ଷିଣ ପାଖ ପାଚେରୀ ଭାଙ୍ଗି ପଡ଼ିଛି । କର୍ମଚାରୀ ହରଶଙ୍କରଙ୍କୁ ଆଣି ଯେତେବେଳେ ଏହି ସ୍ଥାନରେ ପହଞ୍ଚାଇ ଦେଲେ, ହରଶଙ୍କର ପଚାରିଲେ—"ଏହି ଘର ? ତୁମ୍ଭେମାନେ ଭିତରକୁ ଯାଇ ଖବର ଦିଅ ।"

ଖବର ଦେବାର ଅବ୍ୟବହିତ ପରେ ହରଶଙ୍କର ଗୃହ ଭିତରକୁ ପ୍ରବେଶ କଲେ । ଗୃହର ଏକ କୋଣରେ ଖଣ୍ଡିଏ କ୍ଷୁଦ୍ର ଖଟ ପଡ଼ିଛି । ଖଟ ପାଖରେ ଗୋଟିଏ ଦୀପଗଛ ଉପରେ ଡିବିରିର ଦୀପଟିଏ ଜଳୁଛି । ଖଟ ଉପରେ ବିବର୍ଣ୍ଣା ରମଣୀଟିଏ ଶାୟିତା । ପାଖରେ ବସି ଅନତାଙ୍ଗୀ ଗୋଟିଏ କୁମାରୀ ରୋଗିଣୀର ଅପର୍ଯ୍ୟସ୍ତ ଶଯ୍ୟାଟିକୁ ଟାଣି ସଳଖି କରି ଦେଉଛି । କୁମାରୀଟିର ବୟସ ସତର କି ଅଠର । ସୁନ୍ଦର ସଲଜ୍ଜ ମୂର୍ତ୍ତି । ଦକ୍ଷିଣ ହସ୍ତର ସୁନେଲି ରଙ୍ଗର କାଚ ଚୁଡ଼ି ଉପରେ ଦୀପାଲୋକ ପଡ଼ି ଚକ୍ ଚକ୍ ଦେଖାଯାଉଛି । ମୁଖଟି ପଦ୍ମ ଫୁଲପରି ଢଳ ଢଳ ।

ଅନେକ ଦନ ହେଲ ବୋଧହୁଏ କେଶ ବନ୍ୟାସ ହୋଇ ନାହିଁ । ତଥାପି ମୁଖର ଶୋଭା କ୍ଷୁଣ୍ଣ ନ ହୋଇ ସ୍ପଷ୍ଟ ଫୁଟି ବାହାରୁଛି । ଟିକିଏ ବଷାଦର ଛାୟା ତା ଉପରେ ପଡ଼ ତାକୁ ଆହୁର ମଧୁର କରଦେଇଛି । ହରଶଙ୍କର ଗୃହମଧ୍ୟରେ ପ୍ରବେଶ କର ଦପ୍ କର ଛିଡ଼ା ହୋଇଗଲେ । କଶୋରୀଟି ସଲଜ୍ଜ ନୟନରେ ଗୋଟିଏ ସଂକ୍ଷିପ୍ତ ଦଙ୍ଖଦୃଷ୍ଟି ନକ୍ଷେପ କର ସଙ୍କୋଚରେ ତାହା ଫେରାଇ ନେଲ । ଯୁବକ ଯୁବତୀର ଦୃଷ୍ଟି-ତତ୍ତ୍ୱ ଯେଉଁମାନେ ବଶଦଭାବରେ ଆଲୋଚନା କର ବୁଝିବାକୁ ଚେଷ୍ଟା କରଛନ୍ତି ସେହିମାନେହିଁ ଏ କ୍ଷଣିକ ଦୃଷ୍ଟିର ମହତ୍ତ୍ୱ ବୁଝିବେ । ଏହି ଆକସ୍ମିକ ଚାହାଁଣୀଟିରେ କେତେ ଆକର୍ଷଣ ଥାଏ ତାହା ସେହିମାନେହିଁ ଜାଣନ୍ତି ।

ହରଶଙ୍କର ସଂଯତ କର୍ମପ୍ରଣାୟୀ ଯୁବକ । ନିଃସ୍ୱାର୍ଥ ଜନସେବାହିଁ ତାଙ୍କର ଜୀବନର ବ୍ରତ । ସେହିକାର୍ଯ୍ୟରେହିଁ ସେ ଆତ୍ମନବେଦତ ପ୍ରାଣ । କେବେହେଲେ ସେ ସୁନ୍ଦରୀର ସୌନ୍ଦର୍ଯ୍ୟ ଉପାସନା କରବାକୁ ଚେଷ୍ଟା କରନାହାନ୍ତି । ପ୍ରଣୟର ତତ୍ତ୍ୱ ସେ କେବେ ହେଲେ ଘାଣ୍ଟି ନାହାନ୍ତି । ସେଥିରୁ କି ଅମୃତ ବାହାରେ ବା କି ବଷ ନିଃସୃତ ହୁଏ ତାହା ସେ ଜନ୍ମାବଧି ଚାଖିବାକୁ ଆଗ୍ରହାନ୍ୱିତ ହୋଇ ନାହାନ୍ତି । ଜୀବନରେ ରମଣୀ ସମ୍ପର୍କ ତାଙ୍କର ଖୁବ୍ କମ୍ । ବଳାସବାସନା ତାଙ୍କୁ କେବେହେଲେ ସ୍ପର୍ଶ କରନାହିଁ । ସେ ବଡ଼ ଘରର ପିଲା ସତ, ମାତ୍ର ଅନ୍ୟାନ୍ୟ ବଡ଼ଘରର ପିଲାଙ୍କ ପର ତାଙ୍କ ଆଚରଣ ନୁହେଁ । ସେ ଯେଉଁ ଘରେ ଜନ୍ମଗ୍ରହଣ କର ବଢ଼ି ଆସିଅଛନ୍ତି, ସେ ଘରେ ବଳାସ-ବ୍ୟସନର ଅବାରତ ଲୀଳା ଖେଳାଯାଇଥିଲେହେଁ ତାହା ତାଙ୍କର ଶୁଦ୍ଧ ଚରତ୍ରକୁ କଳୁଷିତ କରପାର ନାହିଁ । ଯୁବତୀର ସ୍ନିଗ୍ଧ ଦୃଷ୍ଟିରେ ସହଜରେ ବଚଳତ ହେବାର ଜୀବ ସେ ନୁହନ୍ତି ।

ତଥାପି ଅଜ୍ଞାତ ବଚନ ଅନୁଭୂତ ତାଙ୍କ ତରୁଣ ପ୍ରାଣକୁ ଅକସ୍ମାତ୍ ଅଭିଭୂତ କରିଗଲା । ଜୀବନର ସଂଯମ ସାଧନା ଯେପରି ମୁହୂର୍ତ୍ତିକ ମଧ୍ୟରେ ଧୂଳିସାତ୍ ହୋଇଗଲା । କୁମାରୀର ସଙ୍କୋଚମୟ ସୂକ୍ଷ୍ମ ଦୃଷ୍ଟିଟି କି ଅମୃତର ପ୍ରବେଶ ଦେଇ ଆସିଥିଲା ସେ ଜାଣନ୍ତି ନାହିଁ,—କିନ୍ତୁ ମୁହୂର୍ତ୍ତିକ ମଧ୍ୟରେ ତାଙ୍କର ପ୍ରାଣ ଅମୃତମୟ ହୋଇ ଉଠିଲା । ଅଗାଧମମତାର ଅନିର୍ବଚନୀୟ ମୋହ ଆଜି ତାଙ୍କୁ ଅକସ୍ମାତ୍ ଗ୍ରାସ କରି ବସିଲା ।

ରୋଗଶଯ୍ୟାଗତା ରମଣୀ କ୍ଷୀଣ କଣ୍ଠରେ ହରିଶଙ୍କରଙ୍କୁ ସମ୍ବୋଧନ କରି କହିଲେ—"ମୋ ଆଖି ଆଗକୁ ଟିକିଏ ଆସ ବାବା । ଦୂରରେ ଠିଆ ହୋଇ ରହିଲେ ଚଳିବ ନାହିଁ । ଅଧିକ ଦୂରକୁ ଯିବାକୁ ଏ ଆଖିର ଆଉ ଶକ୍ତି ନାହିଁ । ତା ଚିରଦିନ ପାଇଁ ଯାଉଛି । ତେବେ ଏ ଆଖି ମୁଦିବା ପୂର୍ବରୁ ତୁମକୁ ଯେ ଥରେ ଦେଖିବାକୁ ପାଇଲି ସେତିକି ମୋର ଭାଗ୍ୟ ।"

ଏହା କହି ସେ କୁମାରୀଟିକୁ ଲକ୍ଷ୍ୟକରି କହିଲେ—ମା ସୁକ୍ଷ୍ମି ତୁ ଟିକିଏ ଘୁଞ୍ଚି ଯା ମା, ସେ ଏଇ ଖଟ ଉପରେ ଆସି ମୋ ମୁଣ୍ଡ ପାଖରେ ବସନ୍ତୁ । ସେଥିରେ କି ତୁମର କିଛି ଆପତ୍ତି ଅଛି, ବାବା ?

ହରିଶଙ୍କର କହିଲେ—ନା, ଯାଉଛି । ଏହା କହି ସେ ରୋଗିଣୀର ଶଯ୍ୟା ପାଖରେ ଯାଇ ବସିଲେ । କୁମାରୀଟି ଉଠିଯାଇ ମା'ର ପାଦ ପାର୍ଶ୍ୱରେ ଅନତ ନୟନରେ ଉପବେଶନ କଲା ।

ମା କହିଲେ—କାହିଁକି ତାଙ୍କ ତମକୁ ଆଜି ଏତେ କଷ୍ଟ ଦେଲି, ତା ଜାଣ କି ବାବା ? ନା, ନା, କଷ୍ଟର କଥା ବା କାହିଁକି କହୁଛି ! ସେ କଷ୍ଟକୁ ତ ତମେ କଷ୍ଟ ବୋଲି ମନେ କର ନାହିଁ, ଚିରକାଳ ତାହାହିଁ କରିଆସୁଛ । ତେବେ ମୁଁ ନିତାନ୍ତ ନିରୁପାୟ ହୋଇ ତମକୁ ଡାକିଛି ବାବା । ଏତେ ଦିନ ହେଲା ତମରି ସାହାଯ୍ୟ ବଳରେ

ବଞ୍ଚି ରହିଛି । ଆଉ ବେଶିଦିନ ନୁହେଁ । ମୋର ଦିନ ଶେଷ ହୋଇ ଆସିଲାଣି । ଆଉ ଯଦି ବଞ୍ଚି ରହେଁ ତେବେ ବଡ଼ ଘୋର ଦିନ ଗୁରିପାଞ୍ଚଟା ବଞ୍ଚିବ !

ଏହା କହି ସେ ଟିକିଏ ନୀରବ ରହିଲେ । କିଛିକ୍ଷଣ ପରେ ପୁନର୍ବାର କହିଲେ—ଦେଖ, ବାବା, ମରିବାକୁ ଯେ ମୋର ଭୟ ତା ନୁହେଁ । ବରଂ ଯେତେ ଶୀଘ୍ର ମରିପାରେ ସେତେ ଭଲ । କିନ୍ତୁ ମରିବା ପୂର୍ବରୁ ଗୋଟାଏ ବିଷୟରେ ନିଶ୍ଚିନ୍ତ ହୋଇ ପାରିଲେ ଏ ଆତ୍ମା ଟିକିଏ ଶାନ୍ତି ପାଆନ୍ତା ! ଏ ସଂସାରରେ ମୋର ବୋଲି କହିବାକୁ ଆଉ କେହି ନାହିଁ,—ଅଛି କେବଳ ଏହି ପ୍ରାଣର ପ୍ରତିମାଟି ।

ଏହା କହି ସେ ପାଦମୂଳରେ ଉପବିଷ୍ଟା କୁମାରୀଟି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କଲେ । ତା ସଙ୍ଗେ ସଙ୍ଗେ ଗୋଟିଏ ପ୍ରାଣସ୍ପର୍ଶୀ ଗଭୀର ନିଃଶ୍ୱାସ ମଧ୍ୟ ପକାଇଲେ । ହରଶଙ୍କର ଏହି ନିର୍ବାକ ନିଃଶ୍ୱାସଟିର ଅର୍ଥ ବୁଝିଲେ । ମୁମୂର୍ଷୁ ମାତୃପ୍ରାଣ ସେହି ଅରକ୍ଷିତା କନ୍ୟାଟି ପାଇଁ ଯେ ଅବିରତ ବ୍ୟାକୁଳ ହେଉଛି, ଏହା ସେଥିରୁ ସୁସ୍ପଷ୍ଟ ସୂଚିତ ହେଉଥିଲା ।

ରୋଗାତୁରା କହିବାକୁ ଲାଗିଲେ—ପାଞ୍ଚବର୍ଷ ବେଳରୁ ଏଇଟି ପିତୃହୀନା ବାବା । ଆଜିକି ପୂରା ବାରବର୍ଷ ହୋଇଗଲା—ଏଇ ବାରବର୍ଷ ଧରି କେତେ କଷ୍ଟରେ ଯେ ମୁଁ ତାକୁ ପାଳନ କରିଆସିଛି ତା ମୁଁ ଜାଣେ, କିମ୍ବା ଯେ ଦିନରାତି କରୁଛି ସେ ଜାଣେ । ଆଜି ତାହାର ଭାର ତୁମ ଉପରେ ରଖିଯିବାକୁ ମୋର ଆତ୍ମା ଡାକୁଛି । ଗଲା କେତେଦିନ ହେଲା, ମୋର ପ୍ରାଣେ ପ୍ରାଣେ କିଏ ଯେପରି କହୁଛି—ଏକମାତ୍ର ତାହାର ଉପରେ ନିର୍ଭର କରି ତୁ ଏ ସଂସାରରୁ ବିଦାୟ ନେଇପାରୁ, ଅନ୍ୟ କାହାରି ଉପରେ ନୁହେଁ । ତାହାର ହାତରେ ସମର୍ପଣ କରି ଯା । ଦୈବବାଣୀ ପରି ଅନବରତ ଏହା

ମୋର ଅନ୍ତରରେ ଆସି ବାଜୁଛି । ମୁଁ ତା ସ୍ପଷ୍ଟ ଶୁଣି ପାରୁଛି । ମିଥ୍ୟା କହୁନାହିଁ, ବାବା ! ଏ ସମୟରେ କାହାର ତୁଣ୍ଡରୁ ମିଥ୍ୟା ବାହାରେ ନାହିଁ । ସୁକି ତୁମକୁ ଲଗିଲା '

ଏହା କହି ସେ ହରଶଙ୍କରଙ୍କ ମୁହଁକୁ ବ୍ୟାକୁଳ ନୟନରେ ଅନାଇଁ ରହିଲେ । ହରଶଙ୍କରଙ୍କ ଚକ୍ଷୁଦ୍ୱୟ ଛଳ ଛଳ ହୋଇ ଉଠିଲା । ମାତ୍ର ସେ ଆତ୍ମସମ୍ବରଣ କରି କହିଲେ—ଏତେ ବ୍ୟସ୍ତ ହେବା ଉଚିତ ନୁହେଁ ମା, ରୋଗ ଛାଡ଼ି ଯାଇପାରେ । ମୁଁ ଆଜି କଟକରୁ ଡାକ୍ତର ଆଣାଇ ଭଲ ଚିକିତ୍ସାର ବନ୍ଦୋବସ୍ତ କରୁଛି ।

ରୋଗିଣୀ କହିଲେ—ତା ହେଲେ, ମୋର କଥାଟା ବୁଝିଲ ନାହିଁ ବାବା ! ମୋର ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଗଲା ।

ହରଶଙ୍କର କହିଲେ—ନା, ମା, ସେପରି ମନେ କରୁଛନ୍ତି କାହିଁକି ? ଆପଣଙ୍କର ପ୍ରତ୍ୟେକ କଥାଟି ମୋର ହୃଦୟରେ ଗାଁଥି ହୋଇ ରହିଲା । ଯାହା ପାଇଁ ଆପଣ ଏତେ ବ୍ୟାକୁଳ, ତାଙ୍କର ସମସ୍ତ ଭାର ମୁଁ ଆଜିଠାରୁ ନିଜ ଉପରେ ନେଲି ।

ସୁକିର ମା ଏହା ଶୁଣି ଆଶ୍ୱସ୍ତ ହେଲେ । ତାଙ୍କର ଦୀପ୍ତିହୀନ ଚକ୍ଷୁ ଦୁଇଟି କ୍ଷଣକ ପାଇଁ ଦୀପ୍ତ ହୋଇ ଉଠିଲା । ସେ ପୁନର୍ବାର କହିଲେ—ତେବେ ସେ ଚେଷ୍ଟା କାହିଁକି ବାବା ? ତା କରି କିଛି ଫଳ ନାହିଁ । ମିଛଟାରେ ତା କାହିଁକି କରିବାକୁ ଯିବ ? ମୁଁ ଆଉ ବଞ୍ଚିବି ନାହିଁ,—ଏଟା ନିଶ୍ଚୟ ।

କେବଳ ଏତିକି କହି ସେ ନିରସ୍ତ ହେଲେ ନାହିଁ । ହରଶଙ୍କରଙ୍କ ହାତଟି ଧରି ସେ କାତରମିନତିପୂର୍ଣ୍ଣ କଣ୍ଠରେ କହିଲେ—ବାବା, ବଡ଼ ଠାକୁରଙ୍କର ଦୁହାଇ, ସେ ଚେଷ୍ଟା କର ନାହିଁ । ମୁଁ ବଞ୍ଚିବାକୁ ଚାହେଁ ନାହିଁ । ମୋର ସୁକିଟିର ଭାର ତୁମେ ନେବାକୁ ରାଜି ହେଲ,—ଏତିକି ମୋର ଯଥେଷ୍ଟ ।

---

# ପଞ୍ଚମ ପରିଚ୍ଛେଦ

ହରଶଙ୍କର ତାଙ୍କର ସାହାଯ୍ୟକେନ୍ଦ୍ର ଏହି ଗ୍ରାମକୁ ଉଠାଇ ଆଣିଲେ । ଏହିଠାରେ କ୍ୟାମ୍ପ ପକାଇ ରହିଲେ ଏବଂ ପୀଡ଼ିତା ରମଣୀର ସ୍ୱତନ୍ତ୍ର ସେବା ଶୁଶ୍ରୂଷାର ବନ୍ଦୋବସ୍ତ କରିଦେଲେ । ନିଜେ ତାହାର ତତ୍ତ୍ୱାବଧାନ କରିବାକୁ ଲାଗିଲେ । ମାତ୍ର ରୋଗାତୁରା ରମଣୀର ପରମାୟୁ ଭଗବାନ ଆଉ ବେଶି ବାକି ରଖି ନ ଥିଲେ । ଖୁବ୍ ଶୀଘ୍ର ସେ ସଂସାରଯାତ୍ରା ଶେଷ କରି ଆସୁଥିଲେ । ସଂସାର ସହିତ ତାଙ୍କର ମାୟାମମତାର ଚୁକ୍ତି ଅନେକ ଦିନରୁ ହୋଇ ସାରିଥିଲା,—କେବଳ ଏକମାତ୍ର ବନ୍ଧନ ଥିଲା ସୁଷି । ତାଙ୍କର ମୃତ୍ୟୁପରେ ସୁଷିର ଅବସ୍ଥା କଣ ହେବ ତାହାହିଁ ଭାବି ସେ ମ୍ରିୟମାଣ ହେଉଥିଲେ । ଦୁଃଖିନୀର ଧନ, ଏକମାତ୍ର ସନ୍ତାନ, ପ୍ରାଣର ପ୍ରତିମୂର୍ତ୍ତି ସୁଷି । ତାର ଉତ୍ତର ଜୀବନର ଚିନ୍ତା ଥିଲା ରୋଗିଣୀ ଜନନୀର ଏକମାତ୍ର ଚିନ୍ତା । ତାହାରି ପାଇଁ ସେ ସଂସାର-ମରୁଭୂମି ତ୍ୟାଗ କରି ପାରୁ ନ ଥିଲେ । ତାକୁ ଅକୂଳ ସମୁଦ୍ରରେ ଭସାଇ ଦେଇ ସେ ଆଖି ମୁଦନ୍ତେ କିପରି ? ଆଖି କି ମୁଦିବାକୁ ଚାହେଁ ? ଅରକ୍ଷିତାର ଜୀବନ-ତରଣୀ କୂଳରେ ନ ଲାଗିବା ପର୍ଯ୍ୟନ୍ତ ତାର ନିଦ୍ରା ଅସମ୍ଭବ ।

ଆଜି ସେହି ଭାସମାନ ତରଣୀଟି କୂଳରେ ଲାଗିଛି । କର୍ଣ୍ଣ-ଧାରର ଅଭାବ ନାହିଁ । ଯାହାର ହସ୍ତରେ ସେ ସମର୍ପିତା ସେ ତାର ଗତି ନିୟନ୍ତ୍ରଣ କରିବା ପାଇଁ ସର୍ବତୋଭାବେ ସମର୍ଥ । ସେ ବିଷୟରେ ସନ୍ଦେହର ଅବକାଶ ନାହିଁ । ସେ ଯେମିତି ଚଳେଇବେ, ସୁଷିର ଜୀବନ-ତରଣୀଟି ସେହିପରି ଚାଲିବ । ହରଶଙ୍କର ନିଜର ଆତ୍ମୀୟ ସ୍ୱଜନ, ବନ୍ଧୁବାନ୍ଧବ, ଏପରି କି ସ୍ୱଜାତି-ସଗୋତ୍ର ନ ହେଲେ ମଧ୍ୟ ସୌଦାମିନୀଙ୍କର ତାଙ୍କ ଉପରେ ପୂର୍ଣ୍ଣ ଆସ୍ଥା ଥିଲା । ମନୁଷ୍ୟର ଆତ୍ମା

ଅନେକ ସମୟରେ ନିଜର ଲୋକ ଶକ୍ତିନିଏ । ଯାହାରଙ୍କ ସମ୍ବନ୍ଧ ବା ବନ୍ଧୁଜନର ପରିଚୟର ଅପେକ୍ଷା ରଖେ ନାହିଁ । ଦିନକର ସମ୍ପର୍କ, ଏକ ମୁହୂର୍ତ୍ତର ଆଳାପ ସେଥିପାଇଁ ଯଥେଷ୍ଟ । ଏପରି କି ଆଖିରେ ନ ଦେଖି, କେବଳ କାହାରିକଥା ଶୁଣି ମନୁଷ୍ୟର ଅନ୍ତରାତ୍ମା ଅନେକ ସମୟରେ ସହସ୍ର ଅଜ୍ଞାତ ଅପରିଚିତ ଲୋକଙ୍କ ମଧ୍ୟରୁ ଆପଣାର ଲୋକଟି ବାଛି ନେବାକୁ ସମର୍ଥ ହୋଇଥାଏ । ସୌଦାମିନୀଙ୍କର ଠିକ୍ ତାହାହିଁ ହୋଇଛି । ଆତ୍ମା ଆତ୍ମାକୁ ଚିହ୍ନି ନେଇଛି । ବାହାରର କୌଣସି ବସ୍ତୁକୁ ଏଥିରେ ଦଲାଲିରି କରିବାକୁ ପଡ଼ିନାହିଁ ।

ସୌଦାମିନୀ ଆଜି ନିଶ୍ଚିନ୍ତ । ଏହି ନିଶ୍ଚିନ୍ତତା ଦିନକୁ ଦିନ ତାଙ୍କର ସ୍ୱର୍ଗଯାତ୍ରାର ପଥ ସୁଗମରୁ ସୁଗମତର କରିଦେଲା । ସେଥିରେ ବାଧା ନାହିଁ, ବିଘ୍ନ ନାହିଁ । ଅବାଧଗତିରେ ଅପ୍ରତିହତ କ୍ଷିପ୍ରତା- ସହକାରେ ସୌଦାମିନୀ ସେହି ରାସ୍ତା ଧରି ଚାଲିଲେ । ଦିନେ ଅକସ୍ମାତ୍ ସେହି ପଥର ସମାପ୍ତି ଆସିଗଲା । ଅଶାନ୍ତ ଆତ୍ମା ଶରୀରର ସମସ୍ତ ସମ୍ପର୍କ ଛିନ୍ନ କରି ଚାଲିଗଲା । ତାର ପୂର୍ବ ଦିନ ସୌଦାମିନୀ ହରଶଙ୍କରଙ୍କୁ ଡାକି ଶେଷ ଆଶୀର୍ବାଦ କରିଗଲେ ଓ ଆଉ ଥରେ ପ୍ରାଣର ନିବେଦନ ଅତି ସଂକ୍ଷେପରେ ସାମାନ୍ୟ ଦୁଇପଦ କଥାରେ ପ୍ରକାଶ କରି କହିଗଲେ—"ସୁପ୍ତି ତମକୁ ଲାଗିଲା ବାବା ।" ଅନ୍ୟ ସମୟରେ ସେ କନ୍ୟାକୁ ମଧ୍ୟ ଶେଷ ଆଶୀର୍ବାଦ କରି କହିଗଲେ— "ମା ସୁପ୍ତି, ହରଶଙ୍କରଙ୍କ ଉପଦେଶ ମାନି ସବୁବେଳେ ଚାଲିବୁ । ସେହି ତୋର ଭାଗ୍ୟଧର, ଭଗବାନ୍ ତୋର ମଙ୍ଗଳ କରନ୍ତୁ ।"

ହରଶଙ୍କର ସୁପ୍ତି ନିକଟରେ ରହିବା ପାଇଁ କିଛି ଦିନ ସକାଶେ ଗୋଟିଏ ପରିଚାରିକା ନିଯୁକ୍ତ କରି ଦେଲେ । ସୌଦାମିନୀଙ୍କର ଦଶାହକ୍ରିୟା ଯଥାବିଧି ସମ୍ପନ୍ନ ହେଲା । ହରଶଙ୍କର ମାତୁଳ

କୃଷ୍ଣମାଧବଙ୍କ ନିକଟକୁ ପତ୍ର ଲେଖି ଛଅଶତ ଟଙ୍କା ଆଣି ଏ କାର୍ଯ୍ୟରେ ବ୍ୟୟ କଲେ । ଅନାଥିନୀର ଅନ୍ତ୍ୟେଷ୍ଟିକ୍ରିୟା ଯେ ଏପରି ସୁନ୍ଦର ସୁଶୃଙ୍ଖଳ ଭାବରେ ସମାହିତ ହେବ, ଏହା କେହି ଆଶା କରି ନ ଥିଲେ । ଏତେ ଅର୍ଥବ୍ୟୟ କରି ଅନାତ୍ମୀୟ ଅସମ୍ପର୍କୀୟ କୌଣସି ବ୍ୟକ୍ତିର ଆତ୍ମାର ସଦ୍‌ଗତି ପାଇଁ କିଏ ଏତେ ଚେଷ୍ଟା କରେ ? ଅନେକଙ୍କ ନିକଟରେ ହରିଶଙ୍କରଙ୍କର ଏ ଚେଷ୍ଟା ଗୋଟାଏ ଦୁର୍ବୋଧ ପ୍ରହେଳିକା ପରି ପ୍ରତିଭାତ ହେଲା ।

ସୌଦାମିନୀଙ୍କର ସ୍ୱାମୀ ଦୀନନାଥ ବାରବର୍ଷ ହେଲା ଇହଧାମ ତ୍ୟାଗ କରି ଚାଲିଯାଇଥିଲେ । ସଂସାରରେ ଛାଡ଼ି ଯାଇଥିଲେ ଦୁଇଟି ପ୍ରାଣୀ । ଗୋଟିଏ ସଦ୍ୟ ବିଧବା ସ୍ତ୍ରୀ ଓ ଅନ୍ୟଟି ପାଞ୍ଚ ବର୍ଷ ବୟସର ବାଳିକା କନ୍ୟା । ଦୀନନାଥଙ୍କର ଅଳ୍ପ କିଛି ପୈତୃକ ସମ୍ପତ୍ତି ଥିଲା । ନିଜ ଆୟୁରେ ସେ ଆଉ କିଛି ଉପାର୍ଜନ କରି ସେଥିରେ ଯୋଗ କରିଥିଲେ । ଘରବାଡ଼ି ବାଦ ଦେଇ ଆଠ ଦଶମାଣ ସରେସ ଚାଷଜମି ସେ ରଖିଯାଇଥିଲେ । ତା ଛଡ଼ା ସାମାନ୍ୟ କିଛି ନଗଦ ଟଙ୍କା ସେ ଘରେ ଗଚ୍ଛିତ ରଖିଥିଲେ । ଦୀନନାଥଙ୍କର ଅକାଳ ପରଲୋକ ପରେ ଏତିକିହିଁ ଥିଲା—ସୌଦାମିନୀଙ୍କର ସମ୍ବଳ । ଆଉ ସମ୍ବଳ ହେଲା ନିଜର ବୁଦ୍ଧି ଓ ସାହସ । ତାହାରି ବଳରେ ସେ ସଂସାରରେ ସୁନ୍ଦର ରୂପେ ଚଳିଯାଉଥିଲେ । ଚାଷ ଜମିତକ ସେ ଭାଗ ଲଗାଇ ଦେଇ ଯାହା କିଛି ଉତ୍ପନ୍ନ ଫସଲ ସେ ପାଉଥିଲେ ସେତିକିରେ ତାଙ୍କର ଯେ କୌଣସି ପ୍ରକାରରେ ଦିନ କଟି ଯାଉଥିଲା । ଅଳ୍ପ ସୁଧରେ ଟଙ୍କା କରଜ ଲଗାଇ ସେଥିରୁ ଦୁଇପଇସା ମଧ୍ୟ କରୁଥିଲେ । ଗ୍ରାମର ସ୍ତ୍ରୀ-ଲୋକମାନଙ୍କ ସହିତ ତାଙ୍କର ଏ କାରବାର ଚାଲିଥିଲା । ଅସତ୍ ପ୍ରକୃତି ଟାଉଟରଙ୍କ ସଙ୍ଗରେ ତାଙ୍କର କୌଣସି ସମ୍ପର୍କ ନ ଥିଲା । ସ୍ତ୍ରୀ-ଲୋକମାନେ ସାମାନ୍ୟ କିଛି ବନ୍ଧକ ରଖି ତାଙ୍କଠାରୁ ସ୍ୱଳ୍ପ

ଅସମୟରେ ଟଙ୍କା କରଜ ନେଇଥିଲେ ଏବଂ ତାହା ପରିଶୋଧ କରି ଦେଇଥିଲେ । ସୌଦାମିନୀଙ୍କର ଟଙ୍କା କେତେବେଳେ ବୁଡ଼ି ଯାଇ ନ ଥିଲା ।

ସ୍ୱାମୀର ମୃତ୍ୟୁ ପରେ ଅତ୍ୟନ୍ତ ଦୂର ସମ୍ପର୍କୀୟ ଗୋଟିଏ ଅନାଥ ଭ୍ରାତୃସ୍ପୁତ୍ରକୁ ଆଣି ସେ ପାଖରେ ରଖିଥିଲେ । ଇଚ୍ଛା ଥିଲା ତାକୁ କୌଣସି ପ୍ରକାରେ ବାହାଘେରା କରି ଦେଇ ସଂସାରରେ ସ୍ଥାୟୀ କରାଇବେ । ସେଥିପାଇଁ ଗୋଟିଏ ଦରିଦ୍ର ଗୃହସ୍ଥର ଦଶମ ବର୍ଷୀୟା କନ୍ୟାଟି ଉପରେ ସେ ନଜର ରଖିଥିଲେ । ମାଁଙ୍କ ଟୋକାଟା କ୍ରମେ କ୍ରମେ ବଡ଼ ଉଦ୍ଧତ ଓ ଉଦ୍‌ବାଇଙ୍ଗା ହୋଇ ଉଠିଲା । ଅସତ୍ ସଂସର୍ଗରେ ପଡ଼ି ନାନା କୁକର୍ମରେ ଲିପ୍ତ ହେଲା, ଚୁଲି ଗଳିରେ ମିଶିଲା,—କଥା ଶୁଣିଲା ନାହିଁ,—ଶେଷରେ ଗୋଟାଏ ଦୁଷ୍ଟବନ୍ଧୁର ପାପପ୍ରଶ୍ରୟରେ ପଡ଼ି ତାକୁ ନେଇ କୁଆଡ଼େ ଯେ ଅନ୍ତର୍ହିତ ହୋଇଗଲା, ତାର କୌଣସି ପତ୍ତା ମିଳିଲା ନାହିଁ । କିଏ କହିଲା, କଲିକତା ପଳେଇଲା—କିଏବା କହିଲା ରେଙ୍ଗୁନ ଗୁଲିଗଲା । ଯେଉଁଠିକି ଯାଉ, ସୌଦାମିନୀ ରକ୍ଷା ପାଇଲେ—କଳଙ୍କରୁ ସାହି ମିଳିଲା ।

ତା ପରେ ମା ଝିଅ ଦୁଇଜଣ ଦୁଃଖେ ସୁଖେ ଚଳିବାକୁ ଲାଗିଲେ । ସୌଦାମିନୀ ପିଲାଦିନେ ସାମାନ୍ୟ କିଛି ପାଠ ପଢ଼ିଥିଲେ । ସ୍ୱାମୀ ମଧ୍ୟ ବିବାହ ପରେ ନିଜେ କିଛି ଶିକ୍ଷା ଦେଇଥିଲେ । ବୁଦ୍ଧିମତୀ ନାରୀ ସେତିକ ବିଦ୍ୟା ହାସଲ କରି ଓଡ଼ିଆରେ ସମସ୍ତ ଶାସ୍ତ୍ରପୁରାଣ ଆୟତ୍ତ କରିଥିଲେ ଏବଂ ଝିଅଟିକୁ ମଧ୍ୟ ତାହା ପଢ଼ାଇଥିଲେ ।

ସେ ଥର ବିଧାତାର ଦାରୁଣ ଅଭିଶାପ ସ୍ୱରୂପ ବନ୍ୟା ମାଡ଼ି ଆସିଲା । ଗୁଡ଼ିଆଡ଼େ ପ୍ରଳୟ ସୃଷ୍ଟିକଲା । ଲୋକଙ୍କର ସର୍ବନାଶ ଘଟିଲା । ଅନେକ ସଚଳ ପରିବାର ଅଚଳ ହୋଇଗଲେ । ଗାଁଗଣ୍ଡା ଭାସିଗଲା,—ଘରଦ୍ୱାର ଭାଙ୍ଗିଗଲା,—ଜମିବାଡ଼ି ନାରଖାର ହୋଇଗଲା ।

ସୌଦାମିନୀଙ୍କର ଘର ଖଣ୍ଡିକ ମଧ୍ୟ ଦୈବଦୁର୍ବିପାକରୁ ରକ୍ଷା ପାଇଲା ନାହିଁ । ଗୋଟାଏ ଅଂଶ ଭାଙ୍ଗି ଭୂମିସାତ୍ ହୋଇଗଲା । ସାମାନ୍ୟ କିଛି ଧାନ ଥିଲା, ତାହା ଭାସିଗଲା । ଜମିର ଫସଲ ସମସ୍ତ ଧୋଇ ସଫା ହୋଇଗଲା । ପକ୍ଷିରେ ଦେଖିବାକୁ ଗୋଟାଏ ସୁଦ୍ଧା ଧାନଗଛ ବାକି ରହିଲା ନାହିଁ । ସୌଦାମିନୀଙ୍କ ଅବସ୍ଥା ଶୋଚନୀୟ ହୋଇ ପଡ଼ିଲା । ଯେଉଁମାନେ ତାଙ୍କଠାରୁ କିଛି କରଜ ନେଇଥିଲେ ସେମାନେ ତାହା ଦେଇପାରିଲେ ନାହିଁ । ସମସ୍ତଙ୍କ ଘରେତ ହାହାକାର । ଋଣ ପରିଶୋଧ କରିବାକୁ କାହାର ଶକ୍ତି ଅଛି ? ବାହାରର ସାହାଯ୍ୟ ଉପରେ ଅଧିକାଂଶ ଲୋକଙ୍କୁ ନିର୍ଭର କରିବାକୁ ପଡ଼ିଲା । ସୌଦାମିନୀ ମଧ୍ୟ ଏଥିରୁ ବାଦ୍ ଗଲେ ନାହିଁ । ବନ୍ୟା ପୂର୍ବରୁ ତାଙ୍କର ଶରୀର ଅସୁସ୍ଥ ଥିଲା । ଅସୁସ୍ଥତା କ୍ରମେ ବଢ଼ିବାକୁ ଲାଗିଲା । ଦିନକୁ ଦିନ ତାଙ୍କ ଅବସ୍ଥା ସାଙ୍ଘାତିକ ହୋଇ ଉଠିଲା । ସୁଷି ପ୍ରାଣପଣେ ମା'ର ସେବା ଶୁଶ୍ରୂଷା କଲା । ହରିଶଙ୍କରଙ୍କ ସେବାଦଳ ଗ୍ରାମେ ଗ୍ରାମେ ବୁଲି ସାହାଯ୍ୟ ବାଣ୍ଟିଯାନ୍ତି, ଚୁଡ଼ାଗୁଡ଼ ଦେଇଯାନ୍ତି, କେହି ରୋଗ ବାଧିକରେ ପଡ଼ିଥିଲେ ପାଖରେ ଯଦି କିଛି ଔଷଧପତ୍ର ଥାଏ ତାହା ଦେଇଯାନ୍ତି । ସୁଷି ସେମାନଙ୍କ ହାତରୁ ସାହାଯ୍ୟ ନିଏ, ସେଥିରେ ଦିନ ଯାପନ କରେ । କେତେବେଳେ ଖାଇ କେତେବେଳେ ନ ଖାଇ ମା'ର ଶୁଶ୍ରୂଷା କରେ । ଭଗବାନଙ୍କୁ ଡାକେ,—ବିକଳରେ ପ୍ରାର୍ଥନା କରି କହେ—"ହେ ଭଗବାନ୍ ଯାହା କଲ କଲ, ମାଆଟିକି ମୋର ବଞ୍ଚେଇଦିଅ ।" କିନ୍ତୁ ସୁଷିର ଭଗବାନ ବଡ଼ ବଧିର,—ଦୁଃଖିନୀର ଗୁହାରି ଶୁଣିବା ପାଇଁ ତାଙ୍କର କାନ ଖୋଲା ନ ଥାଏ । ସେ ବଧିର ବଧିର କଠୋର ନିର୍ଦ୍ଦେଶରେ ମା ସୌଦାମିନୀଙ୍କର ଜୀବନ-ରବି ଅସ୍ତମିତ ହୋଇଗଲେ । ନିର୍ଜନ ନୀଡ଼ରେ ପ୍ରାଣର ଶାବକଟିକୁ ଛାଡ଼ିଦେଇ ବିହଙ୍ଗମା ଚିରଦିନ ପାଇଁ ଉଡ଼ିଗଲା ।

# ଷଷ୍ଠ ପରିଚ୍ଛେଦ

କୃଷ୍ଣମାଧବ କଟକ ଠିକଣାରେ ହରଶଙ୍କରଙ୍କ ପାଖକୁ ଯେଉଁ ପତ୍ର ଲେଖିଥିଲେ ତାହା ଅବଶେଷରେ ତାଙ୍କର ହସ୍ତଗତ ହେଲା । ଏକାଧିକ ସ୍ଥାନରେ ବୁଲି ବୁଲି ହରଶଙ୍କରଙ୍କର ବର୍ତ୍ତମାନ ଠିକଣାରେ ଆସି ପହଞ୍ଚିଲା । ପତ୍ର ପାଠକରି ସେ ସମସ୍ତ ବିଷୟ ଅବଗତ ହେଲେ । କୃଷ୍ଣମାଧବ ତାଙ୍କ ପତ୍ରରେ ଯୌତୁକ ବିଷୟ ବିଶଦଭାବରେ ବର୍ଣ୍ଣନା କରି ଲେଖିଥିଲେ । କେଉଁ କନ୍ୟାପକ୍ଷ କି କି ଯୌତୁକ ଦେବାକୁ ପ୍ରସ୍ତୁତ ତାହା ସେ ଠିକଣାଖି କରି ଉଲ୍ଲେଖ କରିଥିଲେ । ପତ୍ରଶେଷରେ କେଉଁ ପକ୍ଷର ପ୍ରସ୍ତାବରେ ହଁ ଭରିବାକୁ ହେବ ଏବଂ କାହାକୁ ନାହିଁ କରିବାକୁ ହେବ ସେ ବିଷୟରେ ହରଶଙ୍କରଙ୍କର ମତାମତ ଲୋଡ଼ିଥିଲେ । ହରଶଙ୍କର ଚିଠି ପଢ଼ି ଖୁବ୍ ଆମୋଦ ଅନୁଭବ କଲେ । ବିଶେଷତଃ ଯୌତୁକ ପ୍ରସଙ୍ଗଟା ତାଙ୍କୁ ବଡ଼ କୌତୁକପ୍ରଦ ବୋଧହେଲା । ଆଜିକାଲିକାର ଯୁବକମାନେ ଯୌତୁକ ଲଭ ପାଇଁ ଯେତିକି ବ୍ୟାକୁଳ, କନ୍ୟାପିତାମାନେ ମଧ୍ୟ ତା ଦେବାପାଇଁ ସେତିକି ବ୍ୟାକୁଳ ! ହରଶଙ୍କର ଭାବିଲେ—କି କିଣା-ବିକାର ଯୁଗଟା ଆସି ହାବୁଡ଼ିଗଲା ! ଏ ଯୁଗରେ ବିବାହଟା ବଜାର କାରବାର ହୋଇପଡ଼ିଲା । ଆଗ ଯୁଗରେ ତାହା ଧର୍ମର ଅଙ୍ଗ ଥିଲା । ବର୍ତ୍ତମାନ ଧର୍ମ ନାମରେ ବଜାର ସଉଦା ଚାଲିଲା । ଯେ ଯେତେ ଚଢ଼ାଦର ଦେଇପାରିଲା ତାର ସେତେ ଜିତାପଟ । ଗୋଟାଏ ନିଲାମ ବିକ୍ରୀ, ଆଉ କଣ ? ବରପାତ୍ର ଗୋଟାଏ ନିଲାମର ବସ୍ତୁ । ସେ ନିଜକୁ ନିଜେ ନିଲାମ କରିବା ପାଇଁ ଡାକ ଦେଉଛନ୍ତି, କିମ୍ବା ତାର ଅଭିଭାବକ ଡାକ ଦେଉଛନ୍ତି । ଯାହାର ବଳ ଅଛି ସେ ଚଢ଼ାଦରରେ ନିଲାମ ଧରି ପାରୁଛି, ଆଉ ଯାହାର ବଳ ନାହିଁ ସେ ହଟି ଯାଉଛି । ଏପରି ସ୍ଥଳରେ ଧର୍ମ କାହିଁ,—ପ୍ରଣୟ କାହିଁ ? ଆମେ ସାହେବ ଜାତିଟାକୁ ନିନ୍ଦା

କରନ୍ତି । ଅବଶ୍ୟ କେତେକ ବିଷୟରେ ସେ ଜାତିଟା ବଦଳାଇ ପାରେ । ମାତ୍ର ସେମାନଙ୍କର ବିବାହ କି ଯାହା ଧର୍ମଗତ ନ ହେଲେ ମଧ୍ୟ ଅନ୍ତତଃ ସେଥିରେ କିଛି ପ୍ରଣୟର ସ୍ଥାନ ଅଛି । କିନ୍ତୁ ଆମର ଏ ପରିଣୟ ବ୍ୟାପାରରେ ନା ଅଛି ଧର୍ମ, ନା ଅଛି ପ୍ରଣୟ । ହାୟ ! ଆମେ ଅଜ କି ନିଃସ୍ୱ, କି କାଙ୍ଗାଳର ଜାତି ହୋଇପଡିଛୁଁ !

ହରିଶଙ୍କର ଭାବିଲେ—ଦେଶର ଏ ଦୁରବସ୍ଥା ପାଇଁ ଯଦି କେହି ଦାୟୀ, ତା ହେଲେ ସେ ହେଉଛନ୍ତି ଆଜିକାଲିକାର ଯୁବକ-ସମାଜ । ଏହାର ପ୍ରତିକାର କେବଳ ସେହିମାନେହିଁ କରିପାରନ୍ତି । ସେହିମାନଙ୍କ ହାତରେହିଁ ଏ ରୋଗର ପ୍ରତିଷେଧକ ଔଷଧ ଅଛି । ସେମାନେ ଯଦି ଏହାର ପ୍ରଶ୍ରୟ ଦିଅନ୍ତି ବା ଏହାକୁ ଉତ୍ସାହିତ କରିବାକୁ ଯାଆନ୍ତି, ତେବେ ଦୋଷ ସେହିମାନଙ୍କର ନୁହେଁ କି ? କଳଙ୍କ-ଭାଜନ ସେହିମାନେ ନୁହନ୍ତି କି ? ଦେଶର ଅଧଃପତନ ସେହିମାନେ ଘଟାଉ ନାହାନ୍ତି କି ? ହରିଶଙ୍କର ଉତ୍ତେଜିତ ହୋଇ ଭାବିଲେ—ନରହତ୍ୟା ପାଇଁ ଆଇନରେ ଫାସିଦଣ୍ଡର ବ୍ୟବସ୍ଥା ଅଛି । କିନ୍ତୁ ଏବେ ଯେ ପ୍ରତିମୁହୂର୍ତ୍ତ ସମାଜ-ହତ୍ୟା ହେଉଛି । ଏଥିପାଇଁ ଦଣ୍ଡ କାହିଁ ? ଆଇନ ପ୍ରଣେତାର ଚକ୍ଷୁ ଦଣ୍ଟା କି ଫୁଟିଯାଇଛି ? ହରିଶଙ୍କର ମନେ ମନେ କହିଲେ—ଦଣ୍ଡର ବ୍ୟବସ୍ଥାଟା ଯଦି ତାଙ୍କ ହାତରେ ଥାଆନ୍ତା, ତା ହେଲେ ସେ ଏ ଅପରାଧ ପାଇଁ ଡବଲ ଫାସିର ଆଦେଶ ନ ଦେଇ ଛାଡନ୍ତେ ନାହିଁ । ଏହା ଭାବି ସେ ଉତ୍ତେଜନାବଶତଃ କୃଷ୍ଣମାଧବଙ୍କ ଚିଠିଟା ଚିକି ଚିକି କରି ଚିରି ଉଡାଇ ତାକୁ ଦଳି ମକଚି ଦୂରକୁ ଫୋପାଡିଦେଲେ । ପରେ ପ୍ରକୃତିସ୍ଥ ହୋଇ ମନେ ମନେ ହସି ଉଠିଲେ । ସାମାନ୍ୟ ଚିଠିଟା ଉପରେ ଏତେ ଗରମ ହୋଇ ଯାଇ ଏ ଅଦ୍ଭୁତ ବୀରତ୍ୱଟା ପ୍ରକାଶ କରିବାର କୌଣସି ଅବଶ୍ୟକତା ନ ଥିଲା ! ଚିଠିଟାର ଯେ ଜବାବ୍ ଦେବା ହୋଇ ନାହିଁ ।

ସଙ୍ଗେ ସଙ୍ଗେ ସେ ଏହି ମର୍ମରେ ଚିଠିଟାର ଜବାବ୍ ଦେଇ ଦେଲେ ଯେ ହରଶଙ୍କର ନୀଲାମର ବସ୍ତୁ ହେବାକୁ ଚାହେଁ ନାହିଁ। ଯେଉଁମାନେ ଡାକାଡାକି ଦେଇ ନୀଲାମ ଧରିବାକୁ ବ୍ୟାକୁଳ, ସେମାନଙ୍କୁ କହିଦେବା ଉଚିତ ଯେ ହରଶଙ୍କର ସେମାନଙ୍କୁ କୃପା ଚକ୍ଷୁରେ ଦେଖେ। ଚିଠିଟା ଲେଖି ସେ ଡାକଘରକୁ ପଠାଇଦେଲେ। ସେତେବେଳକୁ ସୂର୍ଯ୍ୟ ମୁଣ୍ଡଉପରେ ହେବାକୁ ବସିଲେଣି। ବାରଣ୍ଡାର ଅଖପାଖା। ହରଶଙ୍କର ଉଠିଲେ ଏବଂ ଅଗ୍ରେ ଅଗ୍ରେ ସୌଦାମିନୀଙ୍କ ଘରଆଡ଼କୁ ଚାଲିଲେ। ବନ୍ୟାରେ ଘରଟାର ଯେଉଁ କ୍ଷତି ହୋଇଥିଲା ତାହା ମରାମତି କରିବାପାଇଁ ସେ ବ୍ୟବସ୍ଥା କରିଥିଲେ। ତା କେତେଦୂର ହେଲା, ତାହାହିଁ ଦେଖିବା ତାଙ୍କର ଥିଲା ମୁଖ୍ୟ ଉଦ୍ଦେଶ୍ୟ।

ଧୀରେ ଧୀରେ ଘରମଧ୍ୟରେ ପ୍ରବେଶ କରି ହରଶଙ୍କର ଦେଖିଲେ—କେହି କୁଆଡ଼େ ନାହିଁ। ବାଉଳି ମା ବୋଲି ଯେଉଁ ଲୋକଟିକୁ ସେ ପରିଚାରିକା ପଦରେ ନିଯୁକ୍ତ କରିଥିଲେ ସେ ସ୍ନାନ କରିବାକୁ ଯାଇଥିଲା। ମୂଲିଆମାନେ ବି ସେତେବେଳକୁ ଚାଲିଗଲେଣି। ହରଶଙ୍କର ମରାମତି କାମଟା ଉପରେ ଟିକିଏ ଆଖି ପକାଇଦେଇ ରୋଷେଇ ଘରଆଡ଼କୁ ଚାଲିଲେ। ଯୂଥି ସେତେବେଳେ ଅନ୍ୟଆଡ଼କୁ ମୁହଁକରି କରଚୁଲିରେ ତେଲ ଦିଆଇ ଲଙ୍କା ପକାଇ ଦହି ତରକାରୀ ହାଣ୍ଡିରେ ଗରମ କରିଚୁଲିଟା ଛାଡ଼ିଦେଇଛନ୍ତି, ଆଉ ଦହିତରକାରୀଟା ଚାଲୁର ଛନ୍ଦୁଛି—ଛେଁ ଉର୍ର୍। ହରଶଙ୍କର କହିଲେ—ବାଃ ବାଃ ଯୂଥି, ତୁମଟା ଚମତ୍କାର ହୋଇଛି।

ଯୂଥି ଚମକି ଉଠିଲା। ଅଙ୍ଗବସ୍ତ୍ରଟା ତାର ଶିଥିଳ ହୋଇପଡ଼ିଥିଲା। ହରଶଙ୍କର ବାବୁ ଯେ ଏମିତି ଅସମୟଟାରେ ଆସି ପହଞ୍ଚିବେ ସେ ଭାବି ନ ଥିଲା। କେଶଗୁଚ୍ଛ ଟିକିଏ ସଂସ୍କାର କରିନେବାକୁ ସମୟ ଥାଇ ନାହିଁ। ଶାଢ଼ିଏ ଭଲଲୁଗା ମଧ୍ୟ ପିନ୍ଧିବାକୁ ତାକୁ ଅବସର ମିଳି ନାହିଁ।

ହାତରେ ତାର ଠାଏ ଠାଏ କଳା ଲାଗି ଅଲକ୍ଷଣ ଦେଖାଯାଉଛି । ପର କେଉଁଠି ଯେ କଣ ହୋଇଛ ତା ସେ ଜାଣେ ନାହିଁ । ସୁଷି ଅସ୍ତବ୍ୟସ୍ତ ହୋଇ ଅଙ୍ଗ ବସ୍ତ୍ର ଖଣ୍ଡିକ ଟାଣିହିକି ଅଙ୍ଗ ଆବୃତ କରିବାକୁ ଲାଗିଲା । ଫଳତଃ ଲୁଗାରେ ମେଞ୍ଚା ମେଞ୍ଚା ହୋଇ କଳା ଲାଗିଗଲା । ହରଶଙ୍କର ତା ଲକ୍ଷ୍ୟ କରି କହିଲେ—ଥାଉ, ଥାଉ ସୁଷି, ଏତେ ବ୍ୟସ୍ତ ହେବାର ଦରକାର ନାହିଁ । ମୁଁ ପଛେ ଆଖିବୁଜି ଦେଉଛି । ଲୁଗାଟା ଯେ କଳା ବଲବଲ ହୋଇଗଲା ।

ଲଜ୍ଜାରେ ସୁଷିର ମୁହଁ ଖଣ୍ଡିକ ପାଟଳ ହୋଇଗଲା—ଦେହରେ ଘରମଝାଳ ବିନ୍ଦୁ ବିନ୍ଦୁ ହୋଇ ଫୁଟି ଉଠିଲା । ହରଶଙ୍କର ଆହୁରି ଟିକିଏ ପାଖକୁ ଘୁଞ୍ଚିଯାଇ କହିଲେ—ଆଜ ଖାଇବାକୁ ଦେବ ସୁଷି ?

ସୁଷି ବିପର୍ଯ୍ୟସ୍ତ ମୁଖରେ କେବଳ ମୃଦୁ ହାସ୍ୟ କରିବାକୁ ଲାଗିଲା । ହରଶଙ୍କର କହିଲେ—ଏମିତି କରି ମୁହଁ ବୁଲେଇ ଛିଡ଼ା ହୋଇ ରହିଲେ ଯେ ଭଦ୍ରଲୋକ ପ୍ରତି ଅପମାନ ହୁଏ, ସୁଷି ! ଖାଇବାକୁ ନ ଦେଲ ନାହିଁ, ଟିକିଏ କଥା ବି କହିବ ନାହିଁ ?

ସୁଷି ସଲଜ୍ଜ ହାସ୍ୟକରି ଧୀରେ ଧୀରେ କହିଲା—ଖାଇଲେ ଯେ ଜାତି ଯିବ ।

ହରଶଙ୍କର ଠୋ ଠୋ କରି ହସି ଉଠିଲେ । କହିଲେ—କେଉଁ ବାଟେ କୁଆଡ଼େ ଯିବ ତା ଆଜ ଦେଖିବାକୁ ହେବ । ନ ଦେଖି ଛାଡ଼ିବ ନାହିଁ, ସୁଷି ।

ଏହା କହି ସେ ଚେକାମାଡ଼ି ବସିପଡ଼ିଲେ । ବଡ଼ ମୁସ୍କିଲ କଥା ! ସୁଷି କଣ କରିବ କିଛି ଠିକ୍ କରିପାରିଲା ନାହିଁ । ଏକା-ବେଳେକେ ଯେ ରାସ୍ତା ବନ୍ଦ ! ପଳାଇଯିବାର ବି ଉପାୟ ନାହିଁ ହରଶଙ୍କର କହିଲେ—ସତ କହୁଛି ସୁଷି, ବଡ଼ ଭୋକ ଲାଗୁଛି । ସାର

ସକାଳୁ ପେଟରେ ଦାନା ପଣି ନାହିଁ, ପେଟଟା ହାହାକାର କଲଣି । ଏଭଳି ଲୋକଙ୍କୁ ଘରୁ ତଡ଼ିଦେବାଟା ଘୋର ଅଧର୍ମ ହେବ, ମୁକ୍ତି ।

ମୁକ୍ତି ହସି ହସି ଜବାବ ଦେଲା—ତା ତ ସତ, ତେବେ ଏତେ ଅଧୈର୍ଯ୍ୟ ହୋଇ ପଡ଼ିବା ଯେଉଁ ଅତିଥିର ଧର୍ମ, ତାଙ୍କୁ ଘରୁ ତଡ଼ି ଦେବାଇ ଉଚିତ ।

ହରଶଙ୍କର ହସିଲେ । କହିଲେ—ତେବେ ଆଉ ଟିକିଏ ଡେରି ଅଛି ନା କଣ ? ତା ହେଲେ ଅତିଥି ଧୈର୍ଯ୍ୟ ଧରି ଅପେକ୍ଷା କରିପାରେ ।

ଏହା କହି ହରଶଙ୍କର ଉଠିଲେ । କହିଲେ—ଶୀଘ୍ର ଶୀଘ୍ର ସାର ମୁକ୍ତି । ମୁଁ ଯାଇ ସେହି ଘରଟାରେ ଅପେକ୍ଷା କରୁଛି । କିନ୍ତୁ ବେଶି ଡେରି କଲେ ଚଳିବ ନାହିଁ । ଅତିଥିର ଅବସ୍ଥା ଯାହା ହେଲଣି ସେଥିରେ ମୂର୍ଚ୍ଛା ସଙ୍ଗେ ସଙ୍ଗେ ମରଣ ଘଟିବା ବି ବିଚିତ୍ର ନୁହେଁ ।

ଏହା କହି ହରଶଙ୍କର ଚାଲିଗଲେ ଓ ପୂର୍ବୋକ୍ତ ଘରଟିରେ ଯାଇ ଅପେକ୍ଷା କଲେ । ମୁକ୍ତି ତା ଲକ୍ଷ୍ୟ କଲା । ହରଶଙ୍କର ଯେ ସତକୁ ସତ ଘରେ ଯାଇ ବସିରହିଲେ । ଏ କଣ ମ ! ବାସ୍ତବିକ୍ କଣ ସେ ଖାଇବାକୁ ଆସିଛନ୍ତି ? ମୁକ୍ତି ତାଙ୍କୁ କଣ ଖାଇବାକୁ ଦେବ ? ସାମାନ୍ୟ ବାଇଗଣ କଦଳୀ ଦେଇ ସେ ଗୋଟାଏ ତରକାରି କରିଛି । ଆଉ ସେହି କଡ଼ମାଟା ରାନ୍ଧିଛି । ଡାଲି ନାହିଁ, ମାଛ ନାହିଁ, ଭଜା ନାହିଁ, ଆଉ କିଛି ନାହିଁ । ସେ କଣ ଦେଇ ଭାତ ଦେବ ? ମୁକ୍ତି ବଡ଼ ବ୍ୟସ୍ତ ହୋଇପଡ଼ିଲା । ଏହି ସମୟରେ ବାଉଲି ମା ସ୍ନାନ ସାରି ଆସିଲା । ମୁକ୍ତି ତାକୁ ସମସ୍ତ କଥା କହିଲା । ବାଉଲି ମା ତା ଶୁଣି ଆକାଶରୁ ଖସି ପଡ଼ିଲା ପରି ହେଲା । କହିଲା—ଏଁ ! ବାବୁ ଏଠି ଖାଇବେ ? ନାହିଁ ମ । ମିଛଟାରେ ଠାପଣ କରୁଥିବେ—ମଜା କରୁଥିବେ । ଆଚ୍ଛା, ମୁଁ ଯାଉଛି ପଚାରିବି ।

ଏହା କହି ସେ ଧସ୍ ଧସ୍ ହୋଇ ଚୁଲିଦାର ଆରମ୍ଭ କଲା । ମୁକ୍ତି କହିଲା—ରହି ଲେ, ରହି ଲୋ ପୋଡ଼ାମୁହାଁ, କଣ ଯାଇ ପଚାରିବୁ ତୁ ?

ବାଉଳିମା ଜବାବ ଦେଲା—କି ? ମତେ କଣ ପଚାରି ଅସେ ନାହିଁ । କହିବି—ସତେ କଣ ସାଆନ୍ତେ ଏଠି ଭୋଜନ କରିବେ ? ଆମରତ ଦୁଃଖୀ ଘର, ପେଜ ପାଣିକୁ ଆଶ୍ରା । ସାଆନ୍ତ ମଣିମାଙ୍କ ଭୁଣ୍ଡିକୁ ସେ ରୁଚିବ ନା ? ଏହିପରି ବନେଇ ଚୂନେଇ ଦ କଥା କହିବି । କହିଲା—କହି ଜାଣିଲେ କଥା ସୁନ୍ଦର, ବାନ୍ଧି ଜାଣିଲେ ମଥା ସୁନ୍ଦର । ମୋତେ ଆଉ ତା ବଳି ଯିବ ନା ?

ଏହା କହି ସେ କୌଣସି ପ୍ରକାର ବାଧା ନ ମାନି ଧାଇଁଲା । ଠିକ୍ ସେହିମତେ ଯାଇ ହରିଶଙ୍କରଙ୍କୁ ପଚାରିଲା । ହରିଶଙ୍କର କହିଲେ—ହଁ, ସେହି ପେଜପାଣି ବି ଆମର ଆଶ୍ରା । ଶୀଘ୍ର ନେଇଆସିବାକୁ କହ । ଇତ୍ୟବସରେ ମୁକ୍ତି ଦୁଇ ଚୁଲିଗଠା ବଢ଼ି ନେଇ ପୋଡ଼ପକାଇ ସଇତା କରିଥିଲା, ଆଉ ମୁଗଡ଼ାଲି ଦଳା ବି କଷାରିଥିଲା ।

ବାଉଳିମା ଆସି କହିଲା—ସତ ଲୋ ମା, ମୁଁ ଯାଏଁ କୁଆଡ଼େ ! ବାବୁ ତ ପାଗଳ ନ ପଚାଇଲ ଯୁଝିବେ ନାହିଁ, ଦେଖୁଛୁ । ରଜାଘର ପୁଅର ନଦ ଖୁଦପିଠା ଖାଇବାକୁ ମନ ହେଲା, ଜାଣିଛୁ । ଆମର ଏଥିରେ କଣ ଅଛି ? ମୁଁ ଯାଏ ମା, ଠା କରିଦେଇ ଆସେ, ତମେ ବଢ଼ାବଢ଼ି କର ।

ମୁକ୍ତି ବଢ଼ାବଢ଼ି କରି ଶୋଇବା ଘରକୁ ଯାଇ ନିଜେ ଫୁଲପକା ଧୋବଶାଢ଼ୀ ପିନ୍ଧିଲା । ମୁଣ୍ଡର ବିସ୍ରସ୍ତ କେଶରାଶି ଟିକାଏ ସଜାଡ଼ି ନେଲା । ଦେହରେ ଯେଉଁଠି କଳା ଲାଗିଥିଲା ଧୋଇ ପୋଛି ହେଲା । ଅବଶେଷରେ ପରିଷ୍କାର ପରିଚ୍ଛନ୍ନ ବେଶରେ ଲକ୍ଷ୍ମୀପ୍ରତିମାଟି ପରି ସେ ଅନ୍ନବ୍ୟଞ୍ଜନ ଧରି ସସ୍ମିତମୂର୍ତ୍ତିରେ ହରିଶଙ୍କରଙ୍କ ଆଗରେ ଉପସ୍ଥିତ

ହେଲା । ଯଥାସ୍ଥାନରେ ଅନ୍ନବ୍ୟଞ୍ଜନ ରଖିଦେଇ ସେ ସବୁ ବାଢ଼ିବାର ଉପକ୍ରମ କରୁଛି, ହରଶଙ୍କର ବାଟ ଓଗାଳି କହିଲେ—ତମେ ଯେ ଭୁଲିଲ, ସୁଷି । ମୁଁ ଜାଣୁ କହୁଥିଲି—ତମେ ଏଠି ନ ବସିଲେ ମୁଁ ଏ ସବୁ କଦାପି ଛୁଇଁବି ନାହିଁ ।

ସୁଷି କହିଲା—ମୁଁ କଣ ପାନ ଭାଙ୍ଗିବି ନାହିଁ ?

ହରଶଙ୍କର ଉତ୍ତର ଦେଲେ—ତା, ପରେ ହେବ, ପାନ ବର୍ତ୍ତମାନ କାହାର ଦରକାର ନାହିଁ ।

ସୁଷି ଅଗତ୍ୟା ବସି ରହିଲା । ହରଶଙ୍କର ଖାଇବାକୁ ଆରମ୍ଭ କଲେ ।

---

## ସପ୍ତମ ପରିଚ୍ଛେଦ

ଖାଉଁ ଖାଉଁ ହରଶଙ୍କର କହିଲେ—ତମେ ତ ଚମତ୍କାର ରାନ୍ଧି ପାର ସୁଷି ! ଏସବୁ ତମେ ରାନ୍ଧିଛ ?

ସୁଷି କହିଲା—ଆଉ ବେଶି ଠଟ୍ଟା କରନ୍ତୁ ନାହିଁ । ଯେଉଁ ରାନ୍ଧଣାଟା ତ ! ମୁହଁରୁ ଛଡ଼ୁ ନ ଥିବ !

ହରଶଙ୍କର କହିଲେ—ଠଟ୍ଟା କରୁ ନାହିଁ ସୁଷି, ସତ କହୁଛି—ଖୁବ୍ ଭଲ ହୋଇଛି ।

ସୁଷି ଜବାବ୍ ଦେଲା—ହଁ, ଖାଇବାକୁ ଜଣାଯାଉଛି ଯେ ! ସବୁତ ସେହିପରି ରହିଛି, ଭଲ ଲାଗିଲେ କେମିତି ? ମିଛ କହିଲେ ଲୋକେ ନରକରେ ପଡ଼ନ୍ତି ପରା !

ହରଶଙ୍କର ଉତ୍ତର ଦେଲେ—ପଡ଼ିଲେ, ପଡ଼ନ୍ତୁ । କିନ୍ତୁ ମୁଁ ଠିକ୍ ସ୍ୱର୍ଗକୁ ଯିବି—ଏଟା ନିଶ୍ଚୟ । ଆଉ ଯେତେବେଳେ ଯିବି—

ତମକୁ ସଙ୍ଗରେ ନ ନେଇ ଛାଡ଼ିବ ନାହିଁ । କାରଣ ସୁଷମାସଣୀର ହାତର ରନ୍ଧଣାଟାରୁ ବଞ୍ଚିତ ହେଲେ ସ୍ୱର୍ଗବାସଟା ବିଫଳ ହୋଇଯିବ । ତେବେ ସହଗମନ ପାଇଁ ପ୍ରସ୍ତୁତ ଅଛ ତ, ସୁଷି ?

ସୁଷିର ମୁହଁ ଲଜ୍ଜାରେ ରଙ୍ଗ ପଡ଼ିଗଲା । ହରଶଙ୍କର କହିଲେ—କିନ୍ତୁ ସେଟା ହିନ୍ଦୁର ଧର୍ମ । ତା ନ ହେଲେ ଯେ ସତୀତ୍ୱରେ ବାଧା ପଡ଼େ, ସୁଷି !

ଏହା କହି ସେ ହସିବାକୁ ଲାଗିଲେ । ସୁଷି କହିଲା—ଯାଃ, ମୁଁ ଆଉ ଏଠି ରହିବ ନାହିଁ ।

ଏହା କହି ସେ ପଳାଇବାକୁ ଚେଷ୍ଟା କଲା । ମାତ୍ର ସୁଷିର ବସନାଞ୍ଚଳଟା ହରଶଙ୍କରଙ୍କ ହାତରେ ପଡ଼ିଗଲା । ହରଶଙ୍କର ତାହା ଟାଣିଧରି କହିଲେ—ଭୟ ନାହିଁ, ସୁଷି । ଏତେ ଶୀଘ୍ର ତା ଘଟୁନାହିଁ—ବହୁତ ଡେରି ଅଛି । ପଳାଅ ନା, ମୋତେ କଣ ସୁରୁଣ୍ଟୁରରେ ଧଡ଼ା ଖାଇବାକୁ ଦେବ ନାହିଁ ? ଅଚ୍ଛା, ଆଜଠାରୁ ସେପରି କଥା ନ କହିବି । ମୁଁ ହଟ୍ ମାଇଲି, ତମେ ଟିକିଏ ବସ ।

ସୁଷି ଟିକିଏ ଦୂରରେ ବସି ମାଛିରେ କଶାଗ୍ର ସାହାଯ୍ୟରେ ଗାର କାଟିବାକୁ ଲାଗିଲା । ହରଶଙ୍କର ଖାଇବାକୁ ଲାଗିଲେ । ସମସ୍ତ ଅନ୍ନବ୍ୟଞ୍ଜନ ନିଃଶେଷ ହୋଇଆସିଲା । ସୁଷି କହିଲା—ଆଉ ଦିଓଟି ଭାତ ଆଣେ ?

ହରଶଙ୍କର ଜବାବ୍ ଦେଲେ—ଏକାବେଳକେ ମାରିଦେବାର ମତଲବ ନା କଣ ?

ସୁଷି କହିଲା—ଅହା ! ଯେଉଁ ଖିଆଟା ତ ଖାଇଲେ । ସେଥିରେ ପୁଣି ମାରିଦେବାର ମତଲବ !

ହରଶଙ୍କର ଉତ୍ତର ଦେଲେ—ନା, ସୁଷି ! ସେପରି ମନେ କରିବାଟା ତମର ଭୁଲ । ଆଜି ଯାହା ଖାଇଛି, ଜନ୍ମାବଧି ବୋଧହୁଏ ସେପରି ଖାଇ ନ ଥିଲି ।

ସୁଷି କହିଲା—ଆଉ ଆଜି, କଥାଗୁଡ଼ାକ ବଦଳେଇ କରି କହିବାଟା ଆପଣଙ୍କର ସ୍ୱଭାବ ।

ହରଶଙ୍କର ଏହା ଶୁଣି ଯେପରି ଚମକି ଉଠିଲେ । କ୍ଷଣକାଳ ଗୁମ୍ ହୋଇ ବସି କଣ ଭାବିବାକୁ ଲାଗିଲେ । ତା ପରେ ବଡ଼ କାତର କଣ୍ଠରେ ଡାକିଲେ—ସୁଷି !

ଅସ୍ୱାଭାବିକ କଣ୍ଠସ୍ୱରଟା ଶୁଣି ସୁଷିର ପ୍ରାଣରେ ହଠାତ୍ ଗୋଟାଏ ଅପରାଧର ଭାବ ଜାଗି ଉଠିଲା । ତାର ମନେ ହେଲା କଥା କହୁଁ କହୁଁ ସେ ଯେପରି ଅମାର୍ଜନୀୟ ପ୍ରଗଲ୍ଭତା ପ୍ରକାଶ କରି ପକେଇଛନ୍ତି । ବୋଧହୁଏ ତାହା ହରଶଙ୍କରଙ୍କ ପ୍ରାଣରେ ଆଘାତ ଦେଇଛନ୍ତି । ଏହା ଭାବି ସେ ନୀରବ କ୍ଷମାଭିକ୍ଷାର ଦୃଷ୍ଟି ନେତ୍ରପ୍ରାନ୍ତରେ ଢଳ ଢଳ କରି ହରଶଙ୍କରଙ୍କ ମୁହଁ ଆଡ଼କୁ ଚାହିଁ ରହିଲା ।

ହରଶଙ୍କର କହିଲେ—ଏତେ ଦିନଯାଏ ଯେ ମୋତେ ଚିହ୍ନି ପାରିଲ ନାହିଁ ସୁଷି, ଏଇଟାତ ବଡ଼ ଦୁଃଖର କଥା ।

ସୁଷି ଏ ଉକ୍ତିର ତାତ୍ପର୍ଯ୍ୟ ଅଣୁମାତ୍ର ବୁଝି ନ ପାରି ବଲବଲ ହୋଇ ଚାହିଁ ରହିଲା । ହରଶଙ୍କର କହିବାକୁ ଲାଗିଲେ—ଯେ ଅନ୍ତରର ଅନ୍ତରତମ ଲୋକ, ସାରା ଜୀବନର ସାଥୀ, ତା ସାଙ୍ଗରେ କଥା କହିବାକୁ ହେଲେ କଣ ଏହିପରି "ଆପଣ" "ଭଦ୍ରାନ୍" ଲଗାଇ କହିବାକୁ ହୁଏ ? ମାଆଙ୍କର ଶେଷ କଥାଟା କି ଭୁଲିଗଲ ସୁଷି ?

ଏହା କହି ସେ ଆଚମନ କରିବା ପାଇଁ ଉଠିଗଲେ । ଆଚମନ ପରେ ଗୃହ ଭିତରେ ପ୍ରବେଶ କରି ଦେଖିଲେ,—ଅବନତମୁଖୀ ସୁଷମାର ନେତ୍ରପ୍ରାନ୍ତ ଦେଇ ଟପ୍ ଟପ୍ ହୋଇ ଅଶ୍ରୁବିନ୍ଦୁ ଝରିପଡୁଛି । ତା ଦେଖି ସେ ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ । ତତକ୍ଷଣାତ୍ ପକେଟରୁ ରୁମାଲଟା କାଢ଼ି ସୁଷିର ଚକ୍ଷୁଦ୍ୱୟ ପୋଛି ଦେବାକୁ ଯାଇ

କହିଲେ—ଛି ସୁଜି, ଏ କଣ ? ତମ ମନରେ ଯେ ଏତେ କଷ୍ଟ ହେବ ତାହା ଜାଣି ନ ଥିଲି । ମୋତେ କ୍ଷମାକର, ମୋର ଅପରାଧ ହୋଇଛି ।

ସୁଜି ଶୀଘ୍ରଗତିରେ ଦୂରକୁ ପୁଣି ଯାଇ ନୀରବରେ ଛିଡ଼ା ହୋଇ ରହିଲା । ହରିଶଙ୍କର କହିଲେ—ସୁଜି, ମୋର କଥାଟା ବୋଧହୁଏ ବୁଝିପାରିଲ ନାହିଁ । ମୋର କହିବାର ଉଦ୍ଦେଶ୍ୟ ହେଉଛି—ତମକୁ ମୁଁ କି ଚକ୍ଷୁରେ ଦେଖେଁ, ତମେ ମୋର କିଏ, ତା ତମର ଜାଣିବା ନିତାନ୍ତ ଦରକାର । ତମେ ତା ନ ବୁଝିଲେ ଚଳିବ କିପରି ? ଏ ତ ଦିନ ଅଧିକର କଥା ନୁହେଁ,—ଚିର ଜୀବନର ସମ୍ପର୍କ ! ଏଥିରେ ସାମାନ୍ୟ ଟିକିଏ ଆଞ୍ଚ ଲାଗିଲେ ବି ପ୍ରାଣରେ କଷ୍ଟ ହୁଏ । ଏ ସମ୍ପର୍କ ନିତାନ୍ତ ଘନିଷ୍ଠ,—ନିତାନ୍ତ ଅନ୍ତରଙ୍ଗ । ବାହାରର କୌଣସି ପ୍ରକାର ଆବରଣର ଏଥିରେ ସ୍ଥାନ ନାହିଁ । ସମସ୍ତ ଆବରଣ ଛିନ୍ନ କରି ଏହା ଆତ୍ମପ୍ରକାଶ କରିବାକୁ ଚାହେଁ,—ସେଇଥିରେ ହିଁ ଏହାର ସାର୍ଥକତା । ଏଥିରେ ଶିଷ୍ଟାଚାରର ମାତ୍ରା ଯେତେ କମ ହୋଇପାରେ ସେତେ ଭଲ । ସେହି କାରଣରୁ ମୁଁ କହୁଛି—ଏସବୁ ବର୍ଜନ କରିବାକୁ ହେବ, ସୁଜି । ମୁଁ ତ କେବଳ "ଆପଣ, ଭବାନ୍" କରି ତମ ସାଙ୍ଗରେ କଥାବାର୍ତ୍ତା କରିପାରିବି ନାହିଁ । ତେବେ ତମର ଏସବୁ ଅନାବଶ୍ୟକ ଶିଷ୍ଟାଚାରର ଆବରଣ କାହିଁକି ? ଦେଖ, ଆଉ ଯେପରି ତା ନ ହୁଏ, ସୁଜି !

ଏହା କହି ହରିଶଙ୍କର ପଚାରିଲେ—ଏପର୍ଯ୍ୟନ୍ତ ଯେ ପାନ ଦେଇ ନାହିଁ ତା ମନେ ଅଛି ତ ? ଯାଅ, ଶୀଘ୍ର ଆଣ, ମୁଁ ଯାଏଁ ।

ସୁଜି ପାନ ଆଣିବାକୁ ଯିବା ସମୟରେ ହରିଶଙ୍କର ପୁନଶ୍ଚ ଡାକି ପଚାରିଲେ—ତମେ ତ କିଛି ଖାଇ ନ ଥିବ ସୁଜି ? ମୋର ସେ ବିଷୟରେ ପ୍ରତି ଆଦୌ ନଜର ନାହିଁ । ମୁଁ ଖାଉଁ ଖାଉଁ କେତେ ଡେରି କରିଦେଲି ! ମୋତେ ଟିକିଏ କହିଲ ନାହିଁ ?

"ନା, ବେଶି କଷ୍ଟ ହେବ ହୋଇ ନାହିଁ" ବୋଲି କହି ସୁଷି ଶୀଘ୍ର ଯାଇ ପାନ ଆଣିଦେଲା । ହରଶଙ୍କର ତା ହାତରୁ ପାନ ନେବାକୁ ଯାଇ ଦେଖିଲେ,—ହାତଟା ଏକାବେଳକେ ଶୂନ୍ୟ,—କୌଣସି ଅଳଙ୍କାର ନାହିଁ,—କାଚ ପଟେ ବି ନାହିଁ । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—ଏ କଣ ସୁଷି ? ଏକାବେଳେକେ ଯେ ବିଧବାର ହାତ କରି ବସିଛ ! ଅନ୍ୟ ଲୋକପ୍ରତି ଟିକିଏ ଦୟାମାୟା ବି ନାହିଁ ।

ସୁଷି ଲଜ୍ଜାରେ ଲାଲି ପଡ଼ିଯାଇ, ପଳେଇଯାଇ ବଞ୍ଚିଲା । ହରଶଙ୍କର ବିଦାୟ ନେଲେ ।

---

## ଅଷ୍ଟମ ପରିଚ୍ଛେଦ

ହରଶଙ୍କର ସେହିଦିନ କଟକର ଏକ ଜଣାଶୁଣା ଅଳଙ୍କାର ବିକ୍ରେତା ନିକଟକୁ ଅର୍ଡର ପଠାଇଦେଲେ । ସୁନାର ଚୂଡ଼ି, ଗୋଟାଏ ସୁନାର ହାର, ଦୁଇଟି ସୁନା ମୁଦି ଓ ଦୁଇଟି କର୍ଣ୍ଣାଳଙ୍କାର ପାଇଁ ବାଇନା ଦେଇଦେଲେ । ଯଥା ସମୟରେ ସେ ତାହା ଆସି ଉପସ୍ଥିତ ହୋଇଗଲା । ହରଶଙ୍କର ତାହା ନେଇ ସୁଷିର ଘରକୁ ଗଲେ । ଘର ମଧ୍ୟରେ ପ୍ରବେଶ କରି ଡାକିଲେ—"ସୁଷି !"

ସୁଷି ସେତେବେଳେ ଗୋଟିଏ କ୍ଷୁଦ୍ର କୋଠରିରେ ବସି ପାନ ଭାଙ୍ଗୁଥିଲା । ଡାକ ଶୁଣି ତରତର ହୋଇ ଜବାବ ଦେଲା— "ଯାଉଛି ।" ହରଶଙ୍କର ଶୟନାଗାରରେ ପଡ଼ିଥିବା ଖଟ ଉପରେ ବସି ଅପେକ୍ଷା କଲେ । ଅଳ୍ପକ୍ଷଣ ପରେ ସୁଷି ଆସି ଉପସ୍ଥିତ ହେଲା । ହରଶଙ୍କର ପାର୍ଶେଲ୍ ବାକ୍ସଟା ପଛଆଡ଼େ ଲୁଚାଇ ରଖିଥିଲେ । କେବଳ ଗୋଟାଏ ସୁନାମୁଦି ଗୋପନରେ ହାତରେ ଧରିଥିଲେ । ସୁଷିର

ମୁହଁକୁ ଗୃହିଁ ହସି ହସି କହିଲେ—ଏତେ ସ୍ୱାର୍ଥପର ଲୋକ ତ ମୁଁ ଜଗତରେ ଦେଖି ନାହିଁ । କିଏ ପାନ ଭାଙ୍ଗି ଖାଇଲା, ଅଥଚ ଯେ ପାନର ମହତ୍ତ୍ୱ ବୁଝେ, ତା ପାଇଁ ଟିକେ ବି ଆଣିଲା ନାହିଁ । ସୁଷି ମୃଦୁ ହାସ୍ୟ କରି ଜବାବ ଦେଲା—"ଯାହାଙ୍କର ଧୈର୍ଯ୍ୟର ଏତେ ଅଭାବ, ତାଙ୍କୁ ପାନର ଡେଙ୍ଗ ଟିକିଏ ଦେବା ଅନୁଚିତ ।" ଏହା କହି ସେ ହରଶଙ୍କରଙ୍କ ଆଡ଼କୁ ଦୁଇଖିଲି ପାନ ବଢ଼ାଇଦେଲେ । ହରଶଙ୍କର ଚିତ୍କାର କରି ଉଠିଲେ—ଏ କଣ କରିଛ ସୁଷି ? ଡାହାଣ ହାତରେ ଅଙ୍ଗୁଳିଟା କାଟି ରକ୍ତବୋଳ କରି ପକାଇଛ ! ଦେଖେଁ ଦେଖେଁ,—ସୁଷି କହିଲା କାହିଁ ? ହରଶଙ୍କର ହଠାତ୍ ତା'ର ହାତଟି ଧରି ପକାଇ ଅତି କ୍ଷିପ୍ରହସ୍ତରେ ଅନାମିକା ଅଙ୍ଗୁଳିରେ ନାମାଙ୍କିତ ସ୍ୱର୍ଣ୍ଣାଙ୍ଗୁରୀୟଟି ନିଗାଡ଼ିଦେବାକୁ ଚେଷ୍ଟା କରୁ କରୁ ଦୈବାତ୍ ସୁଷିର ଦୃଷ୍ଟି ତା ଉପରେ ପଡ଼ିଯିବାରୁ ସୁଷି ତୁରନ୍ତ ହାତଟା ଛଡ଼ାଇ ନେଲା । ମୁହଁଟି ଖସିପଡ଼ିଲା । ସୁଷି ପଳାଇଯିବାକୁ ଉଦ୍ୟତ ହେଲା ।

ହରଶଙ୍କର କଠୋର ସ୍ୱରରେ ଡାକିଲେ—ସୁଷି !

ସେ ତୀବ୍ର କଣ୍ଠସ୍ୱର ଶୁଣି ସୁଷି ଆଉ ପଳାଇଯାଇ ପାରିଲା ନାହିଁ । ଥକ୍ କରି ଛିଡ଼ାହୋଇ ରହିଲା । ହରଶଙ୍କରଙ୍କ ସ୍ୱଭାବ କୋମଳ କଣ୍ଠସ୍ୱର ପୁଣି ଏତେ କଠୋର ହୋଇପାରେ ତାହା ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲା । ଅକସ୍ମାତ୍ ବଜ୍ରଶବ୍ଦ ଶୁଣି ଲୋକ ଯେପରି ଚକିତ ସ୍ତମ୍ଭିତ ହୋଇଯାଏ, ସୁଷିର ଠିକ୍ ସେହି ଅବସ୍ଥା ହେଲା ।

ହରଶଙ୍କର ଡାକିଲେ—ସୁଷମା !

ସୁଷି ଶଙ୍କିତ ନେତ୍ରର ଭୂମିଲଗ୍ନ ଦୃଷ୍ଟି ଧୀରେ ଧୀରେ ଉତ୍ତୋଳନ କରି ହରଶଙ୍କରଙ୍କ ଆଡ଼କୁ ଅନାଇବାକୁ ଚେଷ୍ଟା କଲା । କିନ୍ତୁ ଅନେଇ ପାରିଲା ନାହିଁ । ହରଶଙ୍କର କହିଲେ—ଅଚ୍ଛା ସୁଷମା, ମୋର କି ଅପରାଧ ଯେ, ତମେ ଆଜି ଏତେ ବଡ଼ ଅପମାନ ଦେବାକୁ ଚାଲ ?

ସୁଷ୍ମି ନମ୍ର ସ୍ୱରରେ ଜବାବ୍ ଦେଲା ଯେ, ସେ କଦାପି ଅପମାନ ଦେବାକୁ ଯାଇନାହିଁ ।

ହରଶଙ୍କର ପୂର୍ବପର ଉତ୍ତେଜିତ କଣ୍ଠରେ କହିଲେ—ଯାଉ ଅପମାନ କାହାକୁ କହନ୍ତି ଶୁଣେ ? ଗୋଟାଏ ସାମାନ୍ୟ ସ୍ନେହୋପହାର ଦେବାର କି ମୋର ଅଧିକାର ନାହିଁ ? ମୁଁ କି ତମ ପାଖରେ ଏତେ ଘୃଣ୍ୟ ?

ସୁଷମା ଉତ୍ତର ଦେଲା—ମୁଁ କଣ ତା କହୁଛି ?

ହରଶଙ୍କର କହିଲେ—ମୁହଁରେ କହି ନାହିଁ ସତ, କିନ୍ତୁ— ଏତିକି କହି ସେ ଗୋଟାଏ ମର୍ମସ୍ପର୍ଶୀ ଗର ନିଶ୍ୱାସ ତ୍ୟାଗ କଲେ । ସୁଷ୍ମି ନୀରବ ହୋଇ ଛିଡ଼ାହୋଇ ରହିଲା ।

ହରଶଙ୍କର ପୁନଶ୍ଚ କହିଲେ—ଲୋକର ଏତେଦୂର ଗର୍ବିତା ହେବା ଶୋଭା ପାଏ ନାହିଁ, ସୁଷମା !

କଥାଟା ସୁଷ୍ମିର ମର୍ମରେ ତୀକ୍ଷ୍ଣଧାର ଖଡ୍ଗଫଳକ ପରି ବିଦ୍ଧ ହୋଇଗଲା । ଅବନତ ନେତ୍ରପ୍ରାନ୍ତରୁ ଅବାରିତ ଅଶ୍ରୁଧାର ଝର ଝର ହୋଇ ଝରିବାକୁ ଲାଗିଲା । ହରଶଙ୍କର ତାହା ଲକ୍ଷ୍ୟ କଲେ । ଅଙ୍ଗାରେ-ସାରରେ କି ରୂଢ଼କଥାଟା ତାଙ୍କ ତୁଣ୍ଡରୁ ବାହାରି ପଡ଼ିଛି—ତାହା ଭାବି ତାଙ୍କର ଅନ୍ତସ୍ଥଳ ଅନୁତାପରେ ପୂର୍ଣ୍ଣ ହୋଇଉଠିଲା । ଅଧିକାର ପ୍ରବଳ ଦନାଗ୍ନି ପରି ହୃଦୟର ପ୍ରତ୍ୟେକ ଅନ୍ଧସନ୍ଧରେ ବ୍ୟାପିଗଲା । ସେ ଆଉ ଧୀର ସ୍ଥିର ହୋଇ ରହି ପାରିଲେ ନାହିଁ । ବଦନାକୁଳା କୁମାରୀର କରୁଣମୂର୍ତ୍ତିଟି ପାଖକୁ ଯାଇ ସେ କୋମଳ କଣ୍ଠରେ କହିଲେ—ସୁଷ୍ମି, ରାଗିଲ ? କଥା କହୁଁ କହୁଁ ଟିକିଏ କର୍କଶ ହୋଇପଡ଼ିଛି । ସେଟା ମୋର ବଡ଼ ଅନ୍ୟାୟ ହୋଇଛି । ତେବେ ତମ ଛଡ଼ା ମୋର ଅତ୍ୟାଗ୍ରହ ଆଉ କିଏ ସହ୍ୟ କରିବ, କହିଲ ସୁଷ୍ମି ? ଛି, କାନ୍ଦ ନାହିଁ, ମୋ ରାଣ ।

ଏହା କହି ସେ ଲବଣ୍ୟମୟୀର ଚିବୁକଟି ଧରି ଗୋଟାଏ ଅଭାବନୀୟ କାଣ୍ଡ କରି ପକାଇବାକୁ ଯାଉଥିଲେ, ସୁଷି ପଛକୁ ଘୁଞ୍ଚିଗଲେ । ହରିଶଙ୍କର ମଧ ନିଜକୁ ନିୟନ୍ତ୍ରିତ କରିନେଲେ । ସୁବର୍ଣ୍ଣ ଅଙ୍ଗୁରୀୟଟା ସେପର୍ଯ୍ୟନ୍ତ ଅବହେଳିତ ହୋଇ ଭୂଇଁରେ ପଡ଼ି ରହିଥିଲା । ହରିଶଙ୍କର ତାହା ତଳୁ ଉଠାଇନେଇ ଅନ୍ୟାନ୍ୟ ଅଳଙ୍କାର ସହିତ ସେହି ପାର୍ସେଲ ବାକ୍ସଟାରେ ରଖିଲେ । ତା ପରେ ଟିକିଏ କ୍ଷୁବ୍ଧ କଣ୍ଠରେ କହିଲେ—ଏଗୁଡ଼ାକ ଏଠି ରହିଲା ସୁଷି, ମୁଁ ଯାଉଛି । ଏହା କହି ସେ ଉଠି ବାହାରିଯିବାକୁ ଉଦ୍ୟତ ହେଲେ । ସୁଷି ବିଦ୍ୟୁତ ବେଗରେ ଛୁଟିଆସି ପାଦଦ୍ୱୟ ଜଡ଼ି ଧରିଲା । ହରିଶଙ୍କର ସ୍ତମ୍ଭିତ ହୋଇ କହିଲେ—ଏ କଣ, ସୁଷି, ଏ କଣ ?

ସୁଷି କହିଲା—ଯିବାଟା କିନ୍ତୁ ଅନ୍ୟାୟ ହେବ କହିଦେଉଛି ।

ହରିଶଙ୍କର ଆପଣାର ପାଦଦୁଇଟି ମୁକ୍ତ କରିନେଇ ସ୍ୱସ୍ଥାନରେ ବସି ପଡ଼ିଲେ ।

ସୁଷି କହିଲା—ମୋ ଉପରେ ବିରକ୍ତ ହେଲେ ?

ହରିଶଙ୍କର ତାର ଭାଷାଗତ ଭୁଲ ସଂଶୋଧନ କରି ଉତ୍ତର ଦେଲେ—"ହେଲେ" ନୁହେଁ "ହେଲ" କହିବାକୁ ହେବ ।

ସୁଷି କହିଲା—ହେଉ ତାହାହିଁ ହେଲା । କିନ୍ତୁ ମୋର ଦୋଷ କଣ ?

ହରିଶଙ୍କର ଜବାବ ଦେଲେ—ଦୋଷ ଏଇ ଯେ ଅନ୍ତରର ଉଚ୍ଛ୍ୱସିତ ସ୍ନେହର ମୂଲ୍ୟ ବୁଝିଲ ନାହିଁ, ସୁଷି ।

ସୁଷି ନମ୍ରକଣ୍ଠରେ ପଚାରିଲା—ମୋ ପ୍ରତି ଯେ ତମର ସ୍ନେହ ନାହିଁ ମୁଁ କଣ ତା କହିଲି ।

ହରିଶଙ୍କର—ତେବେ ବାଧା ଦେଲ ଯେ ।

ସୁପ୍ତି—ବାପା ଦେବାଟା କଦାପି ମୋର ଅନ୍ୟାୟ ହୋଇନାହିଁ । ଏହା କହି ସେ ପଚାରିଲା—ସେଟା କି ବାକ୍ସ ? ଦେଖେଁ ।

ହରିଶଙ୍କର ବାକ୍ସଟା ତାର ହାତକୁ ବଢ଼ାଇ ଦେଇ ଅନ୍ୟ ପଟକୁ ମୁହଁକରି ରହିଲେ । ସୁପ୍ତି ତାହା ଖୋଲି ଦେଖିବାକୁ ଆରମ୍ଭ କଲା । ଓଃ, ଏତେ ଗୁଡ଼ାଏ ସୁନାର ଜିନିଷ ! ଏସବୁ କଣ ତାହାରି ପାଇଁ କିଣା ହୋଇ ଆସିଛି । ଏହାର ଦାମ କେତେ ଟଙ୍କା ହୋଇ ନ ଥିବ ! ହରିଶଙ୍କର ଏ ମଧ୍ୟରେ ଏ କି କାଣ୍ଡ କରିବସିଛନ୍ତି ! ଏହା ଭାବି ସେ ବିସ୍ମୟରେ ଅଭିଭୂତ ହୋଇ ପଡ଼ିଲା । ତାର ଚକ୍ଷୁଦ୍ୱୟ ବିସ୍ଫାରିତ ହୋଇଉଠିଲା । ସେଦିନ ହରିଶଙ୍କର ତାର ଶୂନ୍ୟହସ୍ତ ଦେଖି ଯାହା କହିଥିଲେ ତାହା ତାର ମନେ ପଡ଼ିଲା । ସେ ମଧୁର ଉଚ୍ଛ୍ୱାସପୂର୍ଣ୍ଣ କଣ୍ଠରେ କହିଲା—ଏତେ କଥା କାହିଁକି କରିବାକୁ ଗଲ ଶୁଣେ ? ତା ଆଗରୁ ମୋତେ ଟିକେ ପଚାରିବା କି ଉଚିତ ନ ଥିଲା ?

ହରିଶଙ୍କର ଉତ୍ତର ଦେଲେ—ତା ପଚାରିବାରେ ଅଣୁମାତ୍ର ଆବଶ୍ୟକତା ସେ ବୋଧ କରି ନ ଥିଲେ । ଯେଉଁ ବିଷୟଟା ପୁରାପୁରି ତାଙ୍କର ଅଧିକାରଭୁକ୍ତ ସେଥିରେ ଅନ୍ୟର ଅନଧିକାର ହସ୍ତକ୍ଷେପକୁ ସେ ପସନ୍ଦ କରନ୍ତି ନାହିଁ । ଏହା କହି ସେ ପଚାରିଲେ—ସୁପ୍ତି, ତା ହେଲେ ମୁଁ ଯାହା ଦେବି ତାହା କି ତମେ ଗ୍ରହଣ କରିବ ନାହିଁ ?

ସୁପ୍ତି କହିଲା—ନିଶ୍ଚୟ କରିବି ।

ହରିଶଙ୍କର—କାହିଁ ଆଜି ତ କଲ ନାହିଁ । ମୁଁ ଯେ କେତେ ଖୋଜିକରି ଏ ସବୁ ଆଣିଥିଲି ତାହା ତମେ ଜାଣ କି ?

ସୁପ୍ତି କହିଲା—ହଁ ଜାଣେ, ତେବେ ଏତେ ବ୍ୟସ୍ତ କାହିଁକି ? ପରେ ନିଅଲେ ହେବ ନାହିଁ ?

ହରଶଙ୍କର ଏହା ଶୁଣି ହସିଲେ—ଓହୋ, ତା ପାଇଁ ଗୋଟାଏ ଜ୍ୟୋତିଷ ଡକିବାକୁ ପଡ଼ିବ ପରା ! ଏହା କହି ସେ ଆହୁରି ହସିବାକୁ ଲାଗିଲେ । ଅବଶେଷରେ ଗାତ୍ରୋତ୍ଥାନ କରି କହିଲେ—ତାହାହେଲେ ଅପାତତଃ ଏ ଗୁଡ଼ାକ ଥାଉ, ମୁଁ ଆସେଁ ।

ସୁକ୍ତି କହିଲା—ଅଚ୍ଛା ଥାଉ ।

## ନବମ ପରିଚ୍ଛେଦ

ଦୁଇଦିନ ପରେ ହରଶଙ୍କର ଆସି କହିଲେ—ସୁକ୍ତି, ଆଜି ଯିବାକୁ ହେବ, ଶୀଘ୍ର ଶୀଘ୍ର ଆୟୋଜନ କର ।

ସୁକ୍ତି ଆଶ୍ଚର୍ଯ୍ୟ ହୋଇ ପଚାରିଲା—କୁଆଡ଼େ ?

ହରଶଙ୍କର ଉତ୍ତର ଦେଲେ—ଘରକୁ ।

ସୁକ୍ତି—ତମ ଘରକୁ ?

ହରଶଙ୍କର ଚତୁରତା ସହକାରେ ସେହି କଥାର ପୁନରାବୃତ୍ତି କରି ଜବାବ ଦେଲେ—ହଁ, ତମ ଘରକୁ ।

ସୁକ୍ତି—ଆଉ ଏଠି ?

ହରଶଙ୍କର—ଏଠି ଯାହାହେଉ ଗୋଟାଏ ବ୍ୟବସ୍ଥା କରାଯିବ । ସେଥିପାଇଁ ତମର ଚିନ୍ତିତ ହେବାର କାରଣ ନାହିଁ ।

କିନ୍ତୁ ସୁକ୍ତି ଏହା ଶୁଣି ବାସ୍ତବିକ ଚିନ୍ତିତ ହୋଇ ପଡ଼ିଲା । ହରଶଙ୍କର ତା ଲକ୍ଷ୍ୟ କରି କହିଲେ—ଏତେ କଣ ଭାବୁଛ ?

ସୁକ୍ତି ଜବାବ ଦେଲା—ମୋର ଯିବାଟା କ ଉଚିତ ହେବ ?

ହରଶଙ୍କର ଟିକିଏ ବିରକ୍ତ ହୋଇ କହିଲେ—ଅଲବତ୍ତ ହେବ । ଏ ସବୁ ବିଷୟ ନେଇ ତମର ମୁଣ୍ଡ ଘୁରାଇବାର ଦରକାର କଣ ?

ଏହାପରେ ହୁଷିର ଆଉ କୌଣସି ଆପତ୍ତି କରିବାକୁ ସାହସ ହେଲ ନାହିଁ । ସେ ମୌନ ହୋଇ ରହିଲା ।

ହରିଶଙ୍କର ସେହିଦନ ହୁଷିକୁ ସଙ୍ଗରେ ନେଇ ଗୃହାଭିମୁଖରେ ଯାତ୍ରାକଲେ । ତା ପୂର୍ବରୁ ସେ ଘରକୁ କୌଣସି ସମ୍ବାଦ ଦେଇ ନ ଥିଲେ । ହରିଶଙ୍କରଙ୍କ ଅନ୍ୟାନ୍ୟ କାର୍ଯ୍ୟ ପରି ଏହି ଗୃହାଗମନ ବ୍ୟାପାରଟା ମଧ୍ୟ ଆକସ୍ମିକ । ଦିନକ ମଧ୍ୟରେ ପ୍ରସ୍ତାବ, ପୁଣି ସେହି ଦିନକ ମଧ୍ୟରେ ତାହାର କାର୍ଯ୍ୟରେ ପରିଣତ । ଘରକୁ ସମ୍ବାଦ ଦେବାକୁ ଆଉ ସମୟ କାହିଁ ? କୃଷ୍ଣମାଧବଙ୍କ ନିକଟକୁ ତାଙ୍କର ଶେଷ ପତ୍ର ଥିଲା ସେହି ବିବାହ ସମ୍ପର୍କୀୟ ପ୍ରସ୍ତାବ ନେଇ । ପତ୍ରରେ ସେ ଯାହା ଲେଖିଥିଲେ ସେଥିରେ ସମସ୍ତଙ୍କର ମନ ଫିକା ପଡ଼ିଯାଇଥିଲା । ହରିଶଙ୍କର ସେଥିରେ ଅତି ସ୍ପଷ୍ଟାକ୍ଷରରେ ନାସ୍ତିବାଣୀ ଶୁଣାଇ ଦେଇ-ଥିଲେ । ମା ସ୍ୱର୍ଣ୍ଣପ୍ରିୟାଙ୍କ ମନରେ ଦାରୁଣ କଷ୍ଟ ହୋଇଥିଲା । ଯୌତୁକ ଗ୍ରହଣରେ ଯଦିବା ଆପତ୍ତି ହେଲା, ସେଥିପାଇଁ ଏକା-ବେଳକେ ବିବାହ କରିବାକୁ ମନା କରିଦେବାଟା କି ସଙ୍ଗତ ? ଏହି ପ୍ରସଙ୍ଗ ନେଇ ସ୍ୱର୍ଣ୍ଣପ୍ରିୟା ଓ କୃଷ୍ଣମାଧବଙ୍କ ମଧ୍ୟରେ ଅନେକ ଆଲୋଚନା ହୋଇଥିଲା । କୃଷ୍ଣମାଧବ କହିଥିଲେ—ଯେତେକ ସୃଷ୍ଟି ଛଡ଼ା କଥା ସବୁ ହରିର ! ପିଲାଟାର ଯେ କି ଢଙ୍ଗ ତା ମୁଁ ବୁଝିପାରେ ନାହିଁ, ନାନି । ଏତେ ଏମ୍. ଏ. ପଢ଼ି ଶେଷରେ ଏହି ଫଳ ! ଧ୍ୟାଁକୁହିଁ କହନ୍ତି ଜ୍ଞାନପାଗଳ ହେବା । ସ୍ୱର୍ଣ୍ଣପ୍ରିୟା ମଧ୍ୟ କଳ୍ପନା କରି ନ ଥିଲେ ଯେ ପୁଅ ତାଙ୍କ ନିକଟରେ ବିବାହ କରିବାକୁ ପ୍ରତିଶ୍ରୁତି ଦେଇ ଶେଷରେ ଏପରି ହତାଶ କରିବ । ହରିଶଙ୍କର କାହିଁକି ଯେ ପୁଣି ମତ ପରିବର୍ତ୍ତନ କଲେ ତାର କୌଣସି କାରଣ ସେ ଖୋଜି ପାଉ ନ ଥିଲେ । ସ୍ୱର୍ଣ୍ଣପ୍ରିୟାଙ୍କ ପ୍ରାଣରେ ଗଭୀର ଅବସାଦ ଦେଖାଦେଇଥିଲା ।

ସେଦିନ ସନ୍ଧ୍ୟାହେବାକୁ ବେଶି ବିଲମ୍ବ ନାହିଁ । ସୁଧାପ୍ରିୟା ପ୍ରଦୋଷ ସ୍ନାନ ଅନ୍ୟ ଦିନ ଅପେକ୍ଷା ଟିକିଏ ଆଗରୁ ସାରିଦେଇ ବସିଛନ୍ତି । ଦିନସାରା କାହିଁକି କେଜାଣି ମନଟା ଅସ୍ଥିର ହେଉଛି । ଘର ଉପରେ କୁଆଟାଏ ବସି ବାରବାର କା-କା ହେଉଛି—ସତେ ଯେପରି କିଏ ଘରକୁ ଆସିବ ! କୃଷ୍ଣମାଧବ ଘରେ ନାହାନ୍ତି—କି ଗୋଟାଏ ଜମିଦାରୀ କାମରେ ସେ ଦୁଇଦିନ ହେଲା ଗ୍ରାମାନ୍ତରକୁ ଯାଇଛନ୍ତି । ସୁଧାପ୍ରିୟା ଅବଶାନ୍ତିରିବା କୁଆଟା ଉପରେ ବିରକ୍ତ ହୋଇ କହୁଛନ୍ତି—ବାରବାର ରାଉ ରାଉ ହୋଇ ରଖିଦେଲା ନାହିଁ ଏଟା—କିଏ ଏମିତ ଆସିବାକୁ ଯାଉଛି ଯେ ତୁ ଏତେ କା-କା ହୋଇ ମରୁଛୁ ? ଠିକ ଏହି ସମୟରେ ଦାଣ୍ଡରେ ଗୋଟାଏ ମୋଟର ଆସି ଉପସ୍ଥିତ ହେଲା,—ହର୍ଣ୍ଣ ବାଜିଲା । ସୁଧାପ୍ରିୟା ମନେ ମନେ କହିଲେ—କିଏ ଆସିଲା ନା କଣ ? କ୍ଷଣକ ମଧ୍ୟରେ ଚାକରବାକରମାନଙ୍କର ବ୍ୟସ୍ତ କଳରବ ଶୁଣାଗଲା । ଗୁରୁବାରି ମା ଧାଇଁ ଆସି କହିଲା—ମା, ମା, ବାବୁ ଆସିଲେଣି ।

ସୁଧାପ୍ରିୟା ଅସ୍ତବ୍ୟସ୍ତ ହୋଇ ଧାଇଁ ଆସିଲେ । ହରିଶଙ୍କର ମୋଟରରୁ ଓହ୍ଲାଇ ଗାଡ଼ିର ଦ୍ୱାର କପାଟ ଧରି ଛିଡ଼ା ହୋଇଛନ୍ତି । ଗୋଟିଏ ଲାବଣ୍ୟମୟୀ କିଶୋରୀମୂର୍ତ୍ତି ମୋଟରର କୁକ୍ଷିଭିତରୁ ଆସ୍ତେ ଆସ୍ତେ ବାହାରି ଆସୁଛି । ସଙ୍ଗରେ ଜଣେ ପ୍ରୌଢ଼ା ସ୍ତ୍ରୀଲୋକ—ସମ୍ଭବତଃ ପରିଚାରିକା । କିଶୋରୀ ନିରାଭରଣା—ମାତ୍ର ଯୌବନର ଦୀପ୍ତିରେ ଶରୀର ଜ୍ୟୋତିର୍ମୟ । ମନେ ହେଉଛି—ଯେପରି ଅଙ୍ଗପ୍ରତ୍ୟଙ୍ଗ ଆଭରଣ ଆବଶ୍ୟକ କରେ ନାହିଁ । ସ୍ୱଭାବ ସୌନ୍ଦର୍ଯ୍ୟହିଁ ତାର ଯଥେଷ୍ଟ ଆଭରଣ ।

ସୁଧାପ୍ରିୟା କିଛିକ୍ଷଣ ପାଇଁ ଅବାକ୍ ହୋଇ ଛିଡ଼ାହୋଇ ରହିଲେ । ନିତାନ୍ତ ଅପ୍ରତ୍ୟାଶିତ ଘଟଣାର ସମ୍ମୁଖୀନ ହେଲେ ମନୁଷ୍ୟ

ପ୍ରାୟ ହତବୁଦ୍ଧି ହୋଇଯାଏ । ତାଙ୍କର ତାହାହିଁ ହେଲା । ହରଶଙ୍କର ଅଗ୍ରି ପାଦମୂଳରେ ପ୍ରଣାମ କଲେ । ମା ତାଙ୍କୁ ତଳୁ ଉଠାଇ ହିରେ-ଲଟ୍ଟୁଧୂଳ ଝାଡ଼ିଦେବାକୁ ବ ଭୁଲିଗଲେ । ହରଶଙ୍କର ଏହାର କାରଣ ବୁଝିପାରିଲେ । ହସ ହସ ମୁଖରେ କହିଲେ—ମା, ଅଜ ଅବାକ୍ ହୋଇ ଯାଇଛୁ ପରା ? ସଧାପ୍ରିୟାଙ୍କର ଏତେବେଳେ ଚେତନା ହେଲା । ସେ କହିଲେ—"ହବାର ତ କଥା ବାବା; ଚିଠି ନାହିଁ, ପତ୍ର ନାହିଁ, କୌଣସି ଖବର ନାହିଁ । ଏମିତ ଭୋଳାମହେଶ କିଏ ଅଛି କହିଲୁ ଶୁଣେ ।" ଏହା କହି ସେ ଏତେବେଳକେ ମୁଣ୍ଡର ଧୂଳି ଝାଡ଼ି ଦେବାକୁ ଗଲେ । ଏହି ସମୟରେ ସୁଷି ଅସି ତାଙ୍କ ପାଦତଳେ ପ୍ରଣାମ କଲା । ହରିଶଙ୍କର ଟିକିଏ ଘୁଞ୍ଚିଯାଇ ଠିଆ ହେଲେ । ମା ସୁଷିର ହାତଧରି ତଳୁ ଉଠାଇଲେ । ଅପରିଚିତାର ପରିଚୟ ପାଇବା ପାଇଁ ମନରେ ଗଭୀର ଉତ୍କଣ୍ଠା ଜାତ ହେଉଥିଲେ ସୁଦ୍ଧା, ସେ କୌତୂହଳ ନିବୃତ୍ତିପାଇଁ ସେଠା ଉପଯୁକ୍ତ ସମୟ ନୁହେଁ ବୋଲି ଭାବି କେବଳ ପଚାରିଲେ—ତୋ ନାଁ କଣ ମା ?

ସୁଷି ଉତ୍ତର ଦେଲା—ମୋ ନାଁ ସୁଷମା ।

ସଧାପ୍ରିୟା କହିଲେ—ସୁଷମା ! ବେଶ୍ ନାଁଟି ତ । ହଉ ମା, ଘର ଭିତରକୁ ଚାଲ । ଏହା କହି ସେ ସୁଷମାର ହାତ ଧରି ଘର ଭିତରକୁ ନେଇଗଲେ ।

ପ୍ରକାଣ୍ଡ ଘରଟା ଦେଖି ସୁଷମାର ମନରେ ଟିକିଏ ଯେମିତ ଭୀତ ସଞ୍ଚାର ହେଲା । ଏତେ ବଡ଼ ଘର ସେ ଜନ୍ମରୁ କେବେ ଦେଖି ନ ଥିଲା । ଗଳ୍ପ-କାହାଣୀରେ ଅବଶ୍ୟ ସେ ରଜାଘରର କଥା ଶୁଣିଥିଲା,—ଅପରିମିତ ଧନଦୌଲତର ବିଷୟ ଜାଣିଥିଲା । ମାତ୍ର ଦୁଇ ଆଖିରେ କେବେ ସେ ତାହା ଦେଖି ନ ଥିଲା । ପଲ୍ଲୀଗ୍ରାମର ନିରାଡ଼ମ୍ବର

ପର୍ଣ୍ଣକୁଟୀରରେ ସେ ଅଜ୍ଞାତ ବନଲତା । ସୌଭାଗ୍ୟର ଗର୍ବ ତାକୁ ସ୍ପର୍ଶ କରିବା ଦୂରେ ଥାଉ, ତାର ଛାୟା ପର୍ଯ୍ୟନ୍ତ ମାଡ଼ି ନ ଥିଲା । ସେହି ଦରିଦ୍ର ଭବନରେ ଅବଶ୍ୟ ସ୍ନେହମାୟାର ଅଭାବ ନ ଥିଲା, ବରଂ ତାହା ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । ମାତ୍ର ସେଥିରେ ନ ଥିଲା ବିଭବର ବାହ୍ୟିକ ଦୀପ୍ତି,—ଧନର ଏ ଭୀତିପ୍ରଦ ଆତ୍ମପ୍ରକାଶ । ସୁଷମା ଏ ସବୁ ଦେଖି ଟିକିଏ ଯେପରି କାତର ହୋଇପଡ଼ିଲା ।

ସନ୍ଧ୍ୟାକାଳୀନ ଘଣ୍ଟାଧ୍ୱନି ଗୃହସଂଲଗ୍ନ ଦେବାଳୟରେ ବାଜି ଉଠିଲା । ଶ୍ରଦ୍ଧାପ୍ରିୟା ସୁଷିକୁ ଗୋଟାଏ ପ୍ରଶସ୍ତ କକ୍ଷରେ ବସାଇଦେଇ ଆରତି ଦର୍ଶନ କରିବା ପାଇଁ ଚାଲିଗଲେ । ବାଉଳମାକୁ ହରଶଙ୍କର ସଙ୍ଗରେ ନେଇ ଆସିଥିଲେ । ସେ ଏଣେ ତେଣେ ବୁଲି ଏହି ଧନୀ-ଗୃହର ବିପୁଳ ବିଭବ ଦର୍ଶନ କରିବାରେ ଲାଗିଲା । ସୁଷି ନୀରବରେ ବସି କେତେ କଣ ଭାବିବାକୁ ଲାଗିଲା । ପିଲାଦିନରୁ ଆରମ୍ଭ କରି ଏପର୍ଯ୍ୟନ୍ତ ତା ଜୀବନରେ ଯେତେ ଯେତେ ଘଟଣା ଘଟିଯାଇଛି, ସବୁ ଗୋଟି ଗୋଟି ହୋଇ ତାର ମନେ ପଡ଼ିବାକୁ ଲାଗିଲା । ପିତାଙ୍କର ବିଷୟ ତାର ଅବଶ୍ୟ ବେଶି କିଛି ମନେ ନାହିଁ । ତାଙ୍କର ପରଲୋକ ହେବାବେଳକୁ ସେ ନିତାନ୍ତ ଅଳ୍ପବୟସ୍କା । କିନ୍ତୁ ମାଆର କଥା ତାର ସୁସ୍ପଷ୍ଟଭାବରେ ମନେ ପଡ଼ିବାକୁ ଲାଗିଲା । ସୌଦାମିନୀର ସ୍ନେହମୟୀ ମୂର୍ତ୍ତି ତା ଆଖି ଆଗରେ ନାଚି ବୁଲିଲା । ମାଆର ମଧୁରଗଳା, ମଧୁରତର 'ସୁଷି' ସମ୍ବୋଧନ ତା କାନରେ ଯେପରି ଅନବରତ ବାଜିବାକୁ ଲାଗିଲା । ସୌଦାମିନୀ ଯେତେବେଳେ ଯେଉଁ କାର୍ଯ୍ୟ କରନ୍ତି ତାହା ଯେପରି ଗୋଟି ଗୋଟି ହୋଇ ଦିଶିଗଲା । ଏହି ସନ୍ଧ୍ୟା ସମୟରେ ସେ କିପରି ବୃନ୍ଦାବତୀମୂଳରେ ବସି ଘଣ୍ଟା ଘଣ୍ଟା ଧରି ତୁଳସୀ ଆରାଧନା କରନ୍ତି ସେ ଚିତ୍ର ତା ଚକ୍ଷୁ ସମକ୍ଷରେ ଉଦ୍ଭାସିତ ହୋଇ ଉଠିଲା । ତା ପରେ ସେହି ଭୀଷଣ ବନ୍ୟା, ସେହି ରୋଗଶଯ୍ୟାର

କରୁଣ ଦୃଶ୍ୟ, ହରଶଙ୍କରଙ୍କ ଆବିର୍ଭାବ, ତାଙ୍କ ସହିତ ପରିଚୟ, ବନ୍ଧୁତ୍ୱ, ଗୃହତ୍ୟାଗ ଏବଂ ଅବଶେଷରେ ଏହି ଧନୀ ସଂସାରରେ ଆଶ୍ରୟ —ଏ ସମସ୍ତ ଘଟଣା ସୁଷିର ମନୋମୁକୁରରେ ମୁହୂର୍ତ୍ତିକ ମଧ୍ୟରେ ପ୍ରତିଫଳିତ ହୋଇଗଲା । ଓହୋ, ତାର ଜୀବନର ସ୍ରୋତ ତାକୁ ଦୁରନ୍ତ ବେଗରେ ଉଠାଇ ନେଇ କୁଆଡ଼େ ଗ୍ଲଲିଛି ! ସାମାନ୍ୟ ତୃଣ ଖଣ୍ଡ ପରି ସେ ଭାସି ଭାସି କୁଆଡ଼େ ଯାଉଛି । ତା ଭାବି ଭାବି ସୁଷି ଶ୍ରାନ୍ତ, ଅବସନ୍ନ ହୋଇପଡ଼ିଲା । ତାର ଅଙ୍କାଉସାରରେ ଦୁଇବନ୍ଦୁ ଲୋତକ ଚକ୍ଷୁପ୍ରାନ୍ତରୁ ଝରିପଡ଼ିଲା । ମନ୍ଦିରର ଘଣ୍ଟାଧ୍ୱନି ବନ୍ଦ ହୋଇଗଲା । ସୁଷିର ଧ୍ୟାନ ମଧ୍ୟ ଭାଙ୍ଗିଗଲା । ଉଦାସ ନୟନରେ ସେ ବାହାରର ନିବିଡ଼ ଅନ୍ଧକାର ଆଡ଼କୁ ଗ୍ଲହିଁ ରହିଲା ।

---

## ଦଶମ ପରିଚ୍ଛେଦ

ସୁଷିର ଇତିହାସ ଜାଣିବା ପାଇଁ ମା ରାଧାପ୍ରିୟାଙ୍କ ମନରେ କୌତୂହଳ ପ୍ରବଳରୁ ପ୍ରବଳତର ହେବାକୁ ଲାଗିଲା । ବାଳକାଟି କିଏ, କାହାର ସନ୍ତାନ, କି ଜାତି, ହରଶଙ୍କରଙ୍କର ତା ସହିତ କିପରି ପରିଚୟ ହେଲା—ଏହି ସବୁ ବିଷୟ ଜାଣିବାପାଇଁ ତାଙ୍କର ଅସୀମ ଆଗ୍ରହ ଜାତ ହେଲା । ମାତ୍ର କାହାକୁ ପଗ୍ଲରି ସେ ଏ ସବୁ ହାଲ ବୁଝିବେ ? ରାଧାପ୍ରିୟା ଅନେକ ଭାବଚିନ୍ତି ସ୍ଥିର କଲେ ହରଶଙ୍କର ବା ସୁଷମାଠାରୁ ଏ ସବୁ ତଥ୍ୟ ପ୍ରତ୍ୟକ୍ଷରେ ସଂଗ୍ରହ କରିବା ଅପେକ୍ଷା ବାଉଲ୍‌ମାଠାରୁ ସମସ୍ତ କଥା ଜାଣିବା ସମୀଚୀନ ହେବ । ତେଣୁ ସେ ସମୟ ଉତ୍ତି ନିରୋଳାରେ ତାହାର୍ଠାରୁ ସୁଷିର ଇତିହାସ ସଂଗ୍ରହ କରିବାରେ ପ୍ରବୃତ୍ତ ହେଲେ । ହଠାତ୍ ସେ ସୁଷମାର କଥା ନ ପଗ୍ଲରି ବାଉଲ୍‌ମାଆର ନିଜର କଥା ଆରମ୍ଭ କରିଦେଲେ । ବାଉଲ୍‌ମାଆର

ସଂସାରରେ ଆଉ କିଏ ଅଛି, ସେ କଥାଚି ଚଳେ, କେତେବେଦନାରୁ ସେ ଏପି ସୁଷମା ପାଖରେ ରହୁଛି ଇତ୍ୟାଦି ବିଷୟରୁ ସେ କ୍ରମେ କ୍ରମେ ସୁଷମା ସମ୍ବନ୍ଧୀୟ ସମସ୍ତ ବିବରଣ ଜାଣିବାକୁ ଚେଷ୍ଟା କଲେ । ସଧାପ୍ରିୟା ସୁଷମାର ସ୍ୱଭାବ ଚରିତ୍ର ଗୁଣଗ୍ରାମ କଥା ବିଶେଷଭାବରେ ପଚାରି ବୁଝିନେଲେ । ତାହାର ସହିତ ତାର ବିବାହ ପ୍ରସଙ୍ଗ କେବେ ଉଠିଛି କି ନା ତା ମଧ୍ୟ ପଚାରିବାକୁ ଛାଡ଼ିଲେ ନାହିଁ । ବାଇଲମା କହିଲା—ତା ତ ମୁଁ କିଛି ଶୁଣି ନାହିଁ ମା । ସେମିତି କିଛି କଥା ଉଠିଥିଲେ ତା କଣ ଆଉ ମୋତେ ଅଛପା ଥାନ୍ତା ? କିଏ ବା ସେ ସବୁ ଯୋଗାଡ଼ କରିବ ? ବାପ ତ ନାହିଁ,—ବାପ ବଦଳରେ ଆଉ ଯେ ସେପରି କେହି ମୁରବି ଅଛି ତା ବି ନୁହେଁ,—ଘରକୁ ମା ଝିଅ ବୋଲି ଦୁଇପ୍ରାଣୀ,—ମାଅଟି ଯାହା କରିବ ସେୟା । ହେଲେ, ମାଇକିନା ଲୋକ ! ତାର ଶକ୍ତି କେତେ ? ମାଇପି ଲୋକଙ୍କ ଯୋଗେ କଣ ଏ ସବୁ ଗହନ କଥା ହୋଇପାରେ ମା ? ମର୍ଦ୍ଦଲୋକେ ପାଞ୍ଚଆଡ଼େ ବୁଲି, ପାଞ୍ଚଜାଗା ଆଖି ପେରେଇ, ଦେଖି ଗୁହିଁ ସିନା ଏସବୁ କଥା ନେଇ ଆଣି ଥୁଅନ୍ତି ! ଆଉ ସେମିତି ଯୋଗାଡ଼ଯନ୍ତ୍ର କରିବାକୁ କିଏ ଅଛି ? ଯାହା ବି ମାଅଟି ଥିଲା,—ସେ କଣ ବଞ୍ଚିଲା ? ଦଇବ ତ ତାକୁ ଅଚାନ୍ତିତରେ ଛଅମାଶପରେ ଏପି ସଂସାରରୁ ଟେକି ମାରିନେଲା । ଆଉ ରହିଲା କିଏ ? ତେବେ ଏହି କଣ କି, ଝିଅଟିର କପାଳ ଗୁଣକୁ ବାବୁ ଯାଇ ଜୁଟିଲେ,—ଅରକ୍ଷିତକୁ ସାହା ହେଲେ । ଖୁବ୍ କରୁଛନ୍ତି ମା, ବାବୁ ଖୁବ୍ କରିଛନ୍ତି । ଏମିତି କେତେଟା ଲୋକ କରନ୍ତି ? ଏ କାଳରେ ତମେ ମରି ଦରିଆରେ ଭାସି ଯାଉଥିଲେ ଲୋକେ ଆଡ଼ନୟନରେ ବି ଗୁହିଁବେ ନାହିଁ ! ମରି ମାଟି ହୋଇ ଯାଉଥିଲେ ବି "ଆହା" ବୋଲି କହିବେ ନାହିଁ ! ଏକାଳକୁ ସେ ଯା କରୁଛନ୍ତି ତା କମ୍ କଥା ନୁହେ ମା । ଖାଲି ସଉଦାଅଧାର କିସ୍ତିରେ ତ ଶହଶହ ଟଙ୍କା ଟେପିଲି ଦେଉଚନ୍ତି,

ଅଉ କଥା ତେଣିକି ଥାଉ । କୋଉଁ ଅପଣାର ଲୋକଟା ଏତେ କରନ୍ତା କୁହନ୍ତ ? ମୁଁ କହେଁ—ବାବୁ ତ ମଣିଷ ନୁହନ୍ତି—ଦେବତା । ସେ ଦିନ ମୋ ଛିଣ୍ଡା ଲୁଗା ଖଣ୍ଡିକ ଉପରେ ଆଖି ପଡ଼ିଗଲା । ବାବୁ ଦେଖିପକାଇ କହିଲେ "ତୋର କଣ ଲୁଗାପଟା ନାହିଁ କିଲୋ ବାଉଳୀମା ? ମୋତେ କହୁ ନାହୁଁ ?" ମୋତେତ ସାତ ପରବତ ଲାଜ ମାଡ଼ିଲା ମା । ମୁଁ ଯାଏଁ କୁଆଡ଼େ ? ତା ଆରଦିନ ଦେଖିଲି ବେଳକୁ ବାବୁ ଗୋଟାଏ ଦଶହାତୀ କସ୍ତାଲୁଗା ମୋ ଲାଗି ପଠାଇ ଦେଇଚନ୍ତି । ଏଇ ପରା ମା, ଏଇ ପିନ୍ଧିଚି ! ଏମିତ ଦୟା ତାଙ୍କର ! ସେ ପରା ଲୋକ ନ ଥିଲେ ଏତେ ଗାଁ ଗଣ୍ଡା ଯେ ନଈବଢ଼ିରେ ଭାସିଗଲା, ଲୋକେ ଯେ ଏତେ ହାନିଙ୍କ୍ଷା କଦର୍ଥିନ ହେଲେ, ସେ ଦାଉ ସମ୍ଭାଳି ଥାନ୍ତା କିଏ ? ଦିନ ନାହିଁ, ରାତ ନାହିଁ, ବଣ ନାହିଁ, ଜଙ୍ଗଲ ନାହିଁ, ଗୁରୁଆଡ଼େ ବୁଲି, ଦେଖି, ଲୋକଙ୍କ ତୁଣ୍ଡରେ ଅହାର ଦେଇ ପିଣ୍ଡରେ ପ୍ରାଣ ରଖିଦେଲେ ପରା ! ସେ କଥାଗୁଡ଼ାକ କେତେ କହିବି ମା, ତା କିଏ ନ ଜାଣେ ?

ବାଉଳୀମା ଅନର୍ଗଳ ଏହିପରି ବକିଯିବାକୁ ଲାଗିଲା । ରାଧାପ୍ରିୟାଙ୍କ ହୃଦୟ ଗର୍ବରେ ଫୁଲି ଉଠିଲା । କିନ୍ତୁ ସେ ଭାବ ସେ ବାହାରକୁ ପ୍ରକାଶ ନ କରି ପଚାରିଲେ —"ଅଚ୍ଛା ବାଉଳୀମା, ହର ଯେ ଏ ଅରକ୍ଷିତ ପିଲାଟିର ଏମିତି ସାହା ଭରସା ହେଲା,—ଅପଣାର ହୋଇ ଏତେ କଥା କଲା, ଏଥିରେ କେହି କିଛି ଦୁର୍ନାମ କରିନାହାନ୍ତି ତ ?" ବାଉଳୀମା କହିଲା—କି, ଦୁର୍ନାମ କାହିଁକି କରିବେ ? ବାବୁ କି ଖରାପ କଥାଟା କଲେ କି ଏମିତ ? ଦୁଃଖୀରଙ୍କିଙ୍କ ସାହାଭରସା ହେବା କଣ ଏଡ଼େ ହୀନ କାମ ? ତେବେ, ବୁଝିଲ ନାହିଁ ମା, ଏ କଳିକାଳରେ କିଏ କାହା ତୁଣ୍ଡରେ ହାତ ଦେବ କୁହନ୍ତ ? ଏ ଯୁଗରେ କୁଅଟା ଉଡ଼ିଗଲେ, କଣନା କୁଆ ଉଡ଼ିଗଲା । ହେଲେ ସେ ସବୁ କଥାରେ

କଣ ଅଛି ? ସେମିତ ଯେ କହୁଥିବ, କହୁଥାଉ । ତା କ୍ରୋଧରେ ସାଇଁଣ ପଡ଼ୁ । ମୁଁ ତ କହୁଛି ମା, ସେମିତ ଢଙ୍ଗ ମୁଁ ବାବୁଙ୍କର କେବେ ଦେଖି ନାହିଁ । ମିଛ କଥାଟା କାହିଁକି କହିବ, ସେଥିରୁ କି ପୁଣ୍ୟ ମିଳିବ କି ? ଆଉ ସୁଷ୍ମି, ସେ ବି ସେ ଭଳି ଝିଅ ନୁହେଁ ମା । ବିଚରାର କପାଳରେ ଯିନା ଥିଲା, ବାପମା ଛେଉଣ୍ଡ ହେଲା । ହେଲେ ତାକୁ ଉଦଣ୍ଡୀ ବୋଲି କେହି କହିବ ନା ? କିଭ ଛିଣ୍ଡି ପଡ଼ିବ, ମା, କିଭ ଛିଣ୍ଡି ପଡ଼ିବ ।

ଏହା କହି ବାଉଳିମା ସୌଦାମିନୀଙ୍କ ଗୋଡ଼ ଧରିକି ଟାଣିନେଇ ଘଷିବାକୁ ଆରମ୍ଭ କରିଦେଲା । ସୌଦାମିନୀ ଏଥର ସମସ୍ତ ଘଟଣା ବୁଝିପାରିଲେ । ଅସହାୟା ବାଳିକାକୁ ସାହାଯ୍ୟ କରି ହରଶଙ୍କର ଯେ ପୁଣ୍ୟକାର୍ଯ୍ୟ କରିଛନ୍ତି, ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ହଜାରେ ପାଗଳାମି ଥାଉ ପଛକେ, ଦୁଃଖୀ ରଙ୍କଙ୍କ ପ୍ରତି ହରିର ଯେ ଦୟା ଥାଏ, ଏହା କେହି ଅସ୍ୱୀକାର କରି ପାରିବ ନାହିଁ, —ଏହାହିଁ ମନେ ମନେ କହିବାକୁ ଲାଗିଲେ । ତେବେ ଏ ଦୋଷଦର୍ଶୀ ଦୁନିଆଟାରେ ଲୋକ ମିଛରେ ହେଲେ ଦୋଷ ଦେଖିଥାଏ—ଅପବାଦ ଦେଇଥାଏ । ଯେତେ ବଡ଼ ଦେବସ୍ୱଭାବର ଲୋକ ହେଉ ପଛକେ ତା ନାଁରେ ଟିକିଏ କଳଙ୍କ ଲେପି ପାରିଲେ ମନୁଷ୍ୟ ପ୍ରକୃତ ଆତ୍ମପ୍ରସାଦ ଲାଭ କରିଥାଏ । ଏହା ଭାବି ସେ ଟିକିଏ ଆଶଙ୍କାପ୍ରବଣ ହୋଇ ପଡ଼ୁଥିଲେ । ମାତ୍ର ସେ ଭାରି ଖୁସି ହୋଇଥିଲେ ଯେ, ହରଶଙ୍କର ସୁଷମାକୁ ଘରକୁ ନେଇଆସି ବୁଦ୍ଧିମାନର କାର୍ଯ୍ୟ କରିଛି—ଜନାପବାଦର ରାସ୍ତା ଅନେକ ପରିମାଣରେ ବନ୍ଦ କରି ଦେଇଛି । ସୁଷମାକୁ ଦେଖିଲା ବେଳୁ ନିଜ ହୃଦୟରେ ବି କାହିଁକି କେଜାଣି ସେ ଟିକିଏ ଆକର୍ଷଣ ଅନୁଭବ କରୁଥିଲେ । ସୌଦାମିନୀଙ୍କର ଦୁଇଟି କନ୍ୟା ହୋଇ ଶୈଶବାବସ୍ଥାରେ ନଷ୍ଟ ହୋଇଯାଇଥିଲେ । କନ୍ୟାବାତ୍ସଲ୍ୟ ତାଙ୍କ ପ୍ରାଣରେ କଳାକାର

ଯୌବନ ପରେ ରୁଦ୍ଧ ହୋଇ ରହିଥିଲା,—ଆତ୍ମପ୍ରକାଶ କରିବାକୁ ସୁଯୋଗ ପାଇ ନ ଥିଲା । ବର୍ତ୍ତମାନ ସୁଷମାର ଆବିର୍ଭାବରେ ତାହା ଯେପରି ବାହାରକୁ ବାହାରି ପଡ଼ିବାକୁ ଇଚ୍ଛା କରୁଥିଲା । ରାଧାପ୍ରିୟା ଭାବୁଥିଲେ—ସୁଷମା ଯଦି ତାଙ୍କର ସ୍ୱଜାତି ହୋଇଥାନ୍ତା, ସେ ବଂଶମର୍ଯ୍ୟାଦାକୁ ଦୂରକୁ ଫିଙ୍ଗି ଦେଇ, ସେହି ଦରିଦ୍ରା ନିଃସହାୟା ବାଳିକାକୁ ଯୁଗପତ୍ କନ୍ୟା ଓ ପୁତ୍ରବଧୂର ଆସନରେ ବସାଇଦେଇ ତୃପ୍ତିଲାଭ କରନ୍ତେ । ମାତ୍ର ତାହା ଯେ ଅସମ୍ଭବ । ସୁଷମା ଯେ ସ୍ୱଜାତିସମ୍ଭୂତା ନୁହେ । ହରିହର ବଂଶ ଯେ ଉତ୍କଳଖଣ୍ଡର ଏକ ପୁରାତନ ପ୍ରସିଦ୍ଧ ବ୍ରାହ୍ମଣବଂଶ ବୋଲି ଗର୍ବ ଅନୁଭବ କରେ, ଆଉ ସୁଷମା ଯେ ଖଣ୍ଡାଏତକୁଳର କନ୍ୟା !

ରାଧାପ୍ରିୟା ମନେ ମନେ କହିଲେ—ଯାଉ, ସେ ସବୁ କଥା ଭାବି ଲାଭ କଣ । ବର୍ତ୍ତମାନ ସମସ୍ୟା ହେଉଛି—ସୁଷମାକୁ ଯେତେବେଳେ ତାଙ୍କ ଗୃହରେ ଆଶ୍ରୟ ଦିଆଯାଇଛି, ତାର କି ବ୍ୟବସ୍ଥା କରିବାକୁ ହେବ ? ଗୃହଯୋଗ୍ୟା କୁମାରୀକୁ ଘରେ ରଖି ତ ଆଉ ଚିରକାଳ ନିଶ୍ଚିନ୍ତ ହୋଇ ରହି ହେବ ନାହିଁ । ତାର ଭବିଷ୍ୟତ କଥା ନିଶ୍ଚୟ ଭାବିବାକୁ ହେବ । ସତ୍ପାତ୍ର ଦେଖି ତାର ଗୋଟାଏ କିନାରା କରିଦେବାକୁ ହେବ,—ଆଶ୍ରିତାର ସଂସାରଟି ଗଢ଼ିଦେବାକୁ ହେବ ।

ରାଧାପ୍ରିୟା ଏହିପରି ସୁଷମାର କଥା ଭାବୁଁ ଭାବୁଁ, ପୁତ୍ର ହରିଶଙ୍କରଙ୍କ ବିବାହ ଚିନ୍ତା କୌଣସି କାଳେ ମନରୁ ଏଡ଼ି ପାରିଲେ ନାହିଁ । ସେ ଭାବିଲେ—ସୁଷମାର ବିବାହ ତ ଦୂରର କଥା । ତା ଆଗରୁ ହରିଶଙ୍କରର ବିବାହ ସମାଧା ହେବା ତ ଦରକାର । ଏତେ ବଡ଼ ସୁଯୋଗ୍ୟ କୁଳନନ୍ଦନ ଅବିବାହିତ ଥାଉଁ [illegible] ଙ୍କର

ବିବାହ କଥା ଭାବେ ? କିନ୍ତୁ ହରିଶଙ୍କର ଯେ ଏକ ଦୁରୂହ ସମସ୍ୟା ହୋଇ ଛିଡ଼ା ହେଲଣି । କେତେବେଳେ କହୁଛନ୍ତି ବିଭା ହେବ, କେତେବେଳେ କହୁଛନ୍ତି ହେବ ନାହିଁ । ଘଡ଼ିକେ ଘୋଡ଼ା ଛୁଟୁଛି । କେତେ କଷ୍ଟରେ ବୁଝାଇ ସମଝାଇ ଜବାବ ପାଇଥିଲି—ହଁ ବିଭା ହେବ । ପାଣି ଯୋଗାଡ଼ ହେଲା,—ଗୋଟାଏ ନୁହେଁ, ଦୁଇ ଦୁଇଟା । ପୁଣି ଲକ୍ଷ୍ମୀ ପାଣି । ଯେମିତି ଘରକୁ ସେମିତି ନାହିଁ । ଦେବାନେବାରେ ବି ଊଣା କରି ନ ଥାନ୍ତେ । ହେଲେ କଣ ହେବ ? ସବୁ ପସର ପାଟିଗଲା । ପୁଅ ଜିଦ୍ ଧରିବସିଲା—ମୁଁ ବିଭା ହେବ ନାହିଁ, ଏଥିକୁ ବଳ କାହାର ?

ସୌଦାମିନୀ ଏହି ସବୁ କଥା ଭାବି ଭାବି କି ଉପାୟ କରିବେ କିଛି ସ୍ଥିର କରି ପାରିଲେ ନାହିଁ । ହାୟ ହାୟ ! ହରିଶଙ୍କର ବିଭା ହୋଇଥିଲେ, ଏତେବେଳକୁ ସେ ପୁତ୍ରେ କି ଝିଅଟା ନାତି ନାତୁଣୀର ମୁହଁ ଦେଖନ୍ତେଣି । କିନ୍ତୁ ବିଧାତା କି ପାଗଳାମି ତା ମୁଣ୍ଡରେ ଦେଲେ !

ବାଉଳିମା ଏହା ମଧ୍ୟରେ ଗୋଡ଼ ହାତ ଘଷି ଘଷି ଲାଲ କରିଦେଲଣି । ସୌଦାମିନୀ କହିଲେ—ଥାଉ ଲୋ ବାଉଳିମା, ଡେରି ହେଲଣି, ଆଉ ଘଷ ନା । ଏହା କହି ସେ ଉଠିଲେ ଏବଂ ଧୀରେ ଧୀରେ ଗୃହର ପଶ୍ଚାଦ୍‌ଭାଗରେ ଥିବା ଫଳ ବଗିଚା ଆଡ଼କୁ ଗଲେ ।



## ଏକାଦଶ ପରିଚ୍ଛେଦ

ପରଦିନ ସର୍ବପ୍ରିୟା ହରଶଙ୍କରଙ୍କୁ ଡାକି ନିରୋଳାରେ ପଚାରିଲେ—ବାବା, ତୋର ଇଚ୍ଛାଟା କଣ କହିଲୁ ?

ହରଶଙ୍କର କହିଲେ—କଣ ମା ? କେଉଁ କଥା ?

ସର୍ବପ୍ରିୟା କହିଲେ—ଏଇ ଯେ ଦିନ ବିବାହ କରିବାପାଇଁ ମୋ ପାଖରେ କହିଗଲୁ । ଦୁଇ ଦୁଇଟା ଜାଗାରୁ ସମ୍ବନ୍ଧ ଆସିଲା । କୌଣସିଟା ତ ତୋର ମନକୁ ପାଇଲା ନାହିଁ, ତେବେ ତୁ କଣ ଚାହୁଁ ?

ହରଶଙ୍କର ଉତ୍ତର ଦେଲେ—ମୁଁ ତ କିଛି ଚାହେଁ ନାହିଁ ମା, ସେହି କଥାତ ମୁଁ ସ୍ପଷ୍ଟ କରି ମାମୁଙ୍କ ପାଖକୁ ଚିଠିରେ ଲେଖିଥିଲି । ସେମାନଙ୍କୁ ମଧ୍ୟ ପତ୍ରଦ୍ୱାରା ମନା କରିଦେବାକୁ କହିଥିଲି ।

ସର୍ବପ୍ରିୟା—ହଁ, ତା ତ କହିଥିଲୁ ହର । ତେବେ ଏମିତ କଥା କହିବାର ଉଦ୍ଦେଶ୍ୟ କଣ, ମୁଁ ଶୁଣେ । ବିଭା କରିବାକୁ କଣ ତୋର ଇଚ୍ଛା ନୁହେଁ ? ଆଉ କାହିଁକି ବା ନୁହେଁ ?

ହରଶଙ୍କର କହିଲେ—ବିବାହ ତ କରିବି ମା । ତୋ ପାଖରେ ଯେଉଁ ପ୍ରତିଜ୍ଞା କରିଥିଲି, ତା ତ ରଖିବି ।

ମା ଏ କଥାର ବିନ୍ଦୁ ବିସର୍ଗ କିଛି ବୁଝି ପାରିଲେ ନାହିଁ । ଆଶ୍ଚର୍ଯ୍ୟ ହୋଇ କିଛି କ୍ଷଣ ପୁଅର ମୁହଁକୁ ଚାହିଁ ରହିଲେ । ପରେ କହିଲେ କଣ, ବିବାହ କରିବୁ ? କାହିଁ, କେହି ତ ଜାଣିଲେ ନାହିଁ ! ଏ ପୁଣି କି ନୂଆ ପାଗଳାମି ତୋର ?

ହରଶଙ୍କର ହସି ହସି ଜବାବ୍ ଦେଲେ—ନା ମା, ନୂଆ ପାଗଳାମି କିଛି ନୁହେଁ,—ଠିକ୍ ସେଇ ପୁରୁଣା ପାଗଳାମି । ସେଇ ପାଗଳାମିଟା ଚିରକାଳ ଦରଖାସ୍ତ କରି ଆସୁଛି ଏଟା ସେହି ଧରଣର ।

ତେବେ ବିବାହର କଥାଟା କେହି ଜାଣେ ନାହିଁ, କାରଣ ସେଥିରେ ଦାଇଦ ବେପଣି କାରବାର ହୋଇ ନାହିଁ ।

ମା ବିରକ୍ତ ହୋଇ କହିଲେ—କଣ ଯେ କହୁ, ତାର ଅର୍ଥ ମୁଁ କିଛି ବୁଝି ପାରେ ନାହିଁ, ହରି ! କଥାଟା ଟିକିଏ ସାଫ୍ କରି କହି ଭଲା ।

ହରିଶଙ୍କର ଉତ୍ତର ଦେଲେ—ସଫାକରି କହିବାକୁ ଗଲେ—ମୁଁ ବିବାହ କରିଛି, ବୋହୂ ଆଣିଛି, ତୋ ହାତରେ ଦେଇଛି । ଅଉ କଣ ?

ରାଧାପ୍ରିୟାଙ୍କ ମନକୁ ଏଥର ଟିକିଏ ସନ୍ଦେହ ଛୁଇଁଲା । ମୁଖ ତଥୁର ଭାବରୁ ତାହା ପ୍ରକାଶ ପାଇଲା । ସେ ହରିଶଙ୍କରଙ୍କ ମୁହଁକୁ ଦଲ୍ ବଲ୍ ହୋଇ ଅନାଇ ପଚାରିଲେ—ବୋହୂ କିଏ ରେ ?

ହରିଶଙ୍କର ତୁରନ୍ତ ଉତ୍ତର ଦେଲେ—ତା ନାଁ ସୁଷମା, ଏଥର ବୁଝିଲୁ ?

ରାଧାପ୍ରିୟା ଅକସ୍ମାତ୍ ଯେପରି ପର୍ବତଶିଖରରୁ ଖସି ପଡ଼ିଲେ । କଣ ? ହରିଶଙ୍କର ସୁଷମାକୁ ବିବାହ କରିଛି ? ଏଟା ସ୍ୱପ୍ନ ନା ସତ୍ୟ ! ହରିଶଙ୍କର ବ୍ରାହ୍ମଣ ସନ୍ତାନ, ପୁଣି ସୁଷମା ଯେ ଖଣ୍ଡାଏତ ଘର ଝିଅ ! ବଡ଼ଲୋକର ପିଲା କେଉଁଠି କେମିତି ଖାମଖିଆଲରେ ସ୍ୱଜାତିର ବାହାର ଘରେ ବାହା ହୋଇପଡୁଛନ୍ତି । କିନ୍ତୁ ତା ବୋଲି କଣ ଜାତି ଉଠିଗଲା ?

ରାଧାପ୍ରିୟା ଭାବିଲେ—କି ଅକାଳ କଥା ! ହରିଶଙ୍କର କଣ ସତେ ସୁଷମାକୁ ବିବାହ କରିଛି ? ନା, ମିଛରେ ଏପରି କୌତୁକ କରୁଛି ?

ସନ୍ଦେହରେ ପଡ଼ି ସେ ପଚାରିଲେ—ସତ କଥାଟା କଣ କହି ଦାବା । ଏମିତି ଗୁଡ଼ାଏ କଣ କହୁଛୁ !

ହରଶଙ୍କର କହିଲେ—ତୋ ସାଙ୍ଗରେ କଣ ଧନ୍ଦା କରୁଛି ମା ? ସତ କଥାଟାହିଁ ତ କହୁଛି । ମୁକ୍ତିର ସମସ୍ତ ଖବର ମୁଁ ନେଉଛି । ତାହାର ନାମ ବିବାହ । ସେଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଅନ୍ୟ ଲୋକେ ଖାଇ ଢୋଲ ବଜାଇ ଘରକୁ ଯେପରି ବୋହୂ ଆଣନ୍ତି, ମୁଁ ଅବଶ୍ୟ ତା କରି ନାହିଁ ମା । ସେଟା ଖାଲି ଲୋକଦେଖା କଥା,—ଗୋଟାଏ ବାହ୍ୟ ଢଙ୍ଗ । ବିବାହଟା ଖାଣ୍ଟି ଅନ୍ତରର ମେଳ । ସେଥିପାଇଁ ଏତେ ଗୋଳମାଳ କରିବାର ଅର୍ଥ ମୁଁ କିଛି ବୁଝି ପାରେ ନାହିଁ । ସେଥିରେ ମନ୍ତ୍ରପାଠର ଦରକାର ନାହିଁ, ପୁରୋହିତର ବି ପ୍ରୟୋଜନ ନାହିଁ । ଆତ୍ମାହିଁ ସେଠି ପୁରୋହିତ,—ଆତ୍ମାର ଅଭିଳାଷହିଁ ତାହାର ମନ୍ତ୍ର ।

ହରଶଙ୍କର ଏହିପରି କେତେ କଣ ବକ୍ତୃତା କରିଗଲେ । କିନ୍ତୁ ସାବିତ୍ରୀ ତାର ଗୋଟାଏ ବର୍ଣ୍ଣ ସୁଦ୍ଧା କାନକୁ ନେଲେ ନାହିଁ । ପାଗଳର ପ୍ରଳାପ ପରି ସବୁ ତାଙ୍କୁ ଅସାର ବୋଧହେଲା । ସେ କେବଳ ଅବାକ୍ ହୋଇ କାଷ୍ଠ ପୁତ୍ତଳି ପରି ଠିଆ ହୋଇ ରହିଲେ ।

ହରଶଙ୍କର କହିବାକୁ ଲାଗିଲେ—ତୋତେ ଏଟା ଖୁବ୍ ବିଚିତ୍ର ବୋଧ ହେଉଛି, ନା ମା ? କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଭାବି ଦେଖିଲୁ, ମୁକ୍ତିର ସ୍ୱଭାବ ଚରିତ୍ର ବିଷୟରେ ଯଦି କୌଣସି ଆପତ୍ତି ନ ଥାଏ, ତେବେ ବିବାହରେ ବାଧା କଣ ? ମୁକ୍ତି କି ତୋର ମନକୁ ପାଉନାହିଁ ମା ?

ସାବିତ୍ରୀ ଉତ୍ତର ଦେଲେ—କଣ ଯେ କହୁଛୁ ତା ମୁଁ କିଛି ବୁଝିପାରୁ ନାହିଁ ଦାଦା । ମନକୁ ପାଇବା ନ ପାଇବା କଥା ତ ନୁହେଁ, ତା ହୋଇଥିଲେ କାହାର କିଛି କହିବାର ନ ଥାନ୍ତା ! କିନ୍ତୁ ଏ ଯେ ହେଲା ଜାତି ଗୋତ୍ରର କଥା, ହରି । ସୁଷମା ତ ବ୍ରାହ୍ମଣ ଘରର ଝିଅ ନୁହେଁ । ତା ସାଙ୍ଗରେ ତୋର ବିବାହ କେମିତି ହୋଇପାରେ, କହିଲୁ ?

ଶୂଦ୍ର କନ୍ୟାକୁ କୌଣସି ବ୍ରାହ୍ମଣ କେବେ ବିଭା ହୋଇଛନ୍ତି ? କେଉଁ କାଳରେ ଏ କଥା ହୋଇଲାଣି ? ତୁ ତ ଏତେ ପାଠ ପଢ଼ିଛୁ, କହିଲୁ ଏମିତି ଘଟଣାଟା କେଉଁଠି ଘଟିଛି ? ସାରା ଦୁନିଆରେ ଯା ହୋଇ ନାହିଁ, ତୁ ତା କରିବାକୁ ଯାଉଛୁ । ଏଥିରେ ଲୋକେ ତୋତେ ପାଗଳ ନ କହି ଆଉ କଣ କହିବେ ?

ହରିଶଙ୍କର କହିଲେ—କହନ୍ତୁ ମା, ସେଥିରେ କଣ ଯାଏ ଆସେ ? ଯେଉଁଟା ଉଚିତ କାର୍ଯ୍ୟ ତା କରିବାକୁ ଯାଇ ଯଦି ଦେଶ ଦୁନିଆରୁ ପାଗଳ ଆଖ୍ୟା ମିଳେ, ତା ହେଲେ ତ ପାଗଳ ହେବାହିଁ ଭଲ । ସେଥିରେ ତ ଅପମାନର କଥା କିଛି ନାହିଁ, ସେଇଟାକୁ ମୁଁ ବରଂ ଗୌରବ ବୋଲି ମନେ କରେ । ତେବେ, ତୋର ପୁଅକୁ ଲୋକେ ପାଗଳ ବୋଲି କହିବେ, ଏଇ ତ ତୋର ଭୟ ମା ? ଏହା କହି ହରଶଙ୍କର ହସିବାକୁ ଆରମ୍ଭ କଲେ । ସୁଧାପ୍ରିୟା ଗମ୍ଭୀର ହୋଇ ରହିଲେ । ହରଶଙ୍କର ପଚାରିଲେ—ଆଉ କଣ ଭାବୁଛୁ ମା ?

ମା କହିଲେ—ଏ ଟା କି ସମ୍ଭବ, ହରି ?

ହରଶଙ୍କର ଉତ୍ତର ଦେଲେ—କାହିଁକି ସମ୍ଭବ ନୁହେଁ ଶୁଣେ ? ଆଉ କେହି ଏପରି କରି ନାହିଁ ବୋଲି ? ତେବେ ଯାହା କେହି କରି ନାହିଁ, ତା ଯେ କେହି କରିବ ନାହିଁ ଏ ବା କି କଥା ? ତା ହେଲେ ଯେ ଏଥିରୁ ପ୍ରମାଣ ହୁଏ ମା, ଆଗରୁ ଯାହା ଲୋକେ କରି ଆସିଛନ୍ତି ସେଇଟାଇ କେବଳ ସତ୍ୟ, ଆଉ ସମସ୍ତ ମିଥ୍ୟା । ବ୍ରାହ୍ମଣ କାହିଁକି ଶୂଦ୍ର ବିବାହ କରିବ ନାହିଁ, ଏହାର କିଛି କାରଣ ଅଛି । ବ୍ରାହ୍ମଣକୁ ଛାଡ଼ି ଆଉ ସମସ୍ତେ କି ଶୂଦ୍ର ? ପୁଣି ବ୍ରାହ୍ମଣ ଶୂଦ୍ର ଏ ଭେଦ ବା କାହାର ସୃଷ୍ଟି ? ସେଇ ମଣିଷ ତ ଏହା କରିଛି । ତେବେ ସେହି ମଣିଷ କାହିଁକି ଏ ଭେଦ ନ ଉଠେଇବ ? ବିଶେଷତଃ ଯେତେବେଳେ ସମାଜ ପକ୍ଷରେ ଏଟା ଅମଙ୍ଗଳର କାରଣ ହୋଇ ରହିଛି । ହଁ, କେବେ

କେଉଁକାଳେ ଏହା ସମାଜର ଦରକାରରେ ଆସିଥାଇପାରେ, ହୁଏତ ତାଦ୍ୱାରା କେବେ ସମାଜର ମଙ୍ଗଳ ହୋଇଥାଇପାରେ । କିନ୍ତୁ ସବୁଦିନେ କି ଏକା ଅବସ୍ଥା ଥାଏ ? ଆଜି ଯେତେବେଳେ ସ୍ପଷ୍ଟ ଦେଖା ଯାଉଛି ଯେ ଏହା ଦ୍ୱାରା ସମାଜର କ୍ଷତି ଛଡ଼ା ଲାଭ ନାହିଁ, ତେବେ ଏହାକୁ ସମାଜର ରୋଗ ବୋଲି ଧରିବାହିଁ ଯୁକ୍ତିଯୁକ୍ତ, ଆଉ ସେ ରୋଗର ପ୍ରତିକାର କରିବାହିଁ ଉଚିତ ।

ସର୍ବାଧିପ୍ରିୟା ଏ ଯୁକ୍ତିର ମର୍ମ କେତେ ବୁଝିଲେ କେତେ ବା ନ ବୁଝିଲେ । କିନ୍ତୁ ସନ୍ଦିଗ୍ଧ ମନରେ ଶେଷ କଥାର ଜବାବ ଦେଇ କହିଲେ—କିଏ ସେ ପ୍ରତିକାର କରିବ, ବାବା ?

ହରଶଙ୍କର ଟିକିଏ ଉତ୍ତେଜିତ କଣ୍ଠରେ ଉତ୍ତର ଦେଲେ—ତୁ କରିବୁ, ମୁଁ କରିବି, ସମସ୍ତେ କରିବେ ମା । ଏଥିପାଇଁ ବାଟ ଦେଖାଇବାକୁ ହେବ, ସମାଜ ଆଗରେ ଆଦର୍ଶ ଥୋଇବାକୁ ହେବ । ତା ଆଖିରେ ଆଙ୍ଗୁଳି ଭର୍ତ୍ତି କରି ଚେତାଇ ଦେବାକୁ ହେବ । ତାକୁ ଜୋର ଗଳାରେ କହିବାକୁ ହେବ—ଦେଖ ସମାଜ ! ଅନ୍ଧ ସମାଜ ! ତୋତେ ଏ ଅନାବଶ୍ୟକ ପ୍ରାଚୀନ ସାପର କାତି ଛାଡ଼ିବାକୁ ହେବ । ଏ ଜୀର୍ଣ୍ଣ ଆବରଣରେ ତୋର ମଙ୍ଗଳ ନାହିଁ,—ଉନ୍ନତି ନାହିଁ ବରଂ ଏହା ଅମଙ୍ଗଳରେ ଅବନତିର ଚିହ୍ନ । ଏହା ତୋର କଳଙ୍କ । ଏହା ତୋତେ ଛିନ୍ନବିଚ୍ଛିନ୍ନ କରି ରଖିଛି, ତୋର ଶକ୍ତି କମେଇଛି, ତୋତେ ଦୁର୍ବଳ କରିଛି । ମନୁଷ୍ୟଠାରୁ ମନୁଷ୍ୟକୁ ତଫାତ କରି ରଖିବା ପାଇଁ ଏହା ଗୋଟାଏ ବିଷାକ୍ତ କଣ୍ଟକମୟ ବାଡ଼ । ଏ ବାଡ଼କୁ କାଟି ସଫା କରିବାକୁ ହେବ । ନିର୍ମମଭାବରେ ଏହାର ମୂଳୋତ୍ପାଟନ କରିବାକୁ ହେବ । ଯେପରି ଟିକିଏ ମାତ୍ର ଚେର ନ ରହେ ତା ଦେଖିବାକୁ ହେବ । ସେଇଥିରେହିଁ ତୋର ଅମ୍ବରକାଶ—

ହେଉଥିରେହିଁ ତୋର ଶକ୍ତି ପ୍ରତିଷ୍ଠା,—ତୋର ଗୌରବ,—ତୋର ବୃଦ୍ଧି ।

ହରଶଙ୍କର ଗରମ ହୋଇଉଠିଲେ । ସେ ଭୁଲିଗଲେ—ଅଳ୍ପ ଶିକ୍ଷିତା ବା ଅର୍ଦ୍ଧ ଶିକ୍ଷିତା ଏକ ନାରୀ ଆଗରେ ଏତେଗୁଡ଼ାଏ ସଂସ୍କୃତର ଅସ୍ଫାଳନ ଅନାବଶ୍ୟକ । ସାଧ୍ବୀ ସ୍ତ୍ରୀ ଏଇ ସବୁ ବୃଦ୍ଧି ବୁଦ୍ଧିର ଅର୍ଥ କିଛି ବୁଝିପାରିଲେ ନାହିଁ । ଅକାଳତତ୍ତ୍ୱକ ପରି ସେଗୁଡ଼ାକ ତାଙ୍କ କର୍ଣ୍ଣମୂଳରେ ଭୀଷଣ ଧକ୍କା ଦେଇ ତାକୁ ଝାଁ ଝାଁ କରି ଦେଇଗଲା । ତାଙ୍କ କାନରୁ ଅତଡ଼ା ଖସି ପଡ଼ିଲା, କ୍ଷଣକାଳ ପାଇଁ ସେ ଯେପରି ବଧୀର ପାଲଟିଗଲେ ।

ହରଶଙ୍କର ପୁନର୍ବାର ଆରମ୍ଭ କଲେ—"ମା ତୋତେ ଆଜି ମୋର ଏ କାର୍ଯ୍ୟରେ ସାହାଯ୍ୟ କରିବାକୁ ପଡ଼ିବ, କିମ୍ବା ଛାଡ଼ିବାକୁ ହେବ । ପୁଅର ମୁଣ୍ଡରେ ହାତ ଦେଇ ଆଶୀର୍ବାଦ କରିବାକୁ ହେବ । କହିବାକୁ ହେବ—ଯୁଦ୍ଧ କରୁଛୁ ବାବା, ଦେଶ୍ କରିଛୁ । ଭଗବାନ୍ ତୋତେ ଶକ୍ତି ଦଅନ୍ତୁ, ତୁ ଜୟୀ ହ ।

ଏହା କହି ହରଶଙ୍କର ଜ୍ୱଳନ୍ତ ନେତ୍ରରେ ମାଆର ମୂର୍ତ୍ତିକୁ ଚାହିଁ ରହିଲେ । ମା ଏ ବାଗ୍‌ଜାଳରେ ଅବାକ୍ ହୋଇ ଯାଇଥିଲେ, ସୁତରାଂ କୌଣସି ଉତ୍ତର ଦେଇ ପାରିଲେ ନାହିଁ । କିନ୍ତୁ ପୁତ୍ରର ସେ ଜ୍ୱଳନ୍ତ ନେତ୍ରର ଦୀପ୍ତି ଦେଖିଲେ—ସେ ତୀବ୍ରକଣ୍ଠର ଗର୍ଜନ ଶୁଣିଲେ । ପ୍ରାଣରେ ତାଙ୍କର ଶଙ୍କା ଜାତ ହେଲା, ସେ ତ୍ରସ୍ତ ହୋଇପଡ଼ିଲେ । କିଛି ନ କହି ସେ ନିତାନ୍ତ ନିଃସହାୟା ପରି ଗୋଟାଏ ଦୀର୍ଘ ନିଃଶ୍ୱାସ ତ୍ୟାଗ କଲେ । ଏହି ସମୟରେ ଭୃତ୍ୟ ଆସି ଖବର ଦେଲା ଅନେକ ପ୍ରଜା ଆସି ବାହାରେ ଜୁଣ୍ଡ ହୋଇଛନ୍ତି, ସେମାନେ ବାବୁଙ୍କ ସହିତ ସାକ୍ଷାତ ଚାହାନ୍ତି । ସେମାନଙ୍କର କି ଗୋଟାଏ କଥା କହିବାର ଅଛି ।

ହରଶଙ୍କର କହିଲେ—ଅଚ୍ଛା, ସେମାନଙ୍କୁ ଅପେକ୍ଷା କରିବାକୁ କହ, ମୁଁ ଯାଉଛି ।

ଏହା କହି ସେ ମା ରାଧାପ୍ରିୟାଙ୍କୁ କହିଲେ—ମା, ପରେ କଥାବାର୍ତ୍ତା ହେବା, ସେମାନେ କାହିଁକି ଆସିଛନ୍ତି ବୁଝେଁ ।

ହରଶଙ୍କର ବାହାରକୁ ଚାଲିଗଲେ । ମା ବସି ବସି ଭାବିବାକୁ ଲାଗିଲେ । ସୁଷମାକୁ ସେ ନିଜର ପୁତ୍ରବଧୂ ବୋଲି କିପରି ଭାବିବେ,—ତାହା କୌଣସି କ୍ରମେ ସ୍ଥିର କରି ପାରିଲେ ନାହିଁ । ଅବଶ୍ୟ ତାର ରୂପ ଅଛି । ଏତେ ବଡ଼ ଗୋଟାଏ ଘରର ଗୃହଲକ୍ଷ୍ମୀ ହୋଇ ଲାବଣ୍ୟର ଲୀଳା ଖେଳାଇବାକୁ ଯେତେ ରୂପବୈଭବର ପ୍ରୟୋଜନ ତା ସୁଷମାର ପୂର୍ଣ୍ଣମାତ୍ରାରେ ଅଛି । ରାଜରାଣୀ ହୋଇ ବସିବାର ସେ ଉପଯୁକ୍ତ । ରୂପଲାବଣ୍ୟର ବିଚାର ନେଇ କେହି ଯେ ତାକୁ ଖୁଣି ଦେଇପାରେ ତା ନୁହେଁ । ତାର କୌଣସି ଗୋଟାଏ ଅଙ୍ଗ ପ୍ରତ୍ୟଙ୍ଗର ଦୋଷ ବାହାର କରିଦେବା କଠିନ । ହରଶଙ୍କର ପରି ପୁଅ ପାଖକୁ ସାଜିବାଭଳି ଗୋଟିଏ କୁଳବଧୂର ଯଦି ପ୍ରୟୋଜନ ତା ହେଲେ ସେ ହେଉଛି ସୁଷମା । ତା ଛଡ଼ା ତାର ଆଉ ଗୋଟାଏ ଜିନିଷ ଅଛି,—ଯାହା ଅନେକ ରୂପବତୀର ନ ଥାଏ । ତା କଣ, ଅବଶ୍ୟ ଭାଷାରେ କହିହେବ ନାହିଁ,—ବାକ୍ୟରେ ବର୍ଣ୍ଣନା କରିହେବ ନାହିଁ । କିନ୍ତୁ ତାର ମୁହଁଟିକୁ ଥରେ ଅନାଇଦେଲେ ଭିତରେ ଭିତରେ ତାହା ଉପଲବ୍ଧି ହୋଇଯାଏ । ଦେଖିଲା ଲୋକର ପ୍ରାଣରେ ମମତା ଆସେ,—ମୁଗ୍ଧ ପରି ତାହା ଆତ୍ମାକୁ ଆକର୍ଷଣ କରିନିଏ, ତାହା ତାର ବିଶେଷତ୍ୱ । ଆଉ ଗୁଣର କଥା ? ଅବଶ୍ୟ ସୁଷମା ଏଇ ଦିନ ଦୁଇଟା ହେଲା ଏ ଘରେ ଆସି ପାଦ ଦେଇଛି । ସେଥିରେ ଗୁଣର ପରିଚୟ ପୂର୍ଣ୍ଣମାତ୍ରାରେ ପାଇବା ସହଜ ନୁହେଁ । କିନ୍ତୁ ସୁଷମାର ଚାଲିଚଳଣି, ଗଢ଼ବଢ଼ି,

ସ୍ୱଭାବ ପ୍ରକୃତ ଯେ ଲକ୍ଷ୍ୟ କରିଛନ୍ତି, ସେ ବୁଝିଛନ୍ତି—ସେଥିରେ ବିଶେଷ କିଛି ନା-ପସନ୍ଦ କରିବାର ନାହିଁ ।

କିନ୍ତୁ କେବଳ ରୂପ ଗୁଣ ଉପରେ କି ସମସ୍ତ କଥା ନିର୍ଭର କରେ ? ସେଥିରେ କି ସବୁ ସମସ୍ୟାର ସମାଧାନ ହୁଏ ? ସ୍ୱାଧୀନପ୍ରିୟା ପରିଣାମ ବିଷୟ ଚିନ୍ତା କରିବାକୁ ଗଲେ । ଏହାର ପରିଣାମ କଣ କି ହେବ ? କାହା ପାଖରେ ହାତ ଯାଏ ନାହିଁ । ସମାଜ କଣ ଏ ସବୁ ନିଃସନ୍ଦେହରେ ସ୍ୱୀକାର କରିବ ? ସମାଜପନ୍ଥୀମାନେ ଏହାକୁ ବିଷଚକ୍ଷୁରେ ଦେଖିବେ,—ହରଶଙ୍କରଙ୍କୁ ବିଦ୍ରୋହୀ ବୋଲି ମନେ କରିବେ— ଏତେ ବଡ଼ ଗୋଟାଏ ନାମଡାକିବଂଶ ପତିତ ଶ୍ରେଣୀରେ ଅନ୍ତର୍ଭୁକ୍ତ ହେବ । ଘରେ ବାହାରେ ଗୃହିଆଡ଼େ ଅଶାନ୍ତି ଉପୁଜିବ । କିଏ କେତେ ପ୍ରକାର କଥା କହିବେ,—କୁତ୍ସା ରଟନା କରିବେ,— ଦୁର୍ନାମ ଦେବେ । ହରଶଙ୍କର ଏଥିପାଇଁ ଦାୟୀ ହେବେ । ବଂଶ ମର୍ଯ୍ୟାଦା ଲୋପର କାରଣ ବୋଲି କହି ସମସ୍ତେ ତାଙ୍କୁ ଦୋଷ ଦେବେ । କାହିଁକି ଅପମାନିତ ହୋଇ ତାଙ୍କୁ ରହିବାକୁ ହେବ । ନିଜ ଜୀବନରେ ସୁଖଶାନ୍ତି ରହିବ ନାହିଁ । ଏହି ସବୁ ଚିନ୍ତା ସ୍ୱାଧୀନପ୍ରିୟଙ୍କ ଆଖି ଆଗରେ ନାନାବର୍ଣ୍ଣ ବିଭୀଷିକା ନେଇ ଚିତ୍ରିତ ହେବାକୁ ଲାଗିଲା । ସେ ଭବିଷ୍ୟତ ଅନ୍ଧାର ଦେଖିଲେ । କିନ୍ତୁ ସେ ନିରୁପାୟ,—ନାଚାର । ହରଶଙ୍କରଙ୍କୁ ଏଥିରୁ ନିବୃତ୍ତ କରିବାର ଉପାୟ କାହିଁ ?

ସ୍ୱାଧୀନପ୍ରିୟା ନିଃଶ୍ୱାସ ପକାଇ ଉଠିଲେ । ଯନ୍ତ୍ରଚାଳିତ ପରି ସେ ଚାଲିଲେ । ଲକ୍ଷ୍ୟହୀନ ଭାବରେ ଆସି ସେ ଗୋଟାଏ ଅନଭିଳଷିତ ସ୍ଥାନରେ ଉପସ୍ଥିତ ହୋଇଗଲେ । ସେଟା ଏଡ଼େ ପ୍ରକାଣ୍ଡ ଘରର ଗୋଟାଏ କ୍ଷୁଦ୍ର କକ୍ଷ । ତାର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ଶଙ୍କ ପ୍ରତିମାଟି ପରି ସୁଷମା ଶୂନ୍ୟକୁ ଚାହିଁ ରହିଛନ୍ତି । ମୁଖରେ ଯେପରି ଫିକା ବିଷାଦର ଛାୟା, କିନ୍ତୁ ତାହା ସୌନ୍ଦର୍ଯ୍ୟକୁ ମଳିନ କରିପାରି

ନାହିଁ । ତୁପବଭବ ତୁଗବତୀର ଅଙ୍ଗ ପ୍ରତ୍ୟଙ୍ଗରୁ ଯେପରି ଠମ୍ ଠମ୍ ହୋଇ ଝରିପଡୁଛି ।

ସାଧ୍ୱପ୍ରିୟାଙ୍କ ଦୃଷ୍ଟି ସେହି ସୁନ୍ଦର ମୂର୍ତ୍ତି ଉପରେ ପଡ଼ିଲା । ହୃଦୟରେ ହଠାତ୍ ଗୋଟାଏ ପ୍ରତିକ୍ରିୟା ଆରମ୍ଭ ହୋଇଗଲା । କିଏ ଯେପରି ଅକସ୍ମାତ୍ ତାହାଙ୍କରେ ବିରକ୍ତି ଭରି ଦେଇଗଲା । ସେ ତୀବ୍ର କଣ୍ଠରେ କହିପକାଇଲେ—କାହିଁକି ଏମିତି ଏଠି ଠିଆହୋଇ ରହିଛୁ ?

ରୂଢ଼କଥା କହି ସୁଷମା ମନରେ କଷ୍ଟ ଦେବା ତାଙ୍କର ଆଦୌ ଅଭିପ୍ରେତ ନ ଥିଲା । କିନ୍ତୁ ଅଜ୍ଞାତସାରରେ ଭାଷାଟା କିନ୍ତୁ ହୋଇଗଲା । ମନର ତିକ୍ତତା ଆପେ ଆପେ କଥାଛଳରେ ବାହାରି ପଡ଼ିଲା । ସୁଷମା ଚମକି ଉଠିଲା । ଅପ୍ରତ୍ୟାଶିତ କର୍କଶସ୍ୱରର ବିଷବାଣ ତାର ମର୍ମମୂଳରେ ବିଦ୍ଧ ହୋଇଗଲା । ସେ ଟିକିଏ ଦବିଯାଇ, କଣ କରିବ କିଛି ଠିକ୍ କରିପାରିଲା ନାହିଁ । ଦ୍ୱାରଦେଶରେ ଛିଡ଼ା ହେବାଟା ସାଧ୍ୱପ୍ରିୟାଙ୍କ ଚକ୍ଷୁରେ କାହିଁକି ଏତେ ଦୋଷାବହ ହେଲା ତାହା ସେ ବୁଝିବାକୁ ଚେଷ୍ଟା କରି ମଧ୍ୟ ସମର୍ଥ ହେଲା ନାହିଁ । ମନେ ମନେ ଭାବିଲା— ଆଚ୍ଛା, ସେ କଣ ଅଶାଳୀନଭାବରେ ସେଠି ଛିଡ଼ାହୋଇ ରହିଥିଲା କି ? ସୁଷମା ନିଜର ପରିଧେୟ ବସ୍ତ୍ର ଓ ଅଙ୍ଗ ପ୍ରତ୍ୟଙ୍ଗ ଉପରେ ଦୃଷ୍ଟି ସଞ୍ଚାଳିତ କରି ଦେଖିଲା—ନା, ତା ତ ନୁହେଁ, କୌଣସି ଅସଂଯମର ଲକ୍ଷଣ ତ ନାହିଁ । ସେଇ ଅଙ୍ଗ ଯେପରି ଭାବରେ ଆବୃତ ରହିବାର କଥା, ତା ତ ଠିକ୍ ଅଛି । ତେବେ କଣ ହେଲା ? ମା କାହିଁକି ଚିଡ଼ିଲେ ? ଏ ପ୍ରଶ୍ନର କୌଣସି ଉତ୍ତର ସେ ଖୋଜି ପାଇଲା ନାହିଁ । ପ୍ରାଣ ବ୍ୟାକୁଳ ହୋଇ ଉଠିଲା । ଚକ୍ଷୁ ଲୋତକପୂର୍ଣ୍ଣ ହୋଇ ଆସିଲା । କିନ୍ତୁ ସେ ନିଜକୁ ସମ୍ଭାଳି ନେବାକୁ ଚେଷ୍ଟା କଲା । ମନେ ମନେ ତାକୁ କିଏ ଯେପରି

ପ୍ରବୋଧ ଦେଇ କହୁଲ—କାହିଁକି ବଚଳିତ ହେଉଚ୍ଛୁ ? ତୁ ଯେ ଅଶିତା, ଏହା ତୋର ଦାୟ ।

ରାଧାପ୍ରିୟା ଗୃହଲଗଲେ । ନିଜର ଶୟନକକ୍ଷରେ ପ୍ରବେଶ କରି ସେ କୌଣସି ଗୋଟାଏ କାର୍ଯ୍ୟରେ ବ୍ୟାପୃତ ହେବାକୁ ଚେଷ୍ଟାକଲେ । ମାତ୍ର କାହିଁରେ ମନ ଲାଗିଲା ନାହିଁ । ପ୍ରାଣଟା କଣ୍ଟକବଦ୍ଧ ହେଲା ପରି ଜଣାଗଲା । ସେ ବାହାରି ଆସି ଡାକିଲେ—ସୁଷମା !

ସୁଷମା ପୁନର୍ବାର ଚମକି ଉଠିଲା । ମା ତାର ଆଜି କିଛୁ ଅପରାଧ—ଆଜି କୌଣସି ସ୍ତୁଟି ଲକ୍ଷ୍ୟ କଲେ ନା କଣ ? ସେ ଶଙ୍କିତ ହେଲା, ମାତ୍ର ଅବଲମ୍ବେ ଜବାବ ଦେଲା—ଯାଉଛି ମା ।

କରୁଣମୂର୍ତ୍ତି ଧରି ଶଙ୍କିତ ହୃଦୟରେ ସୁଷମା ଯେତେବେଳେ ଆସି ରାଧାପ୍ରିୟାଙ୍କ ନିକଟରେ ଉପସ୍ଥିତ ହେଲା, ରାଧାପ୍ରିୟା ତାର ହାତଟି ଧରି ତାକୁ ଘର ଭିତରକୁ ଟାଣିନେଇ ପଚାରିଲେ—ମା, ଝୁଷି, ମନରେ କଷ୍ଟ ହେଲା ତୋର ?

ସୁଷମାର ରୁଦ୍ଧବେଦନା ଆଉ ବାଧା ମାନିଲା ନାହିଁ । ଚକ୍ଷୁ ଦ୍ୱୟରୁ ଅଶ୍ରୁବିନ୍ଦୁ ଟପ୍ ଟପ୍ ହୋଇ ଝରି ପଡ଼ିଲା । ରାଧାପ୍ରିୟା ତାକୁ ଖଟ ଉପରକୁ ଟାଣି ନେଇ ତାର ଚିବୁକଟି ଧରି କହିଲେ—"ମା ରେ କାନ୍ଦୁଛୁ ? ମୋର କଥାଟା କି ଏତେ ବାଧୁଛି ମା ?" ଏହା କହି ସେ ସୁଷମାକୁ ଭିଡ଼ି ଧରିଲେ । ନିଜର ବସ୍ତ୍ରାଞ୍ଚଳରେ ତାର ଅଶ୍ରୁସିକ୍ତ ମୁହଁଟି ପୋଛି ଦେଇ କହିଲେ—ମୁଁ କି ତୋର ମା ନୁହେଁ ଝୁଷି ? ମାଆର କଥାରେ କି ଏତେ କଷ୍ଟ ହୁଏ ? ଯା ମା, ଏଇ ଚାବିଟା ନେ, ଆଲମାରି ଭିତରେ ଗୋଟାଏ ତେଲ ଶିଶି ଅଛି ନେଇ ଆ । ଆଜି ସେତକ ଖାଇଅଛି ଅଣ ।

ସୁଷମା ଧୀରେ ଧୀରେ ଆଲମାରି ଖୋଲିଲା । ତା ଭିତରେ ଅନେକଗୁଡ଼ାଏ ଶିଶି-ବୋତଲ ଥିଲା । କେଉଁଟା ନେବ ସେ ଠିକ୍

କରି ନ ପାରି ଗୃହଁ ରହିଲା । ସୁଧାପ୍ରିୟା ବୁଝିପାରି କହିଲେ—'ସେଇ କୁନ୍ତଳରଞ୍ଜନ ଶିଶିଟା ମା ।' ସୁଷମା ଶିଶିଟା ବାହାର କରି ଆଣିଦେଲା, ପାନଅ ମଧ୍ୟ ଯଥାସ୍ଥାନରୁ ଆଣି ସୁଧାପ୍ରିୟାଙ୍କ ହାତକୁ ବଢ଼ାଇଦେଲା । ସୁଧାପ୍ରିୟା ସେ ସବୁ ନେଇ କଣ କରିବେ ତାହା ସେ ଜାଣି ନ ଥିଲା । ସେ ନୀରବରେ ଠିଆ ହୋଇ ରହିଲା । ସୁଧାପ୍ରିୟା କହିଲେ—ଚାଲ୍ ମା, ସେହି ବାରଣ୍ଡାକୁ ଚାଲ୍ । ତୋର ମୁଣ୍ଡଟା କଣ ହୋଇଛି ରେ ! ନିଜ ହାତରେ ସଜାଡ଼ି ନ ଦେଲେ, ଧ୍ୟାନ ନାହିଁ ଦେଉଛୁ ।

ଏହା କହି ସେ ସୁଷମାକୁ ଜୋରକରି ନେଇ ବାରଣ୍ଡାରେ ବସାଇ ତାର କେଶଦାମ ସୁବିନ୍ୟସ୍ତ କରିବାକୁ ଉଦ୍ୟତ ହେଲେ । କେଶ ବିନ୍ୟାସ ପରେ ସେ ସୁଷମାକୁ ନେଇ ପୁନଶ୍ଚ ଗୃହମଧ୍ୟରେ ପ୍ରବେଶ କଲେ । କହିଲେ—"ମା ସୁଷମା, ଟିକଏ ରହ, ଗୋଟାଏ କାମ ଅଛି ।" ସୁଷମା ଠିଆହୋଇ ରହିଲା । ତାର ଉଦ୍ଭ୍ରାନ୍ତ ଅନେକ ପରିମାଣରେ କମି ଆସିଥିଲା । ତଥାପି ମୁହୂର୍ତ୍ତିକ ପୂର୍ବେ ସୁଧାପ୍ରିୟା କାହିଁକି ତା ଉପରେ ବିରକ୍ତ ହୋଇ ଉଠିଥିଲେ ତାହା ସେ ବୁଝି ପାରୁ ନ ଥିଲା । ସୁଧାପ୍ରିୟା ଗୋଟାଏ ଅଳଙ୍କାର ବାକ୍ସ ଖୋଲି ତହିଁରୁ ଗୋଟିଏ ସ୍ୱର୍ଣ୍ଣହାର ବାହାର କଲେ ଓ ତାହା ଆଣି ସୁଷମା ଗଳାରେ ପିନ୍ଧାଇ ଦେବାକୁ ଉଦ୍ୟତ ହେଲେ । ସୁଷିର ମନେ ପଡ଼ିଲା ସେହି ଦିନର କଥା,—ଯେଉଁଦିନ ହରଶଙ୍କର ମଧ୍ୟ ଅତି ଆଦରରେ ତାର ଅଙ୍ଗୁଳିରେ ସ୍ୱର୍ଣ୍ଣ ଅଙ୍ଗୁରୀୟ ପିନ୍ଧାଇ ଦେବାକୁ ଚେଷ୍ଟା କରିଥିଲେ । ସୁଷି ସେଥିରେ ବାଧା ଦେଇଥିଲା । ଆଜି ମଧ୍ୟ ସେ ସୁଧାପ୍ରିୟାଙ୍କୁ ବାଧାଦେଇ କହିଲା—"ନା ମା, ସେଥିରୁ ମୋତେ ରକ୍ଷା କରନ୍ତୁ, ମୁଁ ଆପଣଙ୍କ ଗୋଡ଼େ ଧରୁଛି ।" ଏହା କହି ସେ ସୁଧାପ୍ରିୟାଙ୍କ ପାଦସ୍ପର୍ଶ କରିବାକୁ ଚେଷ୍ଟା କଲା । ସୁଧାପ୍ରିୟା ଆଶ୍ଚର୍ଯ୍ୟ ହେଲେ । ସୁଷମାର

ହାତ ଧରିପକାଇ କହିଲେ—ଏ କଣ ସୁଷମା ? ତୋର ଏ କି ଢଙ୍ଗ ?

ସୁଷମା କହିଲା—ସମସ୍ତଙ୍କ କଣ୍ଠରେ କି ରତ୍ନହାର ଶୋଭାପାଏ ମା ? ଏ ଅଭାଗିନୀ ଯେ ଆପଣଙ୍କର ସ୍ନେହଲାଭ କରିପାରିଛି, ସେତିକି ଯଥେଷ୍ଟ ।

ଏହିକଥା ଶୁଣି ସୁଧାପ୍ରିୟା ପ୍ରଥମେ ଅବାକ୍ ହୋଇଗଲେ । ପରେ ସେ ଅନେକ ଜିଦି କଲେ । ମାତ୍ର କେଉଁଥିରେ କିଛି ଫଳ ହେଲା ନାହିଁ । ସୁଷମା କୌଣସି ମତେ ସେ ସ୍ୱର୍ଣ୍ଣାଳଙ୍କାର ପରିଧାନ କରିବାକୁ ରାଜି ହେଲା ନାହିଁ । ଅଗତ୍ୟା ସୁଧାପ୍ରିୟା ସେଥିରୁ ନିରସ୍ତ ହେଲେ । କହିଲେ—ଏତେ ଜିଦିଖୋର ଝିଅ ତୁ, ତା ମୁଁ ଜାଣି ନ ଥିଲି ସୁଷମା ।

---

## ଦ୍ୱାଦଶ ପରିଚ୍ଛେଦ

ହରଶଙ୍କରଙ୍କ ସାକ୍ଷାତ୍‌ପ୍ରାର୍ଥୀ ହୋଇ ସେ ଦିନ ଯେଉଁ ପ୍ରଜାମାନେ ରୁଣ୍ଡ ହୋଇଥିଲେ ସେମାନେ ହରଶଙ୍କରଙ୍କୁ ଧରି ବସିଲେ ଯେ ସେମାନଙ୍କ ଗ୍ରାମର ଅନତିଦୂରରେ ଅନେକଗୁଡ଼ାଏ ଅନାବାଦୀ ଜମି ଜମିଦାରଙ୍କର ପଡ଼ି ରହିଛି, ସେମାନେ ସେ ସବୁ ଜମି ଚାଷ କରିବାକୁ ଚାହାନ୍ତି, ସେଥିପାଇଁ ଅନେକ ଦିନ ହେଲା ସେମାନେ ଆବେଦନ କରି ଆସୁଛନ୍ତି, କିନ୍ତୁ ସେମାନଙ୍କର ଆବେଦନ ମଞ୍ଜୁର କରିବା ଦୂରେଥାଉ କେହି ତାହା କାନକୁ ବି ନେଉ ନାହାନ୍ତି । ସେମାନେ ଗରିବ ଲୋକ; ଜମିଦାରଙ୍କୁ ଉପଯୁକ୍ତ ସଲାମି ଦେଇ ଜମି ପଟା ନେବାକୁ ସେମାନଙ୍କର ସାମର୍ଥ୍ୟ ନାହିଁ; ହରଶଙ୍କର ସେମାନଙ୍କର ଗୁହାରି ନିଜେ ବୁଝି ସୁମୀମାଂସା କରିବେ ବୋଲି ସେମାନେ ଆଶା କରନ୍ତି; ସେଥିପାଇଁ

ସେମାନେ ଜମିଦାରବାବୁଙ୍କ ସଙ୍ଗେ ଦେଖା କରି ସମସ୍ତ ହାଲ ଜଣାଇବାକୁ ଆସିଛନ୍ତି । ହରିଶଙ୍କର ସେମାନଙ୍କ ଆବେଦନ ଶୁଣିଲେ । ଗୁମାସ୍ତାବାବୁଙ୍କୁ ଡାକି ସବୁ କଥା ମଧ୍ୟ ବୁଝିଲେ । ଅନେକ ଦିନରୁ ଯେ ପ୍ରଜାମାନେ ଏପରି ଆବେଦନ କରି ଆସୁଛନ୍ତି ଏହା ସତ୍ୟ । କିନ୍ତୁ ଜମିଦାରଙ୍କ ତରଫରୁ ବହୁତ ବେଶି ସଲାମି ଦାବି କରା ଯାଉଛି । ପ୍ରଜାମାନେ ତା ଦେବାକୁ ଅସମର୍ଥ । ସେଥିପାଇଁ ଏତେ ଦିନ ହେଲା ଭଡ଼ା ଓଠେଇ ଲାଗିନ୍ଥି । ହରିଶଙ୍କର ଦେଖିଲେ—ଜମିଗୁଡ଼ାକ ଖାଲି ପଡ଼ିଆ ପଡ଼ିଛି,—ଜମିଦାରର ଯେ ସେଥିରୁ କିଛି ଲାଭ ହେଉଛି ତା ନୁହେଁ,—ପ୍ରଜାମାନେ ଯଦି ତାହା ଚାଷ କରିବାକୁ ଚାହାନ୍ତି ତେବେ ତା ଭଲ କଥା,—ଅନେକ ଦିନର ପଡ଼ିଆ ଜମିକୁ ଉଠିଆ କରିବାକୁ ହେଲେ ପ୍ରଥମେ ବଡ଼ ଖର୍ଚ୍ଚାନ୍ତ ହେବାକୁ ହୁଏ । ଏପରି ଅବସ୍ଥାରେ ଗରିବ ପ୍ରଜାମାନଙ୍କଠାରୁ ସଲାମି ଦାବି କରିବାଟା ଅନ୍ୟାୟ । ହରିଶଙ୍କର ଗୁମାସ୍ତାଙ୍କୁ ଡାକି ନିରୋଳାରେ ପରାମର୍ଶ କଲେ । ହରିଶଙ୍କର ପଚାରିଲେ—ଆଚ୍ଛା, ଗୁମାସ୍ତାବାବୁ, ଏମାନେ କଣ ସମସ୍ତେ ଗରିବ ? ଗୁମାସ୍ତା କହିଲେ—"ଆଜ୍ଞା, ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟ ସମସ୍ତେ ଗରିବ ।"

ହରିଶଙ୍କର କହିଲେ—ତେବେ ଯେଉଁମାନେ ଗରିବ ନୁହନ୍ତି ସେମାନଙ୍କୁ ବାଦ୍ ଦେଇ, ଗରିବ ପ୍ରଜାଙ୍କୁ ଏ ଅନାବାଦି ଜମିଗୁଡ଼ାକ ଚାଷ କରିବାକୁ ଦିଅ । ସେମାନେ ନିଜ ଚେଷ୍ଟାରେ ସେଗୁଡ଼ାକୁ ଉଠିଆ କରନ୍ତୁ । ଜମିର ଯାହା ନ୍ୟାଯ୍ୟ ଖଜଣା ତାହା ଧାର୍ଯ୍ୟ କରିଦିଆଯାଉ । ସଲାମି ଟଙ୍କା ସେମାନଙ୍କଠାରୁ ଆଦାୟ କରିବାଟା ବଡ଼ ନିଷ୍ଠୁରତା ହେବ ବୋଲି ମୁଁ ମନେ କରେଁ ।

ଗୁମାସ୍ତା ବାବୁ ମଧ୍ୟମାଙ୍ଗୁଳିରେ ମୁଣ୍ଡ କୁଣ୍ଡେଇ ହେଉଁ ହେଉଁ କହିଲେ—ଆଜ୍ଞା, ସମସ୍ତ ସଲାମି ଟଙ୍କାଟା କି—

ହରିଶଙ୍କର ଉତ୍ତର ଦେଲେ—ହଁ, ସମସ୍ତ । ସେମାନେ ତ ଖଜଣା ଦେବେ, ତେବେ ଆମର ଯିବ କଣ ?

କଥାଟା ଗୁମାସ୍ତା ବାବୁଙ୍କ ମନକୁ ପାଇଲା କି ନା ସେ ଜାଣନ୍ତି । ମାତ୍ର ଜମିଦାରଙ୍କ ଆଦେଶ ପାଳନ ନ କରି ତ ଉପାୟ ନାହିଁ । ତେଣୁ ସେ ସେଥିରେ ସମ୍ମତି ଜ୍ଞାପନ କରି କହିଲେ—'ହଜୁରଙ୍କର ଯାହା ଇଚ୍ଛା ।' ଏହା କହି ସେ ପ୍ରଜାମାନଙ୍କ ଆବେଦନ ପତ୍ର ଉପରେ ହରିଶଙ୍କରଙ୍କର ଗୋଟାଏ ଆଦେଶ ଲେଖିନେଲେ । ପରେ ପ୍ରଜାମାନଙ୍କୁ ସେ ଆଦେଶ ପଢ଼ି ଶୁଣାଇଦେଲେ । ପରେ ପ୍ରଜାମାନେ ତାହା ଶୁଣି କୃତଜ୍ଞ ହୃଦୟରେ ହରିଶଙ୍କରଙ୍କର ଅଜସ୍ର ପ୍ରଶଂସା କରିବାକୁ ଲାଗିଲେ । ଗୁମାସ୍ତାବାବୁ କହିଲେ—ଅହା ! ବାବୁ ଅତି ଦୟାବାନ୍ । ଏମିତି ଜମିଦାର ପାଇବା ଭାଗ୍ୟରେ ଥିଲେ ଘଟେ । ଆଜ ମୁଁ ବ କଣ ତୁମମାନଙ୍କ ପାଇଁ କମ୍ ଲଢ଼ିଛି ! ଯେତେ କହିବାର, ସବୁ କହିଛି । ବାବୁ ମୋତେ ଠିକଣାଶି କରି ସବୁ ପଚାରି ବୁଝିଲେ । ତୁମେମାନେ କିମିତିକା ଲୋକ, କାହାର ଅବସ୍ଥା କିମିତି;—କାହାର ଘର କିମିତି ଚଳେ, ଇତ୍ୟାଦି ଇତ୍ୟାଦି ଢେର ଢେର କଥା ପଚାରିଲେ । ମୁଁ ସବୁ ଠିକ୍ ଠିକ୍ କରି ବତେଇ ଦେଲି । କହିଲି—ଆଜ୍ଞା ଗରିବ ଗୁଡ଼ାକ, ହଜୁର ତାଙ୍କର ମା ବାପ । ସେମାନେ ବହୁତ ଦିନରୁ ଦରଖାସ୍ତ କରି ରହିଁ ରହିଛନ୍ତି । ମାମୁ ସାଆନ୍ତେ ଶୁଣୁ ନାହାନ୍ତି, ସେ ଖାଲି ସଂଜି ଭଳି ଧରି ବସିଛନ୍ତି । ହେଲେ, ଗରିବଗୁଡ଼ାକ କେଉଁଠୁ ଏତେ ଟଙ୍କା ପାଇବେ ଯେ ଧଳାମି ଦେବେ । ସେଗୁଡ଼ାକୁ ମାପ୍ ଦିଆଯାଉ । ହଜୁର ଲକ୍ଷପତି, ହଜୁରଙ୍କର କଣ ଅଭାବ ?—ଏହିପରି ଢେର ଢେର କଥା ମୋତେ କହିବାକୁ ପଡ଼ିଲା । ନ ହେଲେ ଏତେ ଦିନରୁ ଯାହା ହୋଇପାରୁ ନ ଥିଲା, ତା ଘଡ଼ିକ ଭିତରେ ହୋଇଯାନ୍ତା !

ପ୍ରଜାମାନେ କହିଲେ—ହଁ, ହଁ, ତା ଠିକ୍ । ରାଜାଙ୍କ ପାଖକୁ ସେହିପରି ମନ୍ତ୍ରୀ ନ ହେଲେ କି ଚଳେ ?

ତା ପରେ ଗୁମାସ୍ତା ବାବୁ ସେମାନଙ୍କ ପିଠିରେ ହାତମାରି ହସି ହସି କହିଲେ—ଆଉ ମୋ କଥାଟା କଣ ତୁମେମାନେ ପାସୋରି ପକେଇବ ନା ? ପେଟ ପାଟଣାତ ପୁଣି ସମସ୍ତଙ୍କର ଅଛି ଭାଇ ! ତୁମମାନଙ୍କଠାରୁ ଦି ପଇସା ନ ପାଇଲେ ମୁଁ କେମିତି ଚଳିବି କହିଲ ? ତୁମମାନଙ୍କର କି ଏତକ ବୁଝିବା ଉଚିତ ନୁହେଁ ?

ପ୍ରଜାମାନେ ମୁଣ୍ଡ ଝୁଙ୍କାଇ କହିଲେ—ହଁ ହଁ, ସେଟା ଆଉ କହିବ ନା ଗୁମାସ୍ତାବାବୁ । ଏହା କହି ସେମାନେ କିଛି କିଛି ଗୁମାସ୍ତା ବାବୁଙ୍କୁ ଦେବାକୁ ପ୍ରତିଶ୍ରୁତ ହେଲେ ।

ପ୍ରଜାମାନେ ଜମିଗୁଡ଼ିକ ଆପଣା ଆପଣା ଭିତରେ ପରସ୍ପରର ସଲାହାମତେ ବାଣ୍ଟି ନେଇ ଚାଷ କରିବାକୁ ଆରମ୍ଭ କରିଦେଲେ । ଏହାର କିଛି ଦିନ ପରେ ସଦାଶଙ୍କରଙ୍କୁ କାର୍ଯ୍ୟୋପଲକ୍ଷରେ ସୁଦୂର ସମ୍ବଲପୁରକୁ ଯିବାକୁ ପଡ଼ିଲା । ଯିବା ପୂର୍ବରୁ ସେ ସୁଷିକୁ କହିଲେ—ସୁଷି ମୁଁ ଏକା ଯାଉଛି, ବୋଧହୁଏ ଫେରିବାକୁ ଟିକିଏ ବିଳମ୍ବ ହେବ । ମାସେ ଦୁଇମାସ ଲାଗିଯାଇ ପାରେ । ମାମୁଁତ ଏପର୍ଯ୍ୟନ୍ତ ଜମିଦାରୀଗସ୍ତରୁ ଫେରିନାହାନ୍ତି । କେବେ ଫେରିବେ ତା ମଧ୍ୟ ଠିକ୍ ନାହିଁ । ଘରେ ରହିଲ, ମା ଆଉ ତମେ । ଯଦି ତମର କିଛି ଅଭାବ ଅସୁବିଧା ହୁଏ, ତା ହେଲେ ଲାଜ ବା ସଙ୍କୋଚ ନ କରି ମା'ଙ୍କୁ କହିବ । ସବୁ ଗୁମାସ୍ତାଙ୍କୁ ମୁଁ ମଧ୍ୟ କହି ଯାଉଛି,—ସେ ତୁମମାନଙ୍କର ତତ୍ତ୍ୱ ନେଉଥିବେ । ଆଉ କଣ ସୁଷି ?

ସୁଷି କହିଲା—ନା, ନା, କାହାରିକୁ କିଛି କହିବା ଦରକାର ନାହିଁ । ତେବେ—

ହରିଶଙ୍କର କହିଲେ—ହିଁ, କଣ କହୁଛ କୁହ, ଏତେ ସଙ୍କୋଚ କାହିଁକି ? ଏଇଟାହିଁ ତମର ଭାରି ଦୋଷ ।

ସୁଷମା ଉତ୍ତର ଦେଲା—ଏଠି ବସି ବସି ବଡ଼ ବକ୍ ଲାଗୁଛି—କିଛି କାମ ଦାମ ନାହିଁ । ଏମିତି କଟା ସମୟ—

ହରିଶଙ୍କର ହସି ହସି କହିଲେ—ଓହୋ ! ସମୟ କଟୁ ନାହିଁ, ନା ? ଅଚ୍ଛା, ତା ହେଲେ କଣ କରିବାକୁ କହୁଛ ?

ସୁଷମା ଜବାବ୍ ଦେଲା—ମା'ଙ୍କୁ ଏ ସମ୍ବନ୍ଧରେ କିଛି କହିଗଲେ ଭଲ ହୁଅନ୍ତା ନାହିଁ ?

ହରିଶଙ୍କର କହିଲେ —ଅଚ୍ଛା, କହିଦିବ । ସେଥିପାଇଁ ଚିନ୍ତା କର ନାହିଁ । ତେବେ ମୁଁ ଫେରିଆସିଲେ କାମର ହିସାବଟା ଦେବାକୁ ପଡ଼ିବ ।

ଏହା କହି ହରିଶଙ୍କର ହସିବାକୁ ଲାଗିଲେ । ସୁଷମା ମଧ୍ୟ ଟିକିଏ ହସିଲା । ତା ପରେ ହରିଶଙ୍କର ମା ସ୍ନେହପ୍ରିୟାଙ୍କ ନିକଟକୁ ଯାଇ କହିଲେ—ଶୁଣିଲଣି ମା !

ସ୍ନେହପ୍ରିୟା ପଚାରିଲେ—କଣ ରେ ହରି ?

ହରିଶଙ୍କର ଉତ୍ତର ଦେଲେ—ଏଇ ଯେ ତୋର ବୋହୂର ଆପତ୍ତି—

ସ୍ନେହପ୍ରିୟା ତୁରନ୍ତ ଶାସନ କରି କହିଲେ—ଚୁପ୍ !

ହରିଶଙ୍କର ଧମକ୍ ଖାଇ ବନ୍ଦ ହୋଇଗଲେ । କବାଟ ଅନ୍ତରାଳରେ ଥାଇ ସୁଷମା ଏସବୁ ଶୁଣି ମରିଯିବା ପରି ହେଲା ।

ସ୍ନେହପ୍ରିୟା କହିଲେ—ହିଁ ରେ ହରି, ସୁଷମା ତୋ ପାଖରେ କଣ ଆପତ୍ତି କରୁଛି ? ଏଠି ତାର କିଛି ଅସୁବିଧା ହେଉଛି ?

ହରିଶଙ୍କର କହିଲେ ଅସୁବିଧା ନୁହେଁ ମା, କିଛି କାମ ଦାମ ନାହିଁ ବୋଲି ସୁଷମାର ଯା ଆପତ୍ତି । ଅଚ୍ଛା, ତା ଉପରେ କିଛି କାମର ଭାର ଦେଲେ ହୁଅନ୍ତା ନି କି ?

ରାଧାପ୍ରିୟା ହସି ଉଠିଲେ । କହିଲେ—ଓଃ ଏତେ ବଡ଼ ଆପତ୍ତି ! ଅଚ୍ଛା, ମୁଁ ଡାକ ବୁଝୁଛି ଯା, ଏହା କହି ସେ ଡାକିଲେ—ସୁଷମା !

ଲଜ୍ଜାବନତମୁଖୀ ସୁଷମା ନିତାନ୍ତ ଅନିଚ୍ଛାସତ୍ତ୍ୱେ ଉପସ୍ଥିତ ହୋଇ କହିଲା—କଣ ମା ?

ରାଧାପ୍ରିୟା ପଚାରିଲେ—କାମ କରିବାକୁ ରାଜି, ସୁଷମା !

ତଳକୁ ଅନାଇ ସୁଷମା ଆସ୍ତେ ଆସ୍ତେ ଉତ୍ତର ଦେଲା—ହଁ ମା, ଯାହା କରିବାକୁ କହିବେ ତା କରିବ ।

ରାଧାପ୍ରିୟା ହସି ହସି କହିଲେ—ଅଚ୍ଛା ହେଉ । ଏ କପାଳକୁ ମୋର ପାଗଳା ଶିବଟାଏକ ଯେମିତି ମିଳିଛି, ତା ସାଙ୍ଗକୁ ତୁ ବି ଏକ ପାଗଳୀ ଆସି ଜୁଟିଛୁ ରେ !

ସୁଷମା ଏହା ଶୁଣି ନୀରବରେ ଚାଲିଗଲା । ରାଧାପ୍ରିୟା ସେ ଦିନ ଆଦେଶ ଦେଲେ—ପ୍ରତିଦିନ ସୁଷମାକୁ ତାଙ୍କର ପାଇଁ ତିରିଶ ଖଣ୍ଡ ପାନ ଭାଙ୍ଗିବାକୁ ହେବ, ଆଉ ସକାଳୁ ଗାଧୋଇ କୁଳଦେବତା ମଦନମୋହନଙ୍କ ପାଇଁ ଗୋଟିଏ ଫୁଲର ହାର ଗୁନ୍ଥିବାକୁ ହେବ । ଜାଗିରିଆ ମାଳୀ ଦେବାଳୟ ସଂଲଗ୍ନ ଉଦ୍ୟାନରୁ ପ୍ରତିଦିନ ଫୁଲ ତୋଳି ଆଣି ସୁଷମାର ହସ୍ତରେ ଅର୍ପଣ କରିଯିବ ।

ଏହି ବ୍ୟବସ୍ଥା ଅନୁଯାୟୀ ସୁଷମାକୁ ଚଳିବାକୁ ପଡ଼ିଲା । କିନ୍ତୁ ଏ କି ଗୋଟାଏ କାମରେ ଲେଖା ! ଯେ ଦିନେ ଏତେ କାମ କରୁଥିଲା ତା ପକ୍ଷରେ ଏ ଗୋଟାଏ ଖେଳ ଛଡ଼ା ଆଉ କଣ ହୋଇପାରେ ? ସୁଷମା ଏହି କାମ ପାଇଁ ଯେ ଆପତ୍ତି କରିଥିଲା ତା ନୁହେଁ । ତାର ଉଦ୍ଦେଶ୍ୟ ଥିଲା ଅନ୍ୟପ୍ରକାର । ଅନ୍ୟର ଅଶ୍ରିତା ହୋଇ ବସି ବସି କାଳକ୍ଷେପ କରିବାକୁ ତାକୁ ବଡ଼ କଷ୍ଟକର ବୋଧହେଉଥିଲା । ସେଠା ମଧ୍ୟ ତାକୁ ବଡ଼ ଅସୁନ୍ଦର ଦିଶୁଥିଲା । କୌଶଳପିକତେମ ସେ ନିଜକୁ

ଏ ଜମିଦାରପରିବାରର ଅଙ୍ଗ ବୋଲି ମନେ କରିପାରୁ ନ ଥିଲା । ପଣ୍ଡିତାର ନ୍ୟାଯ୍ୟ ଦାବି ଯାହା, ତା ଅପେକ୍ଷା ଅଧିକ କିଛି ଦାବି କରିବାଟା ତା ପକ୍ଷରେ ବଡ଼ ଅସଙ୍ଗତ ବୋଲି ସେ ଭାବୁଥିଲା । ଅନ୍ୟର ଜାଲଗ୍ରହ ଛଡ଼ା ସେ ନିଜକୁ ଅନ୍ୟ କୌଣସି ଚକ୍ଷୁରେ ଦେଖିପାରୁ ନ ଥିଲା । ହରଶଙ୍କରଙ୍କର ମନର କଥା ଅବଶ୍ୟ ତାଙ୍କୁ ଅଜଣା ନ ଥିଲା । କିନ୍ତୁ ସେଟା କେବଳ ମନର କଥାମାତ୍ର । ହରିଶଙ୍କରଙ୍କୁ ବାଦଦେଲେ ଏତେ ବଡ଼ ଦୁନିଆରେ ଆଉ କିଏ ଅଛି ଯେ ତା ମଞ୍ଜୁର କରିବାକୁ ପ୍ରସ୍ତୁତ ? ସେ ନିଜେ ବି ଏଟାକୁ ସ୍ୱୀକାର କରିବାର କୌଣସି ଉପାୟ ଦେଖୁ ନ ଥିଲା । ତେଣୁ ଅଶ୍ରିତାର କର୍ତ୍ତବ୍ୟ ସମ୍ପାଦନ କରି ଏ ଗୃହରେ ଦୀନଦୁଃଖୀ ପରି ଚଳିବାକୁ ସେ ଚାହୁଁଥିଲା । ଏ ସଂସାରରେ କେତେ ନିରାଶ୍ରୟା ଅନାଥିନୀ ତ ପୁଣି ସେହିପରି ଜୀବନ କାଟୁଛନ୍ତି । ତେବେ ଆଉ କଣ ?

ହରିଶଙ୍କର ଯିବା ପୂର୍ବରୁ ମା'ଙ୍କୁ ପ୍ରଣାମ କରି ବିଦାୟ ନେଲେ । କିନ୍ତୁ ପୁଷ୍ପିଠାରୁ ବିଦାୟ ନେବାବେଳେ ଅଳିଙ୍ଗନୋଦ୍ୟତ ପ୍ରଣୟୀର ନିକଟ ହେବାକୁ ପଡ଼ିଲା । ପୁଷ୍ପି ବାଧା ଦେଇ କହିଲା—ଛିଃ; ଥାଉ ।

ଫସ୍କାଗ୍ରପ୍ରିୟ ହରିଶଙ୍କର ଏଥିରେ କ୍ଷୁବ୍ଧ ହେଲେ । ହେବାର କଥା । ଚିରଜୀବନ କଣ ଏହି "ଛି—ଥାଉ"ର ସମ୍ମୁଖୀନ ହେବାକୁ ପଡ଼ୁଥିବ ? ପୁଷ୍ପି କେବେ କି ତାଙ୍କ ପଥରେ ପଥିକ ହୋଇ ପାରିବ ନାହିଁ ? ହରିଶଙ୍କରଙ୍କ ମନରେ ଏହି ସନ୍ଦେହର ଛାୟାପାତ ହେଲା । କିନ୍ତୁ ଏତେ କଥା ଭାବିବାକୁ ବର୍ତ୍ତମାନ ସମୟ କାହିଁ ? ସେ ମନର କ୍ଷୋଭ ମନରେ ରଖି ଅଳିଙ୍ଗନରୁ ନିରସ୍ତ ହେଲେ ।

ଅଧିକ ଡେରି କଲେ ଗାଡ଼ିପାଇବା ଅସମ୍ଭବ ହୋଇପାରେ ମନେ କରି ସେ ଶୀଘ୍ର ଘରୁ ବାହାରି ପଡ଼ିଲେ ।

---

# ତ୍ରୟୋଦଶ ପରିଚ୍ଛେଦ

ସ୍ୱାମୀପ୍ରିୟାଙ୍କ ସଂସାରରେ ସୁକ୍ଷିର ଦିନ ପରେ ଦିନ କଟିବାକୁ ଲାଗିଲା । ଯେତେ ଦିନ ଅତିବାହିତ ହେଲା ସେତେ ଦେଖା ସ୍ନେହ ମମତାର ବନ୍ଧନ ଉଭୟଙ୍କ ମଧ୍ୟରେ ଦୃଢ଼ୀଭୂତ ହେଲା । ସ୍ୱାମୀପ୍ରିୟାଙ୍କ ନିଃସଙ୍ଗ ଜୀବନରେ ସୁକ୍ଷିର ସଙ୍ଗଲାଭ ଯଥାର୍ଥରେ ଶୁଭନିର୍ଦ୍ଦେଶ ପରି ପ୍ରତିଭାତ ହେଲା । ସୁକ୍ଷି ସବୁବେଳେ ତାଙ୍କର ମନ ନେଇ କାର୍ଯ୍ୟ କରେ । ସୁକ୍ଷିକୁ ପାଖରୁ ଛାଡ଼ିବାକୁ ସ୍ୱାମୀପ୍ରିୟାଙ୍କର ଇଚ୍ଛା ହୁଏ ନାହିଁ । ନିଜର ଆଦରଣୀ କନ୍ୟାକୁ ମୁଦ୍ଧା ଲୋକେ ଏତେ ଆଦର କରନ୍ତି କି ନା ସନ୍ଦେହ । ସୁକ୍ଷି ଯାହା କରେ ସ୍ୱାମୀପ୍ରିୟାଙ୍କ ଦୃଷ୍ଟିରେ ତା ସୁନ୍ଦର; ସୁକ୍ଷି ଯାହା କହେ, ସ୍ୱାମୀପ୍ରିୟାଙ୍କ କର୍ଣ୍ଣରେ ତାହା ମଧୁର ହୋଇ ବାଜେ । ସୁକ୍ଷି ପୂର୍ବ ନିର୍ଦ୍ଦେଶମତେ ପ୍ରତିଦିନ ତିନିଖଣ୍ଡ ପାନ ଭିଡ଼ିଦିଏ । ସ୍ୱାମୀପ୍ରିୟା ସେ ତିନିଖଣ୍ଡ ପାନ ଖେଳଛଳରେ ଧରିନ ଧରିନ ଆଦର ମାରି ଖାଆନ୍ତି । ପାନ ଖାଇବା ବିଷୟରେ ସେ ଧୁରନ୍ଧର । ଉତ୍କଳର ପାନରସିକା ରମଣୀମାନଙ୍କ ନାମ ତାଲିକାରେ ତାଙ୍କର ନାମ ଅଗ୍ରଗଣ୍ୟ । ପାନ ଖୋଇବା ଉପଯୋଗିତାରେ କେହି ଯେ ତାଙ୍କୁ ହଟେଇଦେଇପାରେ, ତା ନୁହେଁ । ପାନର ମହତ୍ତ୍ୱ ସ୍ୱାମୀପ୍ରିୟା ଯେପରି ବୁଝନ୍ତି ଅନ୍ୟ କେହି ସେପରି ବୁଝିବାକୁ ସମର୍ଥ ବୋଲି ମନେ ହୁଏ ନାହିଁ । ଏଇଟା ତାଙ୍କର ଜୀବନର ଏକମାତ୍ର ବିଳାସ । ସେଥିପାଇଁ ତାମ୍ବୂଲ ସମ୍ବନ୍ଧୀୟ ସମସ୍ତ ସରଞ୍ଜାମ ସବୁବେଳେ ମହଜୁଦ ହୋଇ ରହିଥାଏ । ବାରମାସ ପାଇଁ କେତକୀ ଖଇର ପ୍ରସ୍ତୁତ ହୋଇ ତାଙ୍କ ପାଇଁ ରଖା ହୋଇଥାଏ;—ସୁନ୍ଦର ସୁବାସିତ ଗୁଆଚୋବା ଗୁଣ୍ଡିମସଲା କେବେହେଲେ ସବୁ ଘାଡ଼ ନ ଥାଏ । ଅନ୍ତ ପରିପାଟି ସହକାରେ ସେ ସୁବାସିତ ଗୁଣ୍ଡିମସଲା ବଟୁଆରେ ଏକ ପ୍ରକାଣ୍ଡ ବାକ୍ସି

ଚିରଜୀବନର ଅଭିଜ୍ଞତା ନେଇ ବିଚାର କରେ । ରାଧାପ୍ରିୟାଙ୍କ ତାମ୍ବୁଲ ସେବନପାଇଁ ଯେତେ ବିଧିବ୍ୟବସ୍ଥା ଅବଲମ୍ବନ କରାଯାଇଥାଏ ଗୋଟାଏ ରାଜ୍ୟଶାସନ ପାଇଁ ବୋଧହୁଏ ସେତେ ବିଧି ବ୍ୟବସ୍ଥାର ପ୍ରୟୋଜନ ହୁଏ ନାହିଁ । ସେଥିରେ ସାମାନ୍ୟ ଦୋଷ ତ୍ରୁଟି ଘଟିଲେ ତାହା ଅମାର୍ଜନୀୟ ଅପରାଧ ବୋଲି ବିବେଚିତ ହୁଏ । ଅବିଶ୍ରାନ୍ତ ତାମ୍ବୁଲଚର୍ବଣ ଫଳରେ ରାଧାପ୍ରିୟାଙ୍କ ଦନ୍ତମାଳା ନୀଳକାନ୍ତମଣିର ଯେଉଁ ଦିବ୍ୟ ଦୀପ୍ତି ବିସ୍ତାର କରେ ତା ସହଜରେ ଅନୁମେୟ । ଜୀବନର ସାମାନ୍ୟ ଅଠ ଦଶ ବର୍ଷ ଛାଡ଼ିଦେଲେ, ଅନ୍ୟୂନ ପଞ୍ଚବିଂଶ ବର୍ଷର ପୁଟପାକ ସେହି ଦନ୍ତମାଳାର ବିଶେଷତ୍ୱ ।

ସୁଷି ରାଧାପ୍ରିୟାଙ୍କର ଏହି ତାମ୍ବୁଲ ସେବନ ବ୍ୟାପାରରେ ପରମ ସାହାଯ୍ୟକର୍ତ୍ରୀ । ଏ ଦିଗରେ ତାର ଯତ୍ନର ଅଣୁମାତ୍ର ତ୍ରୁଟି ନ ଥାଏ । ସୁଷିର ହାତଭଙ୍ଗା ପାନ ବଡ଼ ସ୍ୱାଦୁ ଲାଗେ, ରାଧାପ୍ରିୟାଙ୍କ ତୁଣ୍ଡରେ ତାହା ଅମୃତବତ୍ ପ୍ରତୀୟମାନ ହୁଏ । ଯେଉଁ ଦିନ ଫର୍ଦ୍ଦା ଛିଣ୍ଡେଇକୁ ଚିପିଯାଏ, ସେ ଦିନ ସୁଷମା ହସି ହସି କହେ,—"ଏଥର ଆଉ ରକ୍ଷା ନାହିଁ ମା, ଗୋଟାଏ ଗୋଟାଏ ଦିନରେ ଗୋଟାଏ ଗୋଟାଏ ପାନବରଜ ଉଜ୍ଜାଡ଼ି ନିକାଶ କରିଦେବ ଜଣା ଗଲାଣି । କେତେ ପାନ ଖାଅ ମା !" ରାଧାପ୍ରିୟା କହନ୍ତି—'ଦୂର୍ ପାଗଳୀ, ତୁ ପାନର ମଜା କଣ ବୁଝିବୁ ରେ ? ଦିନେ ତ ତୁଣ୍ଡେ ଦେଲେ ପାନ ସେ ତୁଣ୍ଡ ଛୁଇଁବ ନାହିଁ । ଦାନ୍ତଗୁଡ଼ାକ କରି ରଖିଛୁ ଯେମିତ ଗୋରୁର ହାଡ଼, ଆଖିରେ ଦେଖିବାକୁ ବି ଇଚ୍ଛା ହେବ ନାହିଁ । ଭଗବାନ ଯିଏ ତୋତେ ତାଳମ୍ବଞ୍ଜି ପରି ଏଡ଼େ ସୁନ୍ଦର ଦାନ୍ତଗୁଡ଼ାଏ ଦେଇ ତାର ମର୍ଯ୍ୟାଦା ରକ୍ଷା କରିବାକୁ କଣ ଟିକିଏ ହେଲେ ବୁଦ୍ଧି ଦେଇ ନାହାନ୍ତି ।' ସୁଷି ହସି ହସି ଜବାବ ଦିଏ—'ତା ହେଲେ ଦାନ୍ତର ରଙ୍ଗଟା କଣ ଗୋବର ପରି ହେବା ଉଚିତ ମା ?' ରାଧାପ୍ରିୟା କହନ୍ତି—'ତା

ନୁହେଁ ତ ଆଉ କଣ ? ଆଜିଠୁ ଖଟେଣ୍ଟେ ଖଟେଣ୍ଟେ ପାନ ଖାଇବା ଶିଖ୍, ସେଥିରେ ଡେର ଲାଭ ଅଛି ।' ସୁଷି ଉତ୍ତର ଦିଏ—'ଛୁଃ, ଏ ଜନ୍ମରେ ନୁହେଁ ।' ଶ୍ୟାମପ୍ରିୟା ନିରାଶ ହୋଇ ମନ୍ତବ୍ୟ ବାଢ଼ନ୍ତି—'କି ଦୁର୍ବୁଦ୍ଧି ଏ ଝିଅଟାର ! ଭାବ ଦୁଃଖୀ ହୁଏ,—ଯେ ଏତେ ସୁନ୍ଦର ପାନଭଙ୍ଗି ପାରେ, ସେ ପାନ ଖାଇ ଜାଣେ ନାହିଁ ।'

ଏଇ ପାନଭଙ୍ଗିବା ଏବଂ ମଦନମୋହନଙ୍କ ପାଇଁ ଫୁଲହାର ଗୁନ୍ଥିବା,—ଏଇ ଦୁଇଟାମାତ୍ର କାର୍ଯ୍ୟ ଶ୍ୟାମପ୍ରିୟାଙ୍କ ଆଦେଶରେ ଥିଲା ସୁଷିର ଅବଶ୍ୟ କର୍ତ୍ତବ୍ୟ; ସେଥିରୁ ଦେଖି କେହି ପ୍ରତ୍ୟାଶା କରୁ ନ ଥିଲେ ମଧ୍ୟ ସୁଷି ନିଜ ଇଚ୍ଛାରେ, ଏପରିକି ସମୟ ସମୟରେ ଅଳି କରି ଶ୍ୟାମପ୍ରିୟାଙ୍କ ସମ୍ମତି ନେଇ ଅଧିକ କିଛି କିଛି କରେ । ଶ୍ୟାମପ୍ରିୟା ଆରିଷାପିଠାକୁ ବଡ଼ ଭଲ ପାଆନ୍ତି । ସୁଷି ଭଲ ଆରିଷାପିଠା କରି ଜାଣେ । ଦିନେ ଦିନେ ସେ ପ୍ରସ୍ତାବ କରେ—'ମା, ଆଜି ଦିଟା ଆରିଷାପିଠା କଲେ ଭଲ ହୁଅନ୍ତା ନା କି ?' ଶ୍ୟାମପ୍ରିୟା ବାହାରକୁ ଟିକିଏ ଔଦାସିନ୍ୟ ଦେଖାଇ କହନ୍ତି—କାହିଁକି ଏତେ ହିଂହିଂକୁ ଯିବୁ ମା ? ସେଥିରେ କଣ କମ୍ ପରିଶ୍ରମ ? ସୁଷି କହେ—ପରିଶ୍ରମ କଣ ଅଛି ମା ? ଗୁଡ଼ଉଳଚୁନାତ କୁଟୁଣୀମାନେ କୁଟି ଦେବେ, ଆଉ କଣ ? ଶ୍ୟାମପ୍ରିୟା ଆଦେଶ ଦିଅନ୍ତି—'ତା ହେଲେ ତୋର ଯଦି ମନ ହେଉଛି, ଦିଟା କର ।' କିନ୍ତୁ ପ୍ରକୃତରେ ମନଟା ଶ୍ୟାମପ୍ରିୟାଙ୍କର ହୁଏ । ଚତୁର ସୁଷମା ତା ବୁଝିପାରେ । ସେଥିରେ ମାତିଯାଏ । କୁଟୁଣୀମାନଙ୍କୁ ଲଗାଇ ଗୁଡ଼ଉଳଚୁନା କୁଟି ପାଗଯାଚ ଆରିଷା ଛାଙ୍କି ଗଳଦ୍‌ଘର୍ମ ହୋଇ ତହିଁରେ ଆନନ୍ଦ ଅନୁଭବ କରେ । ଛଙ୍କା ସରିଲେ ଭଲ ଭଲ ପିଠା ବାଛି ଟିକିଏ ଥଣ୍ଡାକର ଥାଳିରେ ସଜେଇନେଇ ଶ୍ୟାମପ୍ରିୟାଙ୍କ ପ୍ରକୋଷ୍ଠକୁ ଯାଇ ଡାକ ଦିଏ—ମା । ଶ୍ୟାମପ୍ରିୟା କହନ୍ତି—'ଆଉ ରଖିଦେବୁ ନାହିଁ ରେ ତୁ । ଏ ମଧ୍ୟରେ

ଏତେ କାଣ୍ଡ କରି ବସିଛୁ ?' ତା ପରେ ସ୍ୱର୍ଣ୍ଣପ୍ରିୟା ଅନେକ ପିଠା ଗୁଡ଼ିକର ସଦ୍‌ବ୍ୟବହାର କରି ଖୁସି ହୁଅନ୍ତି । ଦିନେ ସ୍ୱର୍ଣ୍ଣପ୍ରିୟା ଧରି ବସିଲେ—'ସୁଷମା, ଆଜି ତୋତେ ମୋ ସାଙ୍ଗରେ ଖାଇବାକୁ ହେବ ମା ।' ସୁଷମା ବଡ଼ ମୁସ୍କିଲରେ ପଡ଼ିଲା । କିଛି କାମୁଡ଼ି ପଳେଇବାକୁ ଇଚ୍ଛା କଲା । କିନ୍ତୁ ସ୍ୱର୍ଣ୍ଣପ୍ରିୟା ଜିଗର କଲେ—ତା ନ ହେଲେ ଖାଇବି ନାହିଁ, ତୋ ପିଠା ତୋର ଥାଉ । ଅଗତ୍ୟା ସୁଷି ଆଉ ଗୋଟାଏ ପାତ୍ର ଆଣି ପାଖରେ ବସି ଖାଇବାକୁ ପ୍ରସ୍ତୁତ ହେଲା । ସ୍ୱର୍ଣ୍ଣପ୍ରିୟା କହିଲେ—'ନା, ତା ଚଳିବ ନାହିଁ ।' ସୁଷି ଚକିତା ହୋଇ ପଚାରିଲା—ଆଉ କଣ ମା ? ସ୍ୱର୍ଣ୍ଣପ୍ରିୟା କହିଲେ—'ଗୋଟାଏ ଥାଳିରେ ତ ଆଣିଛୁ, ଆଉ ଗୋଟାଏ କଣ ହେବ ଲୋ ପାଗଳୀ ?' ସୁଷି ବିସ୍ମୟ ପ୍ରକାଶ କରି ଉତ୍ତର ଦେଲା—ତା କି ହୁଏ ମା ? ସ୍ୱର୍ଣ୍ଣପ୍ରିୟା ଜୋର ଗଳାରେ କହିଲେ—'ଖୁବ୍ ହୁଏ, ଝିଅ ପୁଅ ଲୋକ ! ସେମାନଙ୍କର ଗୋଟାଏ ଜାତିର ବିଚାର କଣ ?' ଏହା କହି ସେ ସୁଷିର ହାତଧରି ଜୋର କରି ଟାଣିନେଇ ବସାଇଲେ । ନିରୁପାୟ ସୁଷି ଗୋଟେଇ ପାଟେଇ ଖାଇବାକୁ ଲାଗିଲା । ତାର ସଙ୍କୋଚ ଦେଖି ସ୍ୱର୍ଣ୍ଣପ୍ରିୟା କହିଲେ—'ଏତେ ଡରି ଡରି ଖାଉଛୁ ଯେ ମା ! ଅଭିଆଡ଼ା ହିଅର ଜାତ ଧସିଯାଏ ନାହିଁ ବୋଲି ଯେ ମୁଁ କହୁଛି, ସେଟା କି ତୋର ବିଶ୍ୱାସ ହେଉ ନାହିଁ ?' ଏହା କହି ସେ ଗୋଟାଏ ପିଠାଧରି ନିଜ ହାତରେ ସୁଷିର ତୁଣ୍ଡରେ ଭର୍ତ୍ତି କରିଦେଲେ । ସୁଷି ବ୍ୟସ୍ତହୋଇ ଆଣି ଗ୍ଲାସଟା ପାଖକୁ ଘୁଞ୍ଚାଇଦେଇ କହିଲା—ହାତଟା ଧୋଇପକାଅ ମା । ସ୍ୱର୍ଣ୍ଣପ୍ରିୟା ଗର୍ଜନ କରି ଉଠିଲେ—ସେମିତି କଥା ଆଉ କହିବୁ ନାହିଁ ସୁଷି, ଖବରଦାର ।

କ୍ରମେ ସ୍ୱର୍ଣ୍ଣପ୍ରିୟାଙ୍କ ଇଚ୍ଛାରେ ଦୁଇ ପଠଦନରେ ଥରେ ପରଷ୍ଟା ପିଠା ହେବାର ବ୍ୟବସ୍ଥା ହେଲା । ସୁହାସିନୀର ସମସ୍ତେ ଏ

ସୁବ୍ୟବସ୍ଥାରେ ଯତ୍ପରୋନାସ୍ତି ସନ୍ତୁଷ୍ଟ । ଦାସଦାସୀମାନେ ସପ୍ତାହରେ ସେହି ସୌଭାଗ୍ୟର ଦିନଟାକୁ ସତୃଷ୍ଣ ପ୍ରାଣରେ ଚାହିଁ ରହିଥାନ୍ତି । ସେ ଦିନଟା ଆସିଲେ ସମସ୍ତେ ସେପରି ବଡ଼ ତତ୍ପର ହୋଇ ଉଠନ୍ତି । ସୁପିଙ୍କୁ ସାହାଯ୍ୟ କରିବାପାଇଁ ସମସ୍ତେ ବ୍ୟାକୁଳ ହୋଇପଡ଼ନ୍ତି । ସୁପି ଯାହା ଦରକାର କରେ ତାହା ସଙ୍ଗେ ସଙ୍ଗେ ଆସିଯାଏ । ଏପରିକି ସ୍ୱୟଂ ଗୁମାସ୍ତା ପର୍ଯ୍ୟନ୍ତ ଏ ଦିଗରେ ଅକ୍ଳାନ୍ତ ହୋଇପଡ଼ିବାର ଦେଖାଗଲା । ସୁପି ଏହି ଗୁମାସ୍ତାବାବୁଟିର କଥା ବି ଭୁଲେ ନାହିଁ । ସମସ୍ତଙ୍କୁ ସେ ଆପଣାର ପର ଦେଖେ । ପ୍ରତିଥର ଗୁମାସ୍ତାବାବୁଙ୍କ ପାଇଁ ଥାଳିରେ ସଜାଇ ରୁମାଲ ଢାଙ୍କି ପାଞ୍ଚଗଣ୍ଡା ଅଣ୍ଡା ପଠାଇଦିଏ । ସ୍ୱୟଂ ତା ଆନନ୍ଦରେ ଗଦ୍ଗଦ ହୋଇ କହନ୍ତି—'ଲକ୍ଷ୍ମୀହାତଟାଏ ଦେଖିଲ ଏଟା' । ଜମିଦାରବାବୁଙ୍କ ଘରେ ଗୋଟାଏ ବହୁଦିନର ନୌକର ଅଛି । ନାମଟା କାର୍ତ୍ତିକେୟ । କିନ୍ତୁ ଯଥାର୍ଥରେ ସେ ନାମଟା କ୍ୱଚିତ୍ ଲୋକେ କୀର୍ତ୍ତନ କରନ୍ତି । ଅଧିକାଂଶ ତାକୁ ପେଟୁରାମ ବୋଲି ଡାକନ୍ତି । ଲୋକଟା ଟିକିଏ ଉଦରସର୍ବସ୍ୱ, ତେଣୁ ଏ ବଦନାମ୍ । ଅବଶ୍ୟ ପିଠା ଦିନ ସେ ଆଉ ଘର ଛାଡ଼ି ପାଦେ ସୁଦ୍ଧା ବାହାରକୁ ଯାଏ ନାହିଁ । ସବୁବେଳେ ସୁପିର ପିଛା ଧରି ବୁଲୁଥାଏ । ଯେପରି ଗୋଟାଏ ନିତାନ୍ତ କୃତଜ୍ଞ ପୋଷା ଶ୍ୱାନ । ତା ଦେଖି ଅନ୍ୟାନ୍ୟ ଚାକରବାକରମାନେ ଟାହିଲି କରନ୍ତି । ରତନ ବାରିକ କହେ—ସେଇଟାକୁ ଟୋଇପୋଖାଏ ଘାଣ୍ଟି ଦେଇପାରୁ ନାହିଁ ସୁପି ଅପା, ଟାଇମାର ହୋଇ ପଡ଼ନ୍ତା । ଦେହଆଟା ପିଠା ନ ହେଉଣୁ ଅଧେ ପଶିଯାଉଛି । ଭୀମଦେବଯୋଗ ହୁଙ୍କାର ଉଠେ—"ହଁ, ଅପା ଖାଲି ଠାର ଦିଅନ୍ତେ ଯେ, କୁଶଳ ପୁଅକୁ ଦେଖି ଦିଅନ୍ତି ।" ନେଉଳୀ ମା ଦାସୀ କହେ—"ରଙ୍କା ପଡ଼ୁ, ରଙ୍କା ପଡ଼, ଖାଇବ ବୋଲି ପାଟିରୁ ଝଳସୀଏ ଲାଳ ଗଡ଼େଇଲାଣି, ମଣୁନାହିଁରେ ଲଙ୍କୁଣୀ ପେଟୁ ! ଅପା ସାଆନ୍ତାଣୀ ତ ସମସ୍ତଙ୍କୁ ଦେଉଛନ୍ତି, ଦେବେ ।

ଠିକଏ ଥସ୍ତ ଧର । ମୁଁ ହୋଇଥିଲେ କେଉଁ କୁଣ୍ଡାରେ ସେ ଘୋଡ଼ାମୁହାଁଙ୍କୁ ଠେଙ୍କି ଦଅନ୍ତି; ପୁଅର ଅପେଖାଖାଇବା ଖୋଇ ଗଡ଼ଯାଅନ୍ତା ।” ଏସବୁ କହିଲୁ, ସମାଲୋଚନା, ଠଟ୍ଟା, ବିଦ୍ରୂପ ପେନୁଲମ ବାରପତ୍ର ପଛକୁ ପକେଇଦେଇ ଅନନ୍ୟମନା ହୋଇ ଏକ ଆଦର୍ଶର ଅନୁସରଣ କରି ସୁସ୍ଥିର ପଦେ ପଦେ ଲଢି ରହିଥାଏ । କହେ—ବୁଝିଲ ନା ସୁଷି ଅପା, ଯେଗୁଡ଼ାକ ଈର୍ଷାରେ ଜରଜର ହୋଇ ମରନ୍ତି ସେଗୁଡ଼ାଙ୍କ କଥାରେ କାନଦେବା ଅଧର୍ମ । ଭଗବାନ୍ ସେଗୁଡ଼ାଙ୍କୁ ଭୁକିବାକୁ ସୃଷ୍ଟି କରିଛନ୍ତି, ଭୁକୁଥାନ୍ତୁ; ପେନୁରମ୍ ରଥ ଚାଲିଥାଉ ।

ଏହିପରି ସୁଷିର ଅନେକ ପରିମାଣରେ ଭୟସଙ୍କୋଚ ଦିନକୁ ଦିନ ଦୂର ହୋଇଯାଏ । ରାଧାପ୍ରିୟାଙ୍କ ଘରେ ପ୍ରବେଶ କଲାପରେ ପ୍ରଥମେ ତାର ଯେତେ ପରିମାଣରେ କଡ଼ାଛଡ଼ା ପାଖଛଡ଼ା ଭାବ ଥିଲା, ବର୍ତ୍ତମାନ ସେତେ ପରିମାଣରେ ନାହିଁ । ସେ ଆଉ ତେତେ ଦୂରେ ଦୂରେ ରହିବାକୁ ଚାହେଁ ନାହିଁ,—ରହିପାରେ ନାହିଁ ମଧ୍ୟ । ଠିକଏ ଦୂରକୁ ଖସିଗଲେ, ରାଧାପ୍ରିୟା ଯେପରି ତାକୁ ପାଖକୁ ଆକର୍ଷଣ କରି ଆଣନ୍ତି । ରାଧାପ୍ରିୟାଙ୍କୁ ସେ ଅସ୍ୱୀକାର କରି ପାରେନି । ଏ ଗୃହ-ସଂସାରକୁ ନିଜର ବୋଲି ମନେ କରିବା ତା ପକ୍ଷରେ କଷ୍ଟକର ହେଲେ ସୁଦ୍ଧା, ଏହା ଏକାବେଳକେ ଅଲଗା ପରି ତା ନିକଟରେ ପ୍ରତୀୟମାନ ହୁଏ ନାହିଁ । ଆଶ୍ରିତା ହେଲେ ମଧ୍ୟ ସେ ନିତାନ୍ତ ଘୃଣିତା ବା ଅବଜ୍ଞାତା ନୁହେଁ । ତେବେ ସେ ଦୟାର ପାତ୍ରୀ ହୋଇପାରେ । କିନ୍ତୁ ଦୟାର ପାତ୍ରୀ ହେବା ଛଡ଼ା ସେ ଏ ଦୁଆରଠାରୁ ଅଧିକ କଣ ଦାବୀ କରିପାରେ ? ସେହି ଦୟା ସେ ନିଜଗୁଣରେ ଆକର୍ଷଣ କରିବାକୁ ଚେଷ୍ଟାକରେ ଏବଂ ତାର ଚେଷ୍ଟା ବ୍ୟର୍ଥ ହୁଏ ନାହିଁ ।

ରାଧାପ୍ରିୟାଙ୍କର ଦେହ ଯେତେବେଳେ ଯେମିତି ଅସୁସ୍ଥ ହୋଇପଡ଼ିଲେ ସୁଷମା ତାଙ୍କର ଯଥାସାଧ୍ୟ ଶୁଶ୍ରୂଷା କରେ । ପ୍ରାୟ

ସବୁବେଳେ ପାଖରେ ବସିଥାଏ । ରୋଗୀର ଶୁଶ୍ରୂଷା କରିବାରେ ଏତେ ନିଷ୍ଠା ଅନ୍ୟ ଲୋକଠାରେ କ୍ୱଚିତ୍ ଦେଖାଯାଏ । ସୁଷି ସେଥିରେ ଅଭ୍ୟସ୍ତ । ପିଲାଦିନରୁ ତାର ସେ ଅଭ୍ୟାସ । ତାର ମା ଥିଲେ ଚିରରୁଗ୍ଣା । ବାତରୋଗରେ ତାଙ୍କୁ ଅନେକ ସମୟରେ ଭୋଗିବାକୁ ପଡୁଥିଲା । ସୁଷି ଥିଲା ତାଙ୍କର ଏକମାତ୍ର ଶୁଶ୍ରୂଷାକାରିଣୀ । ମା ରୋଗ ବାଧକରେ ପଡ଼ିଲେ ଦିନ ନାହିଁ, ରାତି ନାହିଁ, ସେ ସବୁବେଳେ ବିଛଣାଟି ପାଖରେ ଜଗି ବସିଥାଏ, ବରାବର ସତର୍କ ଦୃଷ୍ଟି ଦେଇଥାଏ । ନିଜର ସୁବିଧା ଅସୁବିଧା କଥା ଭୁଲିଯାଏ । ଆହାର ନିଦ୍ରା ପର୍ଯ୍ୟନ୍ତ ସେ ବେଳେ ବେଳେ ତ୍ୟାଗ କରିଦିଏ । ଏହା ତା ପକ୍ଷରେ ନୂଆ କଥା ନୁହେଁ । ସୁଧାପ୍ରିୟା ତାର ଏ ନିଷ୍ଠାପରତା ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ରୋଗଶଯ୍ୟା ପାଖରେ ସୁଷମା ଦେବଦୂତକୀ ପରି ବୋଧହୁଏ । ତାର ସ୍ନିଗ୍ଧ ମଧୁର ଦୃଷ୍ଟିରେ ରୋଗର ଯନ୍ତ୍ରଣା କମିଯାଏ । ରୋଗୀର ଦେହରେ ତାର କୋମଳ ହାତଟି ବାଜିଲେ ରୋଗ ଯେପରି ଯାଦୁବଳରେ ଉଡ଼ିଯାଏ । ସୁଧାପ୍ରିୟା ତାର ଏ ଅସାଧାରଣ ଶକ୍ତି ଲକ୍ଷ୍ୟକରି ମୁଗ୍ଧ ହୁଅନ୍ତି । ରୋଗୀର ରୋଗଶଯ୍ୟା ପାଖରେ ସୁଷମା ପରି ଶୁଶ୍ରୂଷାକାରିଣୀ ଥିଲେ ଔଷଧର ବା ବୈଦ୍ୟର ପ୍ରୟୋଜନ ନାହିଁ ବୋଲି ତାଙ୍କର ମନେ ହୁଏ । ମନେ ମନେ ସେ ସୁଷମାର କେତେ ଯେ ପ୍ରଶଂସା କରନ୍ତି ତା କଥାରେ କହି ହେବ ନାହିଁ । ରୋଗଶଯ୍ୟାରୁ ଉଠି ସୁଧାପ୍ରିୟା ଦିନେ ବିହ୍ୱଳପ୍ରାଣରେ କହି ପକାଇଲେ—'ସୁଷି ରେ ! ମାଆ ରେ ! ମୋର ଲକ୍ଷ୍ମୀପ୍ରତିମାଟି ରେ ! ବ୍ରାହ୍ମଣଘରେ ଜନ୍ମ ହୋଇ ପାରିଲୁ ନାହିଁ ମା ? ଭଗବାନ ତୋତେ ଏତେ ଗୁଣଗ୍ରାମ ଦେଇ ଶୂଦ୍ରଘରେ ଜନ୍ମଦେଲା' ଏହା କହି ସେ ସୁଷମାକୁ କୋଳକୁ ଟାଣିନେଇ ତାର ଲଲାଟ ଚୁମ୍ବନ କଲେ । ସୁଷମାର ମର୍ମଦେଶ ବିଯୋଭିତ କରି ଗୋଟିଏ କରୁଣ ନିଃଶ୍ୱାସ

ବାହାର ଆସିବାକୁ ଉପକ୍ରମ କଲା, ମାତ୍ର ସେ ତାକୁ ବଳପୂର୍ବକ ରୁଧି ରଖିଲା ।

ସୁଷମାଠାରୁ ବିଦାୟ ନେଇ ସେ ଦିନ ହରଶଙ୍କର ଆସି ଗାଡ଼ି ଚଢ଼ିଲେ । ସେ ଦିନ ଗାଡ଼ି ଡେରିରେ ଆସିଲା । ହରଶଙ୍କର ଷ୍ଟେସନରେ ପହୁଞ୍ଚିବାବେଳକୁ ଲାଇନ୍ କ୍ଲିଅର ଘଣ୍ଟାପର୍ଯ୍ୟନ୍ତ ହୋଇନାହିଁ । ତାଙ୍କୁ ଅପେକ୍ଷା କରିବାକୁ ପଡ଼ିଲା । ଇଣ୍ଟରକ୍ଲାସ ମୁସାଫିରଖାନାରେ ଗୋଟାଏ ଛାରପୋକମୟ ଅପ୍ରିୟ ଚେୟାରରେ ବସି ଟିକିଏ ବିଶ୍ରାମ ଲାଭର ଚେଷ୍ଟା କଲେ । କିନ୍ତୁ ଛାରପୋକଗୁଡ଼ାକର ଉପଦ୍ରବରେ ଅସ୍ଥିର ହୋଇ ସେ ବିରକ୍ତ ମନରେ ଉଠିଲେ । ବେଡିଙ୍ଗ୍ ଖୋଲି ଅଧାଅଧି ଗୋଟାଏ କୋଣରେ ପାରିଦେଇ ତାହାର ଉପରେ ଅର୍ଦ୍ଧଶୟାନ ଅବସ୍ଥାରେ ଢଳି ରହିଲେ । ଅଙ୍ଗ ପ୍ରତ୍ୟଙ୍ଗ ବିଶ୍ରାମ ଲାଭକଲା କି ନ କଲା ତା ସେହି ଅଙ୍ଗ ପ୍ରତ୍ୟଙ୍ଗହିଁ ଜାଣନ୍ତି, କିନ୍ତୁ ମନଟା ତିଳାର୍ଦ୍ଧେ ବିଶ୍ରାମ ପାଇଲା ନାହିଁ । ରାସ୍ତାସାରା ମୋଟରରେ ଆସୁ ଆସୁ ଯେଉଁ ଚିନ୍ତା ତାଙ୍କୁ ଘରୁ ଷ୍ଟେସନ ପର୍ଯ୍ୟନ୍ତ ଗ୍ରାସକରି ବସିଥିଲା, ଏହି ମୁସାଫିରଖାନାରେ ବି ତାହା ମୁସାଫିରଙ୍କୁ ତ୍ୟାଗ କଲା ନାହିଁ । ହରଶଙ୍କର ଭାବିଲେ ସୁଷମାର ପ୍ରତ୍ୟାଖ୍ୟାତ ସେହି ବିଦାୟ ଆଲିଙ୍ଗନର କଥା । ଯେତେ ଥର ସେ ସୁଷମା ନିକଟରେ ପ୍ରଣୟ ନିବେଦନ କରିବାକୁ ଯାଇଛନ୍ତି, ସେତେ ଥର ସେ ବିଫଳ ହୋଇଛନ୍ତି । ଛୁଇଁ ଧରିଦେବାକୁ ରୁଚେ ନାହିଁ । ସ୍ତ୍ରୀର ଅଙ୍ଗସ୍ପର୍ଶ କରିବାକୁ ଯେପରି ସ୍ୱାମୀର ଅଧିକାର ନାହିଁ ! ଆଦର ଆପ୍ୟାୟନ କରିବାକୁ ଯେପରି ସେ ଯୋଗ୍ୟ ନୁହେଁ । ସାମାନ୍ୟ ଗୋଟାଏ ଅଙ୍ଗସ୍ପର୍ଶ ପର୍ଯ୍ୟନ୍ତ ତାହାର ଦୋଷଟା ଯେପରି ତା ପକ୍ଷରେ ଧୃଷ୍ଟତା । ସୁଷମା କାହିଁକି ତାଙ୍କୁ ଏପରି ଚକ୍ଷୁରେ ଦେଖେ ? ହରଶଙ୍କର ବ୍ୟଥିତ ପ୍ରାଣରେ ଭାବିଲେ—'ଅବଶ୍ୟ ସୁଷମା ନିଷ୍ପାପ

ନିଷ୍କଳଙ୍କ ପ୍ରତିମା । ନିର୍ମଳ ଦର୍ପଣ ପରି ତାର ଚରିତ୍ର,—ସ୍ୱଚ୍ଛ, ସୁନ୍ଦର, ଝକ୍‌ଝକ୍ । ଧୂଳି ନାହିଁ, ମଳି ନାହିଁ, ସ୍ୱାଭାବିକ ସ୍ୱଚ୍ଛତାରେ ତା ଦୀପ୍ତ, ଉଜ୍ଜ୍ୱଳ । ତା ବୋଲି କଣ ଦୁନିଆର ଅନ୍ୟ ଯେତେ ଲୋକ ସମସ୍ତେ କଳଙ୍କିତ ?' ହରିଶଙ୍କର ନିଜର ସ୍ୱଭାବ ଚରିତ୍ର ପ୍ରତି ପଶ୍ଚାତ୍‌ଦୃଷ୍ଟି ନିକ୍ଷେପ କରି ଦେଖିଲେ—କାହିଁ ? କେବେ ତ ତା ଉପରେ କଳଙ୍କର ଦାଗ ପଡ଼ିନାହିଁ । ଚିରଦିନ ସେ ଚରିତ୍ରର କଠୋର ପ୍ରହରୀ ପରି ଜୀବନଯାପନ କରିଆସିଛନ୍ତି । କେତେବେଳେ ତାଙ୍କର ପାଦ ନୀତିବର୍ତ୍ମରୁ ଟିକିଏ ହେଲେ ଏପାଖ ସେପାଖ ହୋଇନାହିଁ । ଦୁଶ୍ଚରିତ୍ର ଧନୀ ସନ୍ତାନର ଆଦର୍ଶ ସେ କେବେ ହେଲେ ଜୀବନରେ ଅବଲମ୍ବନ କରିନାହାନ୍ତି—ବରଂ ଅପରିସୀମ ଘୃଣାର ସହିତ ତାହା ପାଦରେ ଠେଲି, ଦୂରକୁ ନିକ୍ଷେପ କରି, କର୍ତ୍ତବ୍ୟର କଠୋର ପଥରେ ଅଗ୍ରସର ହୋଇ ଆସିଛନ୍ତି । ଯଦି କେବେ ଏହାର ବ୍ୟତିକ୍ରମ ହୋଇଥାଏ, ତେବେ ତାହା ଦିନକ ପାଇଁ,—ଯେଉଁଦିନ ସୁଷମାର ସହିତ ତାଙ୍କର ପ୍ରଥମ ଓ ପ୍ରଗାଢ଼ ପରିଚୟ, ବେଗାତୁର ମାତାର ବିହ୍ୱଳ ନିବେଦନ, ସୁଷମା ସଙ୍ଗରେ ଦୃଷ୍ଟି ବିନିମୟ, ତାର ସମସ୍ତଭାର ନିଜ ସ୍କନ୍ଧରେ ବହନ କରିବାକୁ—ନା, ନା—ସୁଷମାକୁ ପ୍ରାଣର ସଙ୍ଗିନୀ କରିବାକୁ ଦୃଢ଼ ପ୍ରତିଜ୍ଞା । ସେ ପ୍ରତିଜ୍ଞା ଏ ପର୍ଯ୍ୟନ୍ତ ତାଙ୍କର ଅବିଚଳିତ ରହିଛି—ଚିରକାଳ ଥିବ । ତେବେ ସେଥିକୁ କି ନୀତିବ୍ୟତିକ୍ରମ କୁହା ଯାଇପାରେ,— ତାକୁ କି ଚରିତ୍ରହୀନତାର ଦୁର୍ନାମ ଦିଆ ଯାଇପାରେ ? ନା, କଦାପି ନା, କସ୍ମିନ୍ କାଳେ ନା । ତଥାପି ତାଙ୍କ ପ୍ରତି ସୁଷମାର ଏ ବ୍ୟବହାର କାହିଁକି,—ଏତେ ଅନାଦର କାହିଁକି ?

ହରିଶଙ୍କର ଏହା ଭାବି ବିଚଳିତ ହୋଇ ଉଠିଲେ । ଏତେ ବିଚଳିତ ହେବା ତାଙ୍କ ଜୀବନରେ ଏହି ପ୍ରଥମ । ଅଙ୍କିତସାରଙ୍ଗର

ଚକ୍ଷୁ ବୁଲାଇ ବାହ୍ଯାକୁଳ ହେବାକୁ ଆରମ୍ଭ କଲା । ହରଶଙ୍କର ଧଡ଼ପଡ଼ ଉଠି ବାହାରକୁ ଆସିଲେ । ଓଃ୍ହୋ ! କେତେବେଳ ହେଲଣି କି ? କଳାକୁଟିଆ ପିନ୍ଧ ଲଣ୍ଡଭଣ୍ଡ ହୋଇଥିବା ଗୋଟାଏ କୁଲିକୁ ଦେଖି ପଚାରିଲେ—ଗାଡ଼ିକୁ ଲାଇନ୍ କ୍ଲିଅର ହେଲଣି ? ସେ କହିଲା—'ହଁ ବାବୁ ଲାଇନ୍ କ୍ଲିଅର ଯାଇ ଅଢ଼େଇ ଘଣ୍ଟା ବ ହୋଇଗଲାଣି । ଗାଡ଼ି ଆସିବା ଉପରେ ।' ହରଶଙ୍କର ବ୍ୟସ୍ତ ହୋଇପଡ଼ିଲେ । ସେ ଯେ ଟିକଟ କରି ନାହାନ୍ତି ! ଜନସପନ ଜଣେ ଚଣ୍ଡାଳୋକର ଜମାଦେଇ ସେ ବୁକିଂ ଅଫିସ ଆଡ଼କୁ ଧାଇଁଲେ । ହାୟ, ହାୟ ! ପକେଟରେ ହାତ ଦେଇ ଦେଖିଲେ—ମନିବେଗ୍ଟା ନାହିଁ, ସର୍ବନାଶ !

ଠିକ୍ ଏହିସମୟ ସମୟରେ ତାଙ୍କର ନଜର ପଡ଼ିଗଲା ଗୃହର ପେନ୍ଥ୍ରମ କାଉଣ୍ଟର ଉପରେ । ସେ ତାଙ୍କ ଆଡ଼କୁ ଧାଇଁ ଧାଇଁ ଆସୁଛନ୍ତି । ହରଶଙ୍କର ଅନ୍ୟମନସ୍କ ଭାବରେ ତରତର ହୋଇ ଘରୁ ବାହାରି ଆସିଥିଲେ ମନିବେଗ୍ଟା ସେ ଟେବୁଲ୍ ଉପରେ ଛାଡ଼ି ଦେଇ । ରୁପାର ପାନବଟା ଓ ଫାଉଣ୍ଟେନ ପେନ୍ଟା ବି ତା ପାଖରେ ପକାଇ ଦେଇ ଆସିଥିଲେ । ବାହାରି ଆସିବା ପରେ ତା ସ୍ତ୍ରୀଙ୍କର ଦୃଷ୍ଟିରେ ପଡ଼ିବାରୁ ସ୍ତ୍ରୀ ସେଗୁଡ଼ାକ କାଉଣ୍ଟର ହାତରେ ପଠାଇ ଦେଇଛନ୍ତି । ତା ଛଡ଼ା, ସ୍ତ୍ରୀ ଅନେକଗୁଡ଼ାଏ ଜଲଖିଆ ଗୋଟାଏ ଟିଫିନ୍ କେରିଅରରେ ଭର୍ତ୍ତିକରି ହରଶଙ୍କରଙ୍କ ଦୂରଯାତ୍ରାର ପାଥେୟ ସ୍ୱରୂପ ସାଇତି ରଖିଥିଲା । କିନ୍ତୁ ହରଶଙ୍କର ସେ ଦିନ ଏତେ ତରତରରେ ବାହାରି ଯିବେ ବୋଲି ସେ ଜାଣି ନ ଥିଲା । ସୁତରାଂ ସେ ଗୁଡ଼ାକ ଦିଆଯାଇ ପାରି ନ ଥିଲା । କାଉଣ୍ଟର ହାତରେ ସେ ତାହା ମଧ୍ୟ ପଠାଇ ଦେଇଛନ୍ତି । ଗୋଟାଏ ସାଇକେଲ୍ ଛୁଟାଇ ସେ ଏ ସମସ୍ତ ପଦାର୍ଥ ଧରି ଧାଇଁଆସିଛନ୍ତି । ଖୋଜ ଖୋଜ ଲୋକଗହଳି ଭିତରୁ ଶେଷେ ମୁନିବଙ୍କୁ ବାହାର କରି ନେଇଛନ୍ତି ।

ଅବଲମ୍ବେ ହରିଶଙ୍କରଙ୍କ ଆଗରେ ଉପସ୍ଥିତ ହୋଇ କାର୍ତ୍ତିକଆ କହିଲା—'ଆଜ୍ଞା, ଅଧଲ ଜଳପଠା ଛାଡ଼ଦେଇ ଆସିଥିଲେ, ସୁଷି ଅପା ପଠେଇ ଦେଇଛନ୍ତି ।' ଏହା କହି ସେ ଟିଫିନ୍ କେରିଅରଟା ତଳେ ଥୋଇ ଦେଇ ଅଣ୍ଟାରେ ଭିଡ଼ା ହୋଇଥିବା ଗାମୁଛାଟା ଫିଟାଇବାକୁ ଆରମ୍ଭ କଲା । ହରିଶଙ୍କର ବିରକ୍ତ ହୋଇ କହିଲେ—'ବୋକାରାମ, ତୁ ଯେମିତି, ତୋର ସୁପି ଅପା ବି ସେମିତି ! ଏଇଟା ପରା ଅଧଲି ଟଙ୍କା, ନେଇ ଯା ଖାଇବୁ ।'

କଥାର ତାତ୍ପର୍ଯ୍ୟ ନ ବୁଝିପାରି, ମୁନିବଙ୍କୁ ବିରକ୍ତ ହେବାର ଦେଖି ହଠାତ ବିପତ୍ପାତ ହେଲା ମନେକରି କାର୍ତ୍ତିକଆ କମରରୁ ଗାମୁଛାଟା ଫିଟାଉଁ ଫିଟାଉଁ ବନ୍ଦ ହୋଇଗଲା ଓ ଥକ୍କା ହୋଇ ହରିଶଙ୍କରଙ୍କ ମୁହଁକୁ ଅନାଇ ରହିଲା । ହରିଶଙ୍କର ଆହୁରି ଚିଡ଼ି ଉଠିଲେ । କହିଲେ— ଆଁ କରି ରହିଲୁ କାହିଁକି ? ମନିବେଗ୍‌ଟା ପଠେଇ ଦେବାକୁ କାହାରି ବୁଦ୍ଧି ହେଲା ନାହିଁ ? ଚାଲ୍, ଚାଲ୍, ଫେରି ଚାଲ୍ ।

ଏତେବେଳେ କାର୍ତ୍ତିକଆ ପ୍ରଭୁର ବିରକ୍ତିର କାରଣ ବୁଝିପାରିଲା । କହିଲା—ଆଜ୍ଞା, ଆଣିଛି । ସୁପି ଅପା ଦେଇଛନ୍ତି, ଏଇ ଗାମୁଛାରେ ବାନ୍ଧିଛି ପରା ।

ଏହା କହି ସେ ତୁରନ୍ତ ଗାମୁଛା ଫିଟାଇବାକୁ ଲାଗିଲା । ମନିବେଗ୍ ଓ କଲମଟା ହାତକୁ ବଢ଼େଇ ଦେଲା ପରେ ହରିଶଙ୍କର ଖୁସିହୋଇ କହିଲେ—ହଁ, ଏଇଟା ଦରକାର । ଆରେ ପାନବଟାଟା ଆଉ କଲମଟା ବି ପକେଇଦେଇ ଆସିଥିଲି ପରା ! ହାୟ୍ ରେ ମନ !

ହରିଶଙ୍କର ଟିକେଟ କିଣି ଗାଡ଼ିରେ ଚଢ଼ିଲେ । ଟିଫିନ୍ କେରିଅରଟା ନେଇ ପାଖରେ ରଖିଲେ । କାର୍ତ୍ତିକଅକୁ କିଛି ବକ୍‌ସିସ୍ ଦେଇ କହିଲେ—ଯା, ଆଜି ଗୋଟାଏ କାମ ଭଲା କାମ କରିଛୁ ।

ଏଇ ମନବେଗ୍ଟା ନ ଅଣିଥିଲେ, ସିଧା ଘରକୁ ଫେରିଯିବାକୁ ପଡ଼ିଥାନ୍ତା । ବଦାମ୍ଟି ଦେବା ପରେହି କାର୍ତ୍ତିକଆ ଚୁପ ହୋଇ ରହିଲା । ହରିଶଙ୍କର ତା ଦେଖି ପଚାରିଲେ—ଆଜ କାହିଁକି ଚୁପ ହୋଇ ରହିଲୁ ରେ ? କାର୍ତ୍ତିକଆ ଧୀରେ ଧୀରେ ଜବାବ ଦେଲା—ସୁଷି ଅପା କହୁଥିଲେ—

ଏତିକି କହି ସେ ମୁଣ୍ଡଟା ଅଣ୍ଡାଳିବାକୁ ଲାଗିଲା । କଥାଟା କହିବାକୁ ଟିକିଏ ଯେପରି ଇତସ୍ତତଃ ହେଲା । ଥରେ ସୁଷି ଅପାର ନାମ ଧରିବାକୁ ଯାଇ ସେ ମୁନିବର ବିରକ୍ତିଭାଜନ ହୋଇ ସାରିଛି । ପୁନଶ୍ଚ ସେହି ନାଁଟା ତା ତୁଣ୍ଡରୁ ବାହାରି ପଡ଼ିଲାଣି । ବାବୁ ଯଦି ପୁନଶ୍ଚ ଗରମ ହୋଇ ଉଠନ୍ତି, ଏହା ଭାବି ସେ ଟିକିଏ ତୁନି ହୋଇ ରହିଲା । ହରିଶଙ୍କର ହସି ହସି କହିଲେ—ହଁ, ତୋର ସୁଷି ଅପା କଣ କହୁଥିଲେ ରେ ?

ପ୍ରଭୁର ପ୍ରସନ୍ନ ମୁଖ ଦେଖି କାର୍ତ୍ତିକଆ ଉତ୍ସାହିତ ହୋଇ କହିଲା— 'କହୁଥିଲେ—ହଜୁର ସେ ଜଳଖିଆରୁ ଟିକିଏ ତୁଣ୍ଡରେ ଦେଲେ ମୁଁ ଯିବି ।'

ହରିଶଙ୍କର ଠୋ ଠୋ ହୋଇ ହସି କହିଲେ—ତା ଆଗରୁ ତେବେ ଯିବୁ ନାହିଁ ?

କାର୍ତ୍ତିକଆ ମୁଣ୍ଡ ହଲାଇ ଜବାବ୍ ଦେଲା—ଆଜ୍ଞା ନା ।

ହରିଶଙ୍କର ପଚାରିଲେ—ଏତେ ବଡ଼ କଡ଼ା ହୁକୁମ୍ ?

କାର୍ତ୍ତିକଆ ଏ କଥାର ଉତ୍ତର ନ ଦେଇ ନୀରବ ରହିଲା । ହରିଶଙ୍କର କହିଲେ—ଅଚ୍ଛା, ସେହି ଲୋଟାଟା ନେଇ ପାଇପ୍ରୁ ଲୋଟାଏ ପାଣି ନେଇ ଆ । କାର୍ତ୍ତିକଆ ଧାଇଁଯାଇ ପାଇପ୍ରୁ ପାଣି ଆଣି ଦେଲା । ହରିଶଙ୍କର ଟିଫିନ୍-କେରିଅରଟା ଖୋଲି ଦେଖିଲେ । ସୁଷି ଅତି ଯତ୍ନକରି କେତେ ଖାଦ୍ୟ ତା ଭିତରେ ଭର୍ତ୍ତି କରି ରଖିଛି—

ବୃହସ୍ପତିବାର ସଦ୍ୟକାଟା ଦେଖାଇଲେ । ଗୋଟାଏ ଦାନ୍ତଖୁଣ୍ଟା ପର୍ଯ୍ୟନ୍ତ ଥାଳଥନ୍ତରେ ମୋଡ଼ାହୋଇ ରହିଛି । ପ୍ରଥମଥର କିଛି ଖାଇବାପରେ ଦାନ୍ତ ଖୁଣ୍ଟିବାଟା ହରଶଙ୍କରଙ୍କର ଚିରଦିନର ଅଭ୍ୟାସ । ବୁଝି ତାହା ଜାଣେ । ତେଣୁ ଦାନ୍ତଖୁଣ୍ଟା ଖଣ୍ଡିକ ଦେବାକୁ ମଧ୍ୟ ଭୁଲି ନାହିଁ । ହରଶଙ୍କର କିଛି କିଛି ସବୁ ଜିନିଷରୁ ନେଇ ଖାଇବାକୁ ଆରମ୍ଭ କଲେ । ଖାଇଥାଉ କାର୍ତ୍ତିକଆକୁ କହିଲେ—ଏଥର ହେଲା ?

କାର୍ତ୍ତିକଆ ପୁନର୍ବାର ମୁଣ୍ଡ ଅଣ୍ଡାଳି ଧୀରସ୍ୱରରେ ଜଣାଇଲା—ବୁଝି ଅପା ଯେ କହିଥିଲେ—

ହରଶଙ୍କର ଅଗ୍ରହର ଆତିଶଯ୍ୟବଶତଃ କଥା ଶେଷ କରିବାକୁ ନ ଦେଇ ପଚାରିଲେ—ଆଉର ବୁଝି ଅପାର କଥା ବାକି ଅଛି ନା କଣ ?

କାର୍ତ୍ତିକଆ ଜବାବ୍ ଦେଲା ଯେ, ବୁଝି ଅପା ତାକୁ ବିଶେଷ-ଭାବରେ ତାଗିଦ୍ କରି କହିଥିଲେ—ବାବୁ ଯେପରି ପେଟପୁରାଇ ଖାଆନ୍ତି ତା ଦେଖିଯିବାକୁ ।

ହରଶଙ୍କର ଏଥିରେ ଯଥେଷ୍ଟ ଆମୋଦ ଅନୁଭବ କରି କହିଲେ —ତେବେ ତୁ କହିବାକୁ ଚାହୁଁ ଯେ, ପେଟଟା ଥରେ ନ ଦେଖିଲେ ଯିବୁ ନାହିଁ ?

କାର୍ତ୍ତିକଆ ନିଜର ନିର୍ବୁଦ୍ଧିତାର ପରିଚୟ ପାଇ ଲଜ୍ଜିତ ହେଲା । ଠିକ୍ ଏହି ସମୟରେ ଗାଡ଼ ଛାଡ଼ିବାର ଘଣ୍ଟି ବାଜି ଉଠିଲା,—ଗାର୍ଡ଼ ସାହେବର ହେଁଢାଳି ଶବ୍ଦଟି ଶୁଣାଗଲା । କାର୍ତ୍ତିକଆ ପ୍ରଭୁ ପାଦରେ ଦଣ୍ଡବତ ହୋଇ ବିଦାୟ ନେଲା ।

ହରଶଙ୍କର ଚାଲିଗଲେ ।

---

## ଚତୁର୍ଦ୍ଦଶ ପରିଚ୍ଛେଦ

ଷ୍ଟେସନ ପରେ ଷ୍ଟେସନ ଗଲା । କେତେ ଲୋକ ଚଢ଼ିଲେ, କେତେ ଓହ୍ଲାଇଲେ । କେତେବେଳେ ରେଲଗାଡ଼ିର ଅପ୍ରଶସ୍ତ କୋଠରୀଟା ଖାଲି ହୋଇଗଲା, କେତେବେଳେ ବା ଗର୍ଭଦେଶର ଗର୍ଭ ପରିପୂର୍ଣ୍ଣ ହୋଇଉଠିଲା । କେତେବେଳେ ଅପରିସୀମ କୋଳାହଳ କେତେବେଳେ ବା ନିସ୍ତବ୍ଧତା । କେତେବେଳେ ଠେଲାଠେଲି, ପେଲାପେଲି, କେତେବେଳେ ବା ଶାନ୍ତି—ସ୍ୱଚ୍ଛନ୍ଦତା । କିନ୍ତୁ ହରଶଙ୍କରଙ୍କର ଏଥି ପ୍ରତି ଦୃଷ୍ଟି ନାହିଁ । ଗୋଟାଏ ସ୍ଥାନରେ ଅବିଚଳିତ ଭାବରେ ବସି ରହି ସେ ଗଭୀର ଧ୍ୟାନମଗ୍ନ । ଦୁଃଖମୟ ସଂସାରର ଦୁଃଖରାଶି ଦର୍ଶନ କରି ବୋଧହୁଏ ମହାମୁନି ବୁଦ୍ଧଦେବଙ୍କର ଧ୍ୟାନ ଏତେ ଗଭୀର ହୋଇ ନ ଥିଲା । ମଧ୍ୟେ ସେ ଭାବୁଥିଲେ ସୁଚିର ଉଦ୍ଭଟ ବ୍ୟବହାର କଥା । ସୁଚି କେତେବେଳେ କି ଆକାର ଧାରଣ କରେ, କେତେବେଳେ ତାର ବ୍ୟବହାର କଣ ହୁଏ, ତା ସେ ବୁଝିବାକୁ ଚେଷ୍ଟାକରି ଯେପରି ଏକ କଠିନ ପ୍ରହେଳିକାର ରହସ୍ୟମୟ ଜାଲରେ ଛନ୍ଦି ହୋଇ ଯାଉଥିଲେ । କେତେବେଳେ ସୁଚିର ଆଦରର ସୀମା ନାହିଁ,—କେତେବେଳେ ଅସୀମ ଅନାଦର । ମନେ ପଡୁଥିଲା ତାଙ୍କର ସେହି ଦିନର କଥା, ଯେଉଁ ଦିନ ସେ ଉଚ୍ଛ୍ୱସିତ ଭାବରାଶି ନେଇ ନବାଭରଣା ସୁଚିର ଅଙ୍ଗରେ କେତୋଟି ସ୍ୱର୍ଣ୍ଣାଭରଣ ପିନ୍ଧାଇଦେଇ, ସୁନ୍ଦରୀକୁ ସୁନ୍ଦରତର କରିବାକୁ ଚାହିଁଥିଲେ । ମନେ କରିଥିଲେ— କଣ୍ଠଦେଶରେ ଗୋଟିଏ ସୁବର୍ଣ୍ଣର ଅଭ୍ରମୟ ହାର ଝୁଲାଇ ଦେବେ, ମୃଣାଳ-ମଞ୍ଜୁଳ ହସ୍ତ ଦୁଇଟିରେ ସୁନାର ଚୁଡ଼ି ତିନି ତିନିପଟ କରି ପିନ୍ଧାଇ ଦେବେ, ଚମ୍ପକ ଅଙ୍ଗୁଳିରେ ଅଙ୍ଗୁରୀୟ ବିନ୍ୟାସ କରି ତାକୁ ପ୍ରଭାମୟ କରିବେ, କର୍ଣ୍ଣଦୁଇଟିରେ ସୁନ୍ଦର ସୁବର୍ଣ୍ଣ ଝୁମୁକା ଦୁଇଟି

ଲୁଣ୍ଠିତଦେଇ ତାର ରମଣୀୟତା ମ୍ଳାନ କରି ପକାଇବେ । କିନ୍ତୁ ଏ କଳ୍ପନାବିଳାସୀ ଯୁବକର ସମସ୍ତ କଳ୍ପନା କେବଳ କଳ୍ପନାରେହିଁ ପର୍ଯ୍ୟବସିତ ହୋଇ ରହିଗଲା,—ବାସ୍ତବତାର ସୀମା ସ୍ପର୍ଶ କରିବାକୁ ସମର୍ଥ ହୋଇ ନ ଥିଲା । ସୁପ୍ତି ତାହା କାର୍ଯ୍ୟରେ ପରିଣତ କରିବାକୁ ଦେଲା ନାହିଁ । କିନ୍ତୁ ବାଧାପ୍ରାପ୍ତ ଯୁବକ ଯେତେବେଳେ ଅତୃପ୍ତ ଅଭିଳାଷ ନେଇ ବାହାରି ଆସିବାକୁ ଉଦ୍ୟତ ହେଲେ, ସେତେବେଳେ ସୁପ୍ତି ତାଙ୍କୁ କୌଶଳକ୍ରମେ ବାହାରିଯିବାକୁ ଦେଲା ନାହିଁ । ପାଦଦ୍ୱୟ ଜଡ଼ୀଭୂତ ପାଦର ଗତି ଅଚଳ କରିଦେଲା । ଏ ତ ଗଲା ସେ ଦିନର କଥା । ପୁଣି ଏହି ଯାହାର ଅବ୍ୟବହିତ ପୂର୍ବର କଥା । ଗ୍ରୀଷ୍ମାବକାଶ ସମୟରେ କି ଅନନ୍ତ ଉଦ୍ବେଳିତ ପିପାସା ନେଇ ସେ ପ୍ରିୟତମାର ଅଙ୍ଗଆଲିଙ୍ଗନପ୍ରାର୍ଥୀ ହୋଇଥିଲେ,—ସାମୟିକ ବିଚ୍ଛେଦର ବ୍ୟଥାରେ ବ୍ୟାକୁଳ ହୋଇ ସେ ପ୍ରିୟତମା ନିକଟରେ "ସାମାନ୍ୟ ଟିକିଏ ଆଦର ଅର୍ପଣ କରିବାକୁ ଯାଇଥିଲେ,—କିନ୍ତୁ ଫଳ ହେଲା ଅନାଦର, "ଛାଡ଼ ଥାଉ"ର ନିର୍ମମ ନିର୍ଯାତନ ! ତା ପରେ ପୁଣି ଏହି ନଗଦ ଘଟଣାର ଅଭିନୟ । ଯେ ବ୍ୟକ୍ତିର ଅନାଦର ତାଙ୍କୁ ଏତେ ବିବ୍ରତ କରି ପକାଇଛି, ତାର ପୁଣି କି ଆଦର ! ହରଶଙ୍କର ଦୂରସ୍ଥାନର ଯାତ୍ରୀ ବୋଲି ଜାଣି ସୁପ୍ତି କେତେ ପରିଶ୍ରମ କରି ତାଙ୍କ ପାଇଁ କେତେ ପ୍ରକାର ସୁଖାଦ୍ୟ ପ୍ରସ୍ତୁତ କରି ରଖିଛି ! ତାହା ଦିନକାଳ ଦଶ ଦିନ ଖାଇଲେ ବି ସରିବ ନାହିଁ । ଟିଫିନ୍-କେରିଅରଟା ଏକାବେଳକେ ଜାମ୍ । ଆଜି ଗୁଡ଼ିକରଟା ପ୍ରତି କଡ଼ା ଆଦେଶ ଏକାବେଳେକେ ତ୍ରିଭୁଜ ଉଦର ପରିତୃପ୍ତ କରି ଖୋଇ ଆସିବାକୁ;—ତା ପୂର୍ବରୁ ଫେରିବାକୁ ମନା । ଏ ସବୁ ବ୍ୟାପାରର ଅର୍ଥ କଣ ?

ହରଶଙ୍କର ଅନେକ ଭାବିଲେ । ସୁଷମାର ଉପେକ୍ଷା ଓ ଅନାଦର ଯେତେ ବଡ଼ ବିଶାଳମୂର୍ତ୍ତି ଧରି ତାଙ୍କ ଆଗରେ ଆବିର୍ଭୂତ ହୋଇ

ରହିଥିଲା, ତା ଆଉ ତେତେ ପ୍ରକାଣ୍ଡ ଆକାର ଧାରଣ କରି ରହି ପାରିଲା ନାହିଁ । କ୍ରମେ କ୍ରମେ କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲା । ଅବଶେଷରେ କୁଆଡ଼େ ଯେପରି ମିଳେଇ ଯିବାକୁ ଆରମ୍ଭ କଲା । ହରିଶଙ୍କର ଦେଖିଲେ—ସେହି ପ୍ରଚଣ୍ଡ ଅନାଦର ପରିବର୍ତ୍ତିରେ ଏକ ମଧୁମୟ ଆଦର ଆପ୍ୟାୟନ ଆପଣାର ସିଂହାସନ ପାତି ସୁଦୃଢ଼ଭାବରେ ଅବସ୍ଥିତ । ସେଥିରୁ କେତେ ମମତାର ଅମୃତ ଆବେଶ ସ୍ରବିତ ହୋଇ ପଡ଼ୁଛି । ହରିଶଙ୍କର ବିଚଳିତ ହୋଇ ମୃଦୁକଣ୍ଠରେ ଚିତ୍କାର କରି ଉଠିଲେ—'ନା, ନା, କଦାପି ନା, ତା ଅନାଦର ବୋଲି କଦାପି କୁହାଯାଇ ନ ପାରେ ।' ଏ ଚିତ୍କାରରେ ପାର୍ଶ୍ୱବର୍ତ୍ତୀ ଏକ ମୁସଲମାନ ଯାତ୍ରୀ ଚମକି ଉଠି ପଚାରିଲା—'କ୍ୟା କ୍ୟା, ବାବୁଜି କ୍ୟା ହୁଆ ଆପ୍‌କା ?' ହରିଶଙ୍କରଙ୍କ ଚୈତନ୍ୟ ଚଟ୍‌କରି ଫେରିଆସିଲା । ଆପଣାର ଅନ୍ୟମନସ୍କତାରେ ସେ ଲଜ୍ଜିତ ହୋଇ ଜବାବ୍ ଦେଲେ— ନେହି ନେହି, ମିଆଁସାହେବ ! କୁଛ ନେହି ହୁଆ, ସବ୍ ଠିକ୍ ହେ ।' ଯାତ୍ରୀଟି ଆଶ୍ୱସ୍ତ ହୋଇ ପଚାରିଲା—'ସବ୍ ଠିକ୍ ହେ ।' ହରିଶଙ୍କର କହିଲେ— 'ବିଲ୍‌କୁଲ ଠିକ୍ ହେ ।' 'ତୋବା ତୋବା' କହି ଯାତ୍ରୀଟି ତାର ଆସନରେ ସ୍ୱଚ୍ଛନ୍ଦରେ ବସି ଗୋଟାଏ ବିଡ଼ି ଟାଣିବାକୁ ଆରମ୍ଭ କରିଦେଲା ।

ହରିଶଙ୍କର ପୁନର୍ବାର ଚିନ୍ତାମଗ୍ନ ହୋଇପଡ଼ିଲେ । ଭାବିଲେ— ନା, ଏମିତି କରି ଆଉ ଦିନ କାଟିଲେ ଚଳିବ ନାହିଁ । ଏହାଦ୍ୱାରା ତାଙ୍କର ଭିତରର ଉଦ୍ଦେଶ୍ୟଟା କାହାରି ପାଖରେ ସ୍ପଷ୍ଟରୂପେ ଧରା ଦେଉ ନାହିଁ । ସୁନ୍ଦି ଯେ ତାଙ୍କର ବିବାହିତା ପତ୍ନୀ ତା କେହି ମନେ କରି ପାରୁନାହାନ୍ତି । କେମିତି ବା କରିବେ ? ଏତେ ଯୁଗଯୁଗାନ୍ତର ଧରି ଯେ ପ୍ରାଚୀନ ପ୍ରଥାଟା ସମାଜର ବକ୍ଷଦେଶରେ ଗଭୀରଭାବରେ ଚେରମାରି ରହିଛି, ତାର ପ୍ରଭାବ କି କମ୍ ? ସେଥିକୁ ବାଦଦେଲେ

ଚଳିବ ନାହିଁ । ଯଉ ସେଇଟା ବ ତେତେ ବଡ଼ ଦୋଷର କଥା ନୁହେଁ,—ମନୁଷ୍ୟର ଉଦ୍ଧାର ବିଶେଷ କିଛି କ୍ଷତି ଘଟେ ନାହିଁ । ସେଇଟା କେବଳ ଗୋଟାଏ ବାହ୍ୟିକ ପ୍ରକାଶ । ପ୍ରକାଶ୍ୟଭାବରେ ବିଭା କରି ନେଲେ କଥା ଛୁଣ୍ଡିଯିବ । କେବେ ମଧ ତାହା ଜାଣିବା ଦରକାର । ସମାଜ ତାହା ଆଖି ଆଗରେ ନ ଦେଖିଲେ ବିଶ୍ୱାସ କରିପାରିବ ନାହିଁ । ସମାଜର କଥା ଦୂରରେ ଥାଉ, ନିଜର ଘରେ ମଧ ତାହା କେହି ବିଶ୍ୱାସ କରି ପାରୁନାହିଁ । ମା ବ ନୁହନ୍ତି, ଏପରି କି ନିଜେ ସ୍ମୃତି ମଧ ତା ବିଶ୍ୱାସ କରିବାକୁ ପ୍ରସ୍ତୁତ କି ନା କିଏ ଜାଣେ ? ହୁଏତ ତାହାହିଁ ତାର ଉପେକ୍ଷାର ଏକମାତ୍ର କାରଣ ହୋଇପାରେ । ହରଶଙ୍କର ମନେ କଲେ—ଜୀବନରେ ଏତେ ବଡ଼ ଗୋଟାଏ ଘଟଣା ଗୋପନ ରହି ଯାଉଛି । ସେଥିରେ କିଛି ଲାଭ ନାହିଁ, କିଏ କେତେ ରକମ ମନେ କରିପାରେ । ସେଇଟାକୁ ପ୍ରକାଶ୍ୟରୂପେ ସମାଜ ଆଗରେ ଅନାବୃତ କରି ଦେବାକୁ ହେବ । ସମସ୍ତଙ୍କର ଭୁଲ ଭାଙ୍ଗି ଦେବାକୁ ହେବ । ପୁରୋହିତ ଡାକି କି ବ-ଚ କରି ଟିକିଏ ମନ୍ତ୍ର ପଢ଼େଇ ନେବାକୁ ପଡ଼ିବ । ଗୋଟାଏ ଶଙ୍ଖ ବାଜିବା ବ ଦରକାର । ହୁଏତ ସେହି ଶଙ୍ଖସ୍ୱରରେ ଆରୋହଣ କରି ସତ୍ୟଟା ବିସ୍ତାରଲାଭ କରିବାର ସୁଯୋଗ ପାଇବ । କିନ୍ତୁ ମିଥ୍ୟା ଆଡ଼ମ୍ବର କରି ଗୁଡ଼ାଏ ଅର୍ଥଶ୍ରାଦ୍ଧ କରିବାକୁ ଦିଆଯିବ ନାହିଁ । ବିବାହଟା ତାମସା ନୁହେଁ,—ସମାଜ ତାହା ଜାଣିବା ଉଚିତ ।

ଏହିପରି ଭାବୁଁ ଭାବୁଁ ଗାଡ଼ି ଆସି କଟକ ଷ୍ଟେସନରେ ପହଞ୍ଚିଲା । ହରଶଙ୍କରଙ୍କର କଟକରେ ଟିକିଏ କାମ ଥିଲା । ସୁତରାଂ ତାଙ୍କୁ କଟକରେ ଓହ୍ଲାଇବାକୁ ପଡ଼ିଲା । କାମସାରି ସେହିଦିନ ପୁଣି ସେ କଟକରୁ ବାହାରି ପଡ଼ିଲେ । ମେରିମଣ୍ଡଳୀ ଷ୍ଟେସନରେ ପହଞ୍ଚି ମଟର ଚଢ଼ି ସେ ସମ୍ବଲପୁରରେ ଯାଇ ଉପସ୍ଥିତ ହେଲେ ।

ସ୍ୱିଡମତ ବିବାହ କରିବାର ଅଭିଳାଷଟା ବର୍ତ୍ତମାନ ପ୍ରବଳତର ହେବାକୁ ଲଗିଲା । ପ୍ରତିଦିନ ସେ ସମ୍ବନ୍ଧରେ କିଛି ନା କିଛି ସେ ଭାବନ୍ତି । ଅବଶେଷରେ ସେ ଗୋଟାଏ ସିଦ୍ଧାନ୍ତରେ ଉପନୀତ ହୋଇଗଲେ । ଆଉ ବିଳମ୍ବ କରିବାକୁ ହେବ ନାହିଁ । ଏହି ଆଗାମୀ ବୈଶାଖ ମାସରେହିଁ ବିବାହଟା ସମ୍ପନ୍ନ କରିବାକୁ ହେବ ।

ଦୁଇଦିନ ପରେ ସେ ଘରକୁ ଚିଠି ଲେଖି ତାହା ଜଣାଇ ଦେଲେ । ତିନିଖଣ୍ଡ ଚିଠି ସେ ତିନି ଜଣଙ୍କ ପାଖକୁ ଲେଖିଲେ । ଖଣ୍ଡେ ମା ସ୍ୱାପ୍ରିୟାଙ୍କ ପାଖକୁ, ଆଉ ଖଣ୍ଡେ ମାତୁଳ କୃଷ୍ଣମାଧବଙ୍କ ନାମରେ ଓ ତୃତୀୟଖଣ୍ଡ ବୃଦ୍ଧ ଗୁମାସ୍ତାଙ୍କ ନିକଟକୁ । ସମସ୍ତ ଚିଠି ଗୋଟାଏ ଖୋଳରେ ଭର୍ତ୍ତି କରି ଗୁମାସ୍ତାଙ୍କ ନାମରେ ପଠାଇଦେଲେ ।

ମାଆଙ୍କ ନିକଟକୁ ସେ ଯେଉଁ ପତ୍ର ଦେଲେ ସେଥିରେ ସେ ନିଜର ସିଦ୍ଧାନ୍ତଟା ବିଷୟ ଉଲ୍ଲେଖ କରି ଅନେକ କଥା ବୁଝାଇବାକୁ ଚେଷ୍ଟା କରିଥିଲେ । ସମସ୍ତ କଥା ଏଠାରେ କହି କିଛି ଲଭ ନାହିଁ । ତେବେ ସଂକ୍ଷେପରେ ଏତିକି କୁହାଯାଇ ପାରେ ଯେ ସେହି ଦୀର୍ଘ ପତ୍ରଟାରେ ସେ ବିବାହ ପ୍ରଥାର ଗୋଟାଏ ଆମୂଳଚୂଳ ଇତିହାସ ଲେଖିବାକୁ ଛାଡ଼ି ନ ଥିଲେ । ବିବାହପ୍ରଥା କିପରି ସୃଷ୍ଟି ହେଲା, ବୈଦିକଯୁଗରେ ଆମ ଦେଶରେ କିପରି ବିବାହ ପ୍ରଚଳିତ ଥିଲା, ସେହି ସମୟରେ କିପରି ବିବାହରେ ଜାତି ବିଚାର ନ ଥିଲା, ବ୍ରାହ୍ମଣ କିପରି କ୍ଷତ୍ରିୟ ବା ବୈଶ୍ୟ ଘରେ ବିବାହ କରୁଥିଲା, ଅନ୍ୟ ଆର୍ଯ୍ୟଜାତି କିପରି ବ୍ରାହ୍ମଣ ଘରେ ବିବାହ କରି ପାରୁଥିଲେ, ଆଜକାଲି ଶୂଦ୍ର ବୋଲି ଯେଉଁ କଥାଟା ବ୍ରାହ୍ମଣେତର ସମସ୍ତଙ୍କୁ ବୁଝାଉଛି ତାହା କିପରି ଅର୍ଥହୀନ, ଅନ୍ୟାନ୍ୟ ଦେଶରେ କିପରି ବିବାହ ବ୍ୟବସ୍ଥା ଚଳେ ଇତ୍ୟାଦି ସମସ୍ତ ବିଷୟ ଆଲୋଚନା କରି ସେ ପତ୍ରଖଣ୍ଡି ପରିପୂର୍ଣ୍ଣ କରିଦେଇଥିଲେ । ପଢ଼ିଲେ ମନେ ହେବ—ତାହା ପତ୍ର ନୁହେଁ,

ଗୋଟାଏ ଥିପିସ୍, ସତେ ଯେପରି ଭକ୍ତରେନ୍ ପାଇବା ପାଇଁ ଗୋଟାଏ ଉଦ୍ୟମ । ଭାବପ୍ରବଣ ହରିଶଙ୍କର ଭାବୋଚ୍ଛ୍ୱାସରେ ଯେତେବେଳେ ଭାସିଯାନ୍ତି, ସେତେବେଳେ କାହାର କେତେ ବୁଝିବାର ଶକ୍ତି, କିଏ କେତେଟା ଗ୍ରହଣ କରିପାରେ, ତା ସମ୍ପୂର୍ଣ୍ଣ ଭୁଲିଯାନ୍ତି ।

କୃଷ୍ଣମାଧବଙ୍କ ନିକଟକୁ ସେ ଏତେ ବିସ୍ତୃତ କରି ପତ୍ର ଲେଖି ନ ଥିଲେ । କେବଳ ନିଜର ଉଦ୍ଦେଶ୍ୟଟା ବ୍ୟକ୍ତ କରିଥିଲେ । ତା ସଙ୍ଗେ ସଙ୍ଗେ ତାଙ୍କର କପଟ ଘଟଣାରେ ସୁଷି ସଙ୍ଗରେ ପରିଚୟ ହେଲା, ସୁଷିର ମୁମୂର୍ଷୁ ମା ନିକଟରେ ସେ କପରି ନିରାଶ୍ରୟା କନ୍ୟାର ସମସ୍ତ ଭାର ନିଜମୁଣ୍ଡରେ ନେବାକୁ ପ୍ରତିଶ୍ରୁତ ହୋଇଥିଲେ; ତା ପରେ ଯାହା ଯାହା ଘଟିଥିଲା, ତା ସବୁ ସେ ବର୍ଣ୍ଣନା କରିଥିଲେ । ଶେଷରେ ସେ ଲେଖିଥିଲେ, କୌଣସି ଆଡ଼ମ୍ବର ନ କରି କେବଳ ଧର୍ମ ସଙ୍ଗତ ବିଧିବିଧାନ ଅନୁସାରେ ସେ ବିବାହଟା ସମ୍ପନ୍ନ କରିବାକୁ ଚାହାନ୍ତି ।

ଗାଧୁ ଗୁମାସ୍ତାଙ୍କ ପାଖକୁ ସେ କେବଳ ଏତିକି ଲେଖିଥିଲେ ଯେ ମାତୁଳ କୃଷ୍ଣମାଧବ ଜମିଦାରୀ ଗସ୍ତରୁ ଫେରିଲେ ତାଙ୍କୁ ତାଙ୍କର ପତ୍ରଟି ଦେବେ ଓ ଅନ୍ୟପତ୍ର ଖଣ୍ଡି ମାଈଙ୍କ ନିକଟକୁ ପଠାଇଦେବେ ।

ଚିଠି ତିନିଖଣ୍ଡି ଲେଖି ଓ ଯଥାସମୟରେ ଡାକରେ ଦେଇ ହରଶଙ୍କର ଗୋଟାଏ ସନ୍ତୃପ୍ତିର ନିଃଶ୍ୱାସ ପକାଇ କହିଲେ—ଯାଃ, ଏବେ କଥା ଛିଣ୍ଡିଗଲା,—ଆଉ ଅଡୁଆ ନାହିଁ ।

ଏଥର ଗୋଟାଏ ପୁନଃନିର୍ମଳ ତୃପ୍ତିର ସ୍ରୋତ ତାଙ୍କର ପ୍ରାଣେ ପ୍ରାଣେ କଳକଳ ନାଦ କରି ବହିଗଲା ।

---

## ପଞ୍ଚଦଶ ପରିଚ୍ଛେଦ

କୃଷ୍ଣମାଧବଙ୍କୁ ଜମିଦାରୀ ଗସ୍ତରେ ଯାଇ ସେଥର ଫେରିବାକୁ ବହୁତ ଦିନ ବିଳମ୍ବ ହେଲା । ସମୟ ସମୟରେ ଏହିପରି ବିଳମ୍ବ ହୋଇଥାଏ । ଗୋଟାଏ କଚେରୀରୁ ଅନ୍ୟ ଗୋଟାଏ କଚେରୀ, ସେଠାରୁ ଆଉ ଏକ କଚେରୀକୁ ଯାଇ ପ୍ରତ୍ୟେକ ସ୍ଥାନରେ କିଛି କିଛି ଦିନ ଅବସ୍ଥାନ କରି, କର୍ମଚାରୀମାନଙ୍କ ସାହାଯ୍ୟରେ ଖଜଣାପାତି ଆଦାୟ ଅସୁଲ କରି, ହାତଗୁହାରି ଶୁଣି, ନ୍ୟାୟନିଷ୍ପତ୍ତି କରି ଘରକୁ ଫେରିବାକୁ ତାଙ୍କୁ ଅନେକ ଦିନ ଲାଗିଯାଏ । ପ୍ରକାଣ୍ଡ ଜମିଦାରୀର ସମସ୍ତ ଭାର ତାଙ୍କ ଉପରେ,—କର୍ମଚାରୀମାନେ ସମସ୍ତେ କାର୍ଯ୍ୟତଃ ତାଙ୍କ ଅଧୀନରେ । ସେହିମାନଙ୍କୁ ନେଇ ସେ ଏତେ ବଡ଼ ଜମିଦାରୀର ରକ୍ଷଣାବେକ୍ଷଣ କରନ୍ତି । ଘରେ ବାହାରେ ତାଙ୍କର ଅଖଣ୍ଡ ପ୍ରତାପ । ହରଶଙ୍କରଙ୍କ ପିତା ଶିବଶଙ୍କରଙ୍କ ଜୀବିତାବସ୍ଥାରେ ମଧ୍ୟ ତାଙ୍କର ପ୍ରତିପତ୍ତି କମ୍ ନ ଥିଲା । ଶିବଶଙ୍କର ତାଙ୍କୁ ନିଜର ସହୋଦର ପରି ଜ୍ଞାନ କରୁଥିଲେ । ଉଭୟଙ୍କ ମଧ୍ୟରେ ଅଗାଧ ଅପରସୀମ ସୌହାର୍ଦ୍ଦ୍ୟ ଥିଲା । ଶିବଶଙ୍କରଙ୍କର ସେ ଥିଲେ ସଙ୍ଗୀ, ଅମ୍ଭୀୟ, ସୁହୃଦ, ସହଚର, ଅମାତ୍ୟ ସବୁ । କୃଷ୍ଣମାଧବ ନ ହେଲେ ଶିବଶଙ୍କରଙ୍କର ଦଣ୍ଡେ ଚଳୁ ନ ଥିଲା । କୃଷ୍ଣମାଧବଙ୍କ ପରାମର୍ଶ ନ ନେଲେ ଶିବଶଙ୍କର କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରୁ ନ ଥିଲେ । ଖାଇବା, ପିଇବା, ବସିବା, ଉଠିବାରୁ ଆରମ୍ଭ କରି ବିଶାଳ ଜମିଦାରୀ ଶାସନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଶିବଶଙ୍କର କୃଷ୍ଣମାଧବଙ୍କ ସାହାଯ୍ୟରେ ସମ୍ପନ୍ନ କରୁଥିଲେ । ବାସ୍ତବିକ କହିବାକୁ ଗଲେ, ଶିବଶଙ୍କର ଥିଲେ ନାମତଃ ଜମିଦାର, କୃଷ୍ଣମାଧବ ଥିଲେ ସେହି ଜମିଦାରୀର ଶାସକ ଓ ଚାଳକ,—ପ୍ରକୃତ ଜମିଦାର । ଖୁବ୍ କମ ସମୟରେ ଉଭୟଙ୍କ ମଧ୍ୟରେ ମତଭେଦ ହେଉଥିବାର ଦେଖାଯାଉଥିଲା,—ପ୍ରାୟ ନ ହେଉଥିଲା

ଚାହିଲେ ଚଳେ । କୃଷ୍ଣମାଧବଙ୍କ ପିତା ସମସ୍ତ ପୈତୃକ ସମ୍ପତ୍ତି ବିଳାସରେ ଉଡ଼ାଇଦେଇ, ସର୍ବସ୍ୱାନ୍ତ ହୋଇ, ପୁଅକୁ ଏକପ୍ରକାର ଦାଣ୍ଡର ଭିକାରି କରି, ସଂସାରକୁ ଫାଙ୍କି ଦେଇ ଚିରଦିନ ପାଇଁ ଇହଧାମରୁ ଅନ୍ତର୍ହିତ ହୋଇ ଯାଇଥିଲେ । ମା ମଧ୍ୟ ତହିଁ ପୂର୍ବରୁ ସତୀସ୍ୱର୍ଗରେ ନିଜପାଇଁ ଯଥାସାମାନ୍ୟ ଖଣ୍ଡିଏ ସ୍ଥାନର ଯୋଗାଡ଼ କରି ନେଇଥିଲେ । ସୁତରାଂ ପିତାର ମୃତ୍ୟୁରେ କୃଷ୍ଣମାଧବ ଯେତେବେଳେ ଦିଗ୍‌ବିଦିଗ ଶୂନ୍ୟ ଦେଖୁଥିଲେ, ସେତେବେଳେ ନିଃସହାୟର ସହାୟ ହୋଇ ଛିଡ଼ା ହୋଇଥିଲେ ଭଗିନୀପତି ଶିବଶଙ୍କର । ପିତୃଶ୍ରାଦ୍ଧ ପରେ ଶିବଶଙ୍କର କୃଷ୍ଣମାଧବଙ୍କୁ ନିର୍ଜନରେ ଡାକି କହିଥିଲେ—'କୃଷ୍ଣ, ଆଉ କାହିଁକି ଭାଇ, ଏ ସ୍ଥାନରେ ଏକାକୀ ପଡ଼ିରହି କି ଲାଭ ? ଚାଲ, ଦୁଇଭାଇ ଏକାଠି ରହି ପରସ୍ପର ପରସ୍ପରର ସଙ୍ଗସୁଖ ଭୋଗକରି ନିଶ୍ଚିନ୍ତରେ କାଳାତିପାତ କରିବା । ଯଦି ତମର କୌଣସି ପ୍ରକାର ଅସୁବିଧା ହୁଏ, କିମ୍ବା କିଛି ଅଭାବ ରହେ,—ସେଥିପାଇଁ ମୁଁ ଦାୟୀ ।' କୃଷ୍ଣମାଧବଙ୍କୁ ମଧ୍ୟ ସେହି ନିର୍ଜନ ଗୃହଟା ନିଷ୍ଠୁର ଦେବତାର ନିର୍ମମ ପରିହାସ ପରି ବୋଧହେଉଥିଲା । ସେ କୌଣସି ଆପତ୍ତି ନ କରି, ବହୁଦିନରୁ ସ୍ଥିରକରି ରଖିଥିଲା ପରି ତୁରନ୍ତ ଜବାବ ଦେଇଥିଲେ— "ଚାଲ ଭାଇ ।" କଥା ସଙ୍ଗେ ସଙ୍ଗେ କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇଥିଲା । ପତ୍ନୀ ପ୍ରେମଲତାଙ୍କୁ ଡାକି ସେ ତତ୍‌କ୍ଷଣାତ୍ ଆଦେଶ ଦେଇଥିଲେ— 'ଜିନିଷପତ୍ର ବନ୍ଧାବନ୍ଧି କର ।' ପ୍ରେମଲତା କ୍ଷଣକାଳ ଅବାକ୍ ରହି ପଚାରିଥିଲେ—'କୁଆଡ଼େ ଯିବ ?' କୃଷ୍ଣମାଧବ ଉତ୍ତର ଦେଇଥିଲେ —'ଯିବାବେଳେ ପଚାରିବା ଅବିଧି ।' ସେହିଦିନ ଶିବଶଙ୍କର ଶ୍ୟାଳକ କୃଷ୍ଣମାଧବ, ଶ୍ୟାଳକପତ୍ନୀ ପ୍ରେମଲତା ଓ ଏକମାତ୍ର ସନ୍ତାନ ପାଞ୍ଚବର୍ଷର ବାଳୁତ କନ୍ୟାଟିକୁ ସଙ୍ଗରେ ନେଇ ନିଜ ନିବାସ ପ୍ରହରାଜପୁରରେ ଆସି ଉପସ୍ଥିତ ହୋଇଥିଲେ । ସେହିଦିନଠାରୁ ଦୁଇଟି ନଦୀର ସ୍ରୋତ

ଏକ ହୋଇ ନିରବଚ୍ଛିନ୍ନ ଭାବରେ ପ୍ରବାହିତ ହେଲା ପରି ଉଭୟ ପରିବାର ମିଶି ଏକାଠି ହୋଇ ଚଳିବାକୁ ଆରମ୍ଭ କରିଥିଲେ । କ୍ରମେ କ୍ରମେ କୃଷ୍ଣମାଧବ ଏହି ସମ୍ମିଳିତ ପରିବାରର ଏକ ବିଶିଷ୍ଟ ଅଙ୍ଗ ଓ ଅବଶେଷରେ କର୍ତ୍ତା ହୋଇ ପଡ଼ିଥିଲେ । ଶିବଶଙ୍କର ତାଙ୍କୁ ଘରେ ବାହାରେ ଅବାଧ କର୍ତ୍ତୃତ୍ୱ ଅର୍ପଣ କରିଥିଲେ । ଘରେ ସେ ଥିଲେ ଗୃହ ସଂସାରର ସର୍ବନିୟନ୍ତା ଓ ବାହାରେ ଜମିଦାରୀର ସର୍ବସମସ୍ତ ସମ୍ପନ୍ନ ମ୍ୟାନେଜର । ଏହି ଘଟଣାର ଦଶବର୍ଷ ପରେ ତାଙ୍କ କନ୍ୟାର ବିବାହ ଓ ବାରବର୍ଷ ପରେ ପତ୍ନୀବିୟୋଗ ଘଟିଥିଲା । ତାର କିଛିଦିନ ପରେ ନିଜେ ଶିବଶଙ୍କର ମଧ୍ୟ ଚିରକାଳ ପାଇଁ ତାଙ୍କର ସଙ୍ଗ ତ୍ୟାଗ କରି ଇହ ସଂସାରରୁ ଅନ୍ତର୍ହିତ ହୋଇ ଯାଇଥିଲେ । ଶିବଶଙ୍କରଙ୍କ ବିୟୋଗ ଅନ୍ତେ ବି ସେ ପୂର୍ବଗୌରବରେ ପ୍ରତିଷ୍ଠିତ ରହି, ଘରର ସମସ୍ତ ତତ୍ତ୍ୱ, ଜମିଦାରୀର ସମସ୍ତ ହାଲଚାଲ ବୁଝାଶୁଝା କରୁଥିଲେ । ହରଶଙ୍କର ତାଙ୍କୁ ପିତୃବତ୍ ଜ୍ଞାନକରି, ତାଙ୍କର ସ୍କନ୍ଧରେ ସମସ୍ତ ଭାର ରଖି, ତାଙ୍କର କାର୍ଯ୍ୟକଳାପରେ ବିଶେଷ କିଛି ହସ୍ତକ୍ଷେପ ନ କରି ଏକପ୍ରକାର ନିଶ୍ଚିନ୍ତରେ ନିଜର କର୍ମମୟ ଉଚ୍ଛୃଙ୍ଖଳ ଜୀବନ ଯାପନ କରୁଥିଲେ । ଘରେ କୃଷ୍ଣମାଧବଙ୍କ କଥାରେ କେହି ପ୍ରତିବାଦ କରିବାକୁ ସାହସ କରୁ ନ ଥିଲେ, କାରଣ ତାଙ୍କର ସାଂସାରିକ ଅଭିଜ୍ଞତା ଓ ଦୂରଦର୍ଶିତାରେ ସମସ୍ତେ ଆସ୍ଥାବାନ୍ ଥିଲେ । ଜମିଦାରୀରେ ପ୍ରଜାମାନେ ତାଙ୍କୁ ବଡ଼ ଭୟ କରୁଥିଲେ । ତାଙ୍କର ଦୁର୍ବ୍ୟବହାର କାରି କୌଣସି ପ୍ରଜା ସହଜରେ ଜମିଦାରୀରେ ବାସ କରି ପାରୁ ନ ଥିଲା ।

ଏଥର ଜମିଦାରୀ ଗସ୍ତର ଶେଷବେଳକୁ କୃଷ୍ଣମାଧବ ଆସି ଉପସ୍ଥିତ ହୋଇଗଲେ ସେହି ଗ୍ରାମରେ,—ଯେଉଁ ଗ୍ରାମରେ କେତେକ ପ୍ରଜା ମିଳି ସେ ଦିନ ହରଶଙ୍କରଙ୍କଠାରୁ କୃଷ୍ଣମାଧବଙ୍କ ଅନୁପସ୍ଥିତିରେ ଅନାବାଦ ଜମିଗୁଡ଼ାକ ଗ୍ରହଣ କରିବା ପାଇଁ ଅନୁମତି ଆଣିଥିଲେ ।

ସେହି ଅନୁମତି ବଳରେ ସେମାନେ ଗ୍ରାମକୁ ଫେରିଆସି ଜମିଗୁଡ଼ାକ କୃଷୋପଯୋଗୀ କରିବା ବିଷୟରେ ତତ୍ପର ହୋଇପଡ଼ିଥିଲେ । ଇତିମଧ୍ୟରେ ସେମାନେ ଆପଣା ଆପଣାର ଅଂଶ ବାଣ୍ଟିନେଇ ତାହାର ସୀମା ଗଠନ କରିନେଇଥିଲେ । ପ୍ରତ୍ୟେକ କୃଷୀ ତାର ଭାଗଜମି ଗୋଟି ବଡ଼ କିଆରୀରେ ବିଭକ୍ତ କରି ହିଡ଼ ଠେକି ଦେଇଥିଲେ । ମାଘ ମାସରେ ଅଚ୍ଛାକରି ଦୁ' ଅଞ୍ଜା ବୃଷ୍ଟି ହୋଇଯାଇଥିବାରୁ କେହି କେହି ହଳ ପକାଇ ସାରିଥିଲେ । ଅନେକ ଦିନର ପଡ଼ିଆ ଜମି, ଘାସ ନ ମଲେ ଫସଲ ହେବ ନାହିଁ । ସୁତରାଂ କୃଷୀମାନେ ଆଗରୁ ଗାରେ ଦୁ'ଗାର ପକାଇ ଘାସ ମାରିବାକୁ ଯତ୍ନବାନ୍ ହୋଇଥିଲେ ।

କୃଷ୍ଣମାଧବ ସେ ଗାଁରେ ପହଞ୍ଚିଲା ପରେ ଜଣେ ଅଧେ ବୁଢ଼ୁଳିଆ ପରଶ୍ରୀ-ଅସହିଷ୍ଣୁ ଲୋକ ଆସି ସେମାନଙ୍କ ନାମରେ ଚୁଗୁଲି ଲାଗିଥିଲେ । ଅମୁକ ଅମୁକ ଲୋକେ ଜବରଦସ୍ତି କରି ଜମିଦାରଙ୍କ ଅନାବାଦୀ ଜମି ଚଷି ପକାଉଛନ୍ତି ବୋଲି ଆପତ୍ତି କରିଥିଲେ । କୃଷ୍ଣମାଧବଙ୍କର ମନେ ପଡ଼ିଗଲା, କେତେକ ପ୍ରଜା ଅନେକ ଦିନରୁ ସେଥିପାଇଁ ପ୍ରାର୍ଥୀ ଥିଲେ,—ଜମିଦାରଙ୍କ ପିରସ୍ତାରେ ଦରଖାସ୍ତ କରିଥିଲେ । ସଲାମି କଥାଟା ନେଇ ଜମିଦାର ପ୍ରଜାଙ୍କ ମଧ୍ୟରେ ଭଡ଼ା ଓଟେଇ ଲାଗିଥିଲା । କିନ୍ତୁ କାହାରିଠାରୁ ତ ସେ ଏପର୍ଯ୍ୟନ୍ତ ସଲାମି ଗ୍ରହଣ କରି ନାହାନ୍ତି । ମାଣକେ ଦେଢ଼ଶହ ଟଙ୍କା କରି ସଲାମି ନ ଦେଲେ କେହି ସେ ଜମିର ପାଖ ପଶି ପାରିବ ନାହିଁ ବୋଲି ସେମାନଙ୍କୁ ସ୍ପଷ୍ଟକରି ଶୁଣାଇ ଦେଇଛନ୍ତି । ଏପରି ଅବସ୍ଥାରେ ସେମାନଙ୍କର ଏତେ ବଡ଼ ଦମ୍ଭ ଯେ ସେମାନେ ଚଷ କରିବାକୁ ଆରମ୍ଭ କରିଦେଇଛନ୍ତି । ପ୍ରଥମେ କୃଷ୍ଣମାଧବଙ୍କର କଥାଟା ବିଶ୍ୱାସ ହେଲା ନାହିଁ । କିନ୍ତୁ ପରେ ବିଶେଷ ଅନୁସନ୍ଧାନ କରି ବୁଝିଲେ ଯେ ତାହା ସମ୍ପୂର୍ଣ୍ଣ ସତ୍ୟ,—ସେଥିରେ ଖିଲେ ହେଲେ ମିଛ ନାହିଁ । କ୍ରୋଧରେ ତାଙ୍କର ବକ୍ଷମାଂସ

ଗରମ ହୋଇ ଉଠିଲା । ତୁମୂଳ ଗର୍ଜନ କରି ସେ କଚେରୀ ଘରର ବାରଣ୍ଡା କମ୍ପାଇଦେଲେ । "କାହାର ହୁକୁମ୍‌ରେ, କାହାର ହୁକୁମରେ ଶଳାଏ ସେ ଜାଗାରେ ପାଦ ପକେଇଲେ ? ଯାଓ, ଅଭି ଯାଓ, ସବ୍ ସାଲକୋ ପକଡ଼ ଲଓ"—ବୋଲି କହି ସେ କମ୍ପିତ ହେବାକୁ ଲଗିଲେ । ଯମଦୂତପରି ପାଞ୍ଚ ପାଞ୍ଚଟା ଦାଢ଼ିବାଲା ମୁସଲମାନ ବରକନ୍ଦାଜ ଠେଙ୍ଗା ଧରି ଧାଇଁଲେ । କୃଷ୍ଣମାଧବଙ୍କର କଡ଼ା ହୁକୁମ୍—ବସିଲାଠାରୁ ଉଠେଇ ଆଣିବ । ବରକନ୍ଦାଜଗୁଡ଼ାକ ବି ସେ ଶବ୍ଦଗୁଡ଼ିକ ଭଲ ପକ୍‌କା । ଗୋଟି ଗୋଟି କରି ସମସ୍ତଙ୍କୁ ଧରି ଆଣିଲେ । ଅଶିକ୍ଷିତ ଅଜ୍ଞିଆ ସେମାନଙ୍କୁ ଆସି ଜମିଦାରଙ୍କ କଚେରୀଦୁଆରେ ହାଜର ହେବାକୁ ପଡ଼ିଲା । ନିରୀହ ପ୍ରଜାଗୁଡ଼ାକ ଉପରେ କୃଷ୍ଣମାଧବ ଏକାବେଳକେ ପଞ୍ଚମ ହୋଇଉଠିଲେ । ଯେତେ ଅଶ୍ରାବ୍ୟ ଅକଥ୍ୟ ଭାଷା ତୁଣ୍ଡକୁ ଆସିଲା ତା ସମସ୍ତ ପ୍ରୟୋଗ କରି ଗୃଲିଗଲେ । ଗରିବ ପ୍ରଜାଗୁଡ଼ାକ ମୁଣ୍ଡ ତଳକୁ ପୋତି ନୀରବରେ ସମସ୍ତ ଶୁଣି ବଡ଼ କଷ୍ଟରେ ଆହା ବରଦାସ୍ତ କରିବାକୁ ଲଗିଲେ । କୃଷ୍ଣମାଧବଙ୍କ ଅଗ୍ନ୍ୟୁଦ୍‌ଗାର ଦେଖି ସମସ୍ତେ ଅବାକ୍ ହୋଇ ରହିଲେ ।

ଘଣ୍ଟାଏ କାଳ ଅଗ୍ନିବର୍ଷଣ ପରେ କୃଷ୍ଣମାଧବ କହିଲେ—ଦେଖ, ଭଲ ଦଶା ଥିଲେ ଆଗେ ସେ ଜମିଉପରୁ ସମସ୍ତ ହିଡ଼ କାଟି ସଫା କର, ଆଉ ମୁଣ୍ଡପିଛା ପଚିଶ ଟଙ୍କା ଜରିମାନା ଦାଖଲ କର । ପରେ ଆଉ ଯେଉଁ କଥା ।

ପ୍ରଜାଗୁଡ଼ାକଙ୍କ ଉପରେ ଆକାଶ ଛିଣ୍ଡିଲା । ଏତେ ପରିଶ୍ରମ କରି ସେମାନେ ହିଡ଼ବାଡ଼ ଦେଇଥିଲେ, ହଳ କରିଥିଲେ । ସେ ସବୁତ ଗଲା, ତା ପରେ ପୁଣି ପଚିଶ ପଚିଶ କରି ଜରିମାନା । ନ ଦେଲେ ତ ରକ୍ଷା ନାହିଁ । କୃଷ୍ଣମାଧବ ଯମ, କିନ୍ତୁ ଦେବେ କେଉଁଠୁ ଆଣି ? କି ଅନ୍ୟାୟ ! ଖୋଦ୍ ଜମିଦାର ବାବୁଙ୍କ ହୁକୁମ ପାଇ ସେମାନେ ଗୁପ

ଆରମ୍ଭ କରିଛନ୍ତି, ଜୋର ଜବରଦସ୍ତି କରି ନୁହେଁ । ଏକ ପୁଣି କୃଷ୍ଣମାଧବଙ୍କର ଏ କି ହୁକୁମ ? ଏ କି ଅକାଳ ବଜ୍ରପାତ ! ପ୍ରଜାମାନଙ୍କ ମଧ୍ୟରୁ ଜଣେ ଉଠିଯାଇ ଗୋଡ଼ ଧରି ପକେଇଲା । କୃଷ୍ଣମାଧବ ତାକୁ ଗୋଇଠାଏ ଦେଲେ । ଗର୍ଜ୍ଜନ କରି ହିନ୍ଦି ଝାଡ଼ିଲେ —'ସୁଅରକା ବଚ୍ଚା, ମେହେନ୍ତରକା ଗୋଲାମ୍, ହାରମ୍‌ଜାଦା ପାଜି କାହାଁକା । ଏସା ଦିମାକ୍ । ଜମିନ୍ ଉପରକୋ ଯାନେକା ବାତ୍ସେ ବୋଲ୍ ଦେଲା ରେ ?' ଗୋଇଠା ଖାଇ ମଧ୍ୟ ଗରିବ ପ୍ରଜାଟି ଗୋଡ଼ ଧରି ପଡ଼ିରହିଲା । ଅନ୍ୟାନ୍ୟ ସମସ୍ତେ ହାତଯୋଡ଼ି କହିଲେ—ହଜୁର ମା ବାପ, ହଜୁର ନଗିଲେ ଆମେ କାହାର ହେବୁଁ ? ହଜୁରଙ୍କ ସିରସ୍ତାରୁ ହୁକୁମ୍ ପାଇ ଆମେ ସିନା ଜମି ମାଡ଼ିଲୁଁ, ନ ହେଲେ କି କାହାର ଏତେ ବହପ ହୁଅନ୍ତା ? ହଜୁର ଯଦି କହିବେ—ଆମେ ଛାଡ଼ିଦିବୁଁ, ଆମର ମୂଲ ମଜୁରି ଦେଇ ମେହେନତ ସବୁ ପଚ୍ଛେ ଗଲା ।

କଥାଟା ଶୁଣି କୃଷ୍ଣମାଧବ ଚମକି ଉଠିଲେ । କଣ ? ହଜୁରଙ୍କ ସିରସ୍ତାରୁ ହୁକୁମ୍ ପାଇ ? କିଏ ହୁକୁମ ଦେଲା ? କେବେ ? ପ୍ରଜାମାନେ ବିନୀତଭାବରେ ଉତ୍ତର ଦେଲେ ଖୋଦ୍ ଜମିଦାରବାବୁଙ୍କ ହୁକୁମ୍‌ରେ ସେମାନେ ଚାଷ ଆରମ୍ଭ କରିଛନ୍ତି । କୃଷ୍ଣମାଧବ ପୁନଶ୍ଚ ଚମକି ଉଠିଲେ । ପଚାରିଲେ, କିଏ—ହରଶଙ୍କର ? ପ୍ରଜାମାନେ ଉତ୍ତର ଦେଲେ—'ଆଜ୍ଞା, ହଁ ।' ତା'ପରେ ଗୋଟି ଗୋଟି କରି ସେ ଦିନର ସମସ୍ତ ଘଟଣା କହିଗଲେ । କିପରି ସେମାନେ ସେଦିନ କୃଷ୍ଣମାଧବଙ୍କ ନିକଟରେ ଗୁହାରି କରିବାକୁ ଯାଇଥିଲେ, କିନ୍ତୁ କୃଷ୍ଣମାଧବ ଅନୁପସ୍ଥିତ ଥିଲେ; ଜମିଦାରବାବୁ ନିଜେ ତାଙ୍କର ଗୁହାରି ଶୁଣି ହୁକୁମ ଦେଇଥିଲେ, ସଂଗୁମାସ୍ତା ସେମାନଙ୍କୁ ତାଙ୍କର ଆଦେଶ ପଢ଼ି ଶୁଣାଇ ଦେଇଥିଲେ, ଇତ୍ୟାଦି ଇତ୍ୟାଦି ।

ଏକଥାଟା ଶୁଣି କୃଷ୍ଣମାଧବ ଅବାକ୍ ହୋଇଗଲେ । କିନ୍ତୁ ଅବିଶ୍ୱାସ କରିବାର ଉପାୟ ନାହିଁ । ତାଙ୍କ ମୁହଁ ଉପରେ ଏଡ଼େ ବଡ଼ ଗୋଟାଏ ମିଥ୍ୟା କହିବାକୁ ପ୍ରଜାମାନେ କଦାପି ସାହସ କରିବେ ନାହିଁ । ସେ କିଛିକ୍ଷଣ ଚୁପ୍ ମାରି ବସି ରହିଲେ । ଭାବିଲେ—ବୋଧହୁଏ ହରଶଙ୍କର ଘରକୁ ଫେରିଆସିଛନ୍ତି, ନିଜର ଅନୁପସ୍ଥିତିରେ ଏହିପରି ଏକ କାଣ୍ଡ ଘଟିଯାଇଛନ୍ତି । ଖାମଖିଆଲିଆ ଟୋକା ! ପାଠପଢ଼ି ମୂର୍ଖ ! ଜମିଦାରକୁଳରେ ଜନ୍ମହୋଇ ଜମିଦାରଟିଏ କରି ଜାଣେ ନାହିଁ, ମସ୍ତ ପାଗଳ । ଏହା ଭିତରେ ଘରକୁ ଫେରିଆସି ଏ ବୁଦ୍ଧିହୀନତା ପ୍ରକାଶ କରି ବସିଛନ୍ତି । କୃଷ୍ଣମାଧବ ବହୁଦିନାବଧି ଘରେ ଅନୁପସ୍ଥିତ ଥିବାରୁ ଏସବୁ ତାଙ୍କୁ ମାଲୁମ୍ ନାହିଁ । ପ୍ରଜାମାନଙ୍କ ଉପରେ ଯେଉଁ ରାଗଟିକ ଚଢ଼ିଥିଲା ତାହା ବର୍ତ୍ତମାନ ହରଶଙ୍କରଙ୍କୁ ଲକ୍ଷ୍ୟ କରି ତେଜି ଉଠିଲା । ଗରମ୍ ମିଜାଜରେ ଭାବିଲେ—ନିଜ ଜମିଦାରୀ ପରିଚାଳନା କରିବାକୁ ହରଶଙ୍କରଙ୍କର ଯଦି ଏତେ ଇଚ୍ଛା, ତେବେ ଆଜି କାହିଁକି ସେ ସମସ୍ତ କାଗଜପତ୍ର ବୁଝି ନେଉ ନାହିଁ ? ତା ହେଲେ ତ କୃଷ୍ଣମାଧବ ନିଶ୍ଚିନ୍ତ ହୋଇପାରନ୍ତେ । ତାର ଜମିଦାରୀ ସେ ଚଳେଇବ, ଯେପରି ଇଚ୍ଛା ସେପରି ଚଳେଇବ । ସେଥିପାଇଁ ସେ ଯଦି ଅନ୍ୟଲୋକର ପରାମର୍ଶ ନ ଲୋଡ଼େ, ତେବେ କୃଷ୍ଣମାଧବ କାହିଁକି ଉପରେ ପଡ଼ି ତାହା ଦେବାକୁ ଯିବେ ? ନା, ଯେତେଦିନ ତା ହୋଇଥିଲା ସେତେଦିନ, ଅଉ ନୁହେଁ । ପୁଅ ଯୁଆକୁ ବାଘ ଖାଇଲାଣି । ତାଙ୍କ ପରାମର୍ଶର ଆଉ ପ୍ରୟୋଜନ ନାହିଁ । ସୁତରାଂ ତାଙ୍କୁ ଏ ଝକ୍‌ମାରି କାମ ଛାଡ଼ିବାକୁ ହେବ ।

କୃଷ୍ଣମାଧବ ଏହିପରି କେତେ କଣ ଗରମ ମିଜାଜରେ ଭାବିଗଲେ । କିନ୍ତୁ ଏସବୁ ଭାବ ପ୍ରଜାମାନଙ୍କ ଆଗରେ ପ୍ରକାଶ କରିବାଟା ବୁଦ୍ଧିର କାର୍ଯ୍ୟ ବୋଲି ମନେ କଲେ ନାହିଁ । କିଛି କ୍ଷଣ ନୀରବ ରହି ସେ

କହିଲେ—ଦେଖ, ହରିଶଙ୍କର ଯେତେ ହେଲେ ପିଲା । ତାକୁ ଭୁଲେଇଭାଳେଇ ଏ ଭଳି କାମ ଥରେ କରି ନେଲ । କିନ୍ତୁ ପୁନର୍ବାର ଯଦି କର ତେବେ ଜାଣିବ, କୃଷ୍ଣମାଧବ କି ଭଳି ଲୋକ । ଏହା କହି ସେ ପ୍ରଜାମାନଙ୍କୁ ସତର୍କ କରି ଫେରାଇଦେଲେ । କିନ୍ତୁ କପଟୀ ଗୋଟାଏ ପରାଜୟର ଭାବ ତାଙ୍କ ପ୍ରାଣ ମଧ୍ୟରେ ଲାଗି ରହିଲା । ଭିତରେ ଭିତରେ ଗୋଟାଏ ଅବ୍ୟକ୍ତ ଅସ୍ୱସ୍ତି କୁହୁଳିବାକୁ ଲାଗିଲା ।

କୃଷ୍ଣମାଧବ ଅନ୍ୟ କୌଣସି ସ୍ଥାନକୁ ନ ଯାଇ ସେହିଦିନ ଫେରି ଆସିଲେ । ଉଆସକୁ ନ ପଶି ଅତେ କଚେରୀଘରେ ପ୍ରବେଶ କରି ବଧୂଗୁମାସ୍ତାଙ୍କୁ ତଲବ କଲେ । ଗୁମାସ୍ତାବାବୁ ଆସିଲାରୁ ସମସ୍ତ ହାଲ୍ ତନ୍ନ ତନ୍ନ କରି ବୁଝିଲେ । ପ୍ରଜାମାନଙ୍କ ଆବେଦନ ପତ୍ର ଉପରେ ହରିଶଙ୍କରଙ୍କ ସ୍ୱହସ୍ତ ଲିଖିତ ଆଦେଶ ପାଠକଲେ । ଏତେ ଗୁଡ଼ାଏ ଜମିଦାରର ନ୍ୟୂନ୍ କମ୍‌ରେ ହଜାରେ ଟଙ୍କା ସଲାମି ମିଳିଥାନ୍ତା—ସେଥିରୁ ଗୋଟାଏ ପାହୁଲା ବି ଆଦାୟ କରାଯାଇ ନାହିଁ, ସମସ୍ତ ଛାଡ଼ ଦିଆଯାଇଛି । କି ଦିଲଦାର ଅମୀର ! କୃଷ୍ଣମାଧବଙ୍କ ହାଡ଼ କଡ଼ କଡ଼ ହୋଇ ଉଠିଲା । ବଧୂ ଗୁମାସ୍ତା ଉପରକୁ କାଗଜଟା ଫୋପାଡ଼ି ଦେଇ ମୁହଁ ବିକଟାଳ ତୀବ୍ର କଣ୍ଠରେ କହିଲେ—ଏଠି ଜମିଦାରୀର ମଙ୍ଗଳାମଙ୍ଗଳ ଦେଖିବାକୁ ଅଛ ନା ଘାସ କାଟିବାକୁ ଅଛ ? ନିମକ୍‌ହାରାମ୍, ତମକୁ ସବୁ ପୂର କରିବାକୁ ହେବ ।

ଗାଳିଖାଇ ବଧୂ ଗୁମାସ୍ତା ମେଁ ମେଁ ହେବାକୁ ଲାଗିଲେ । ବେକସୁର ବୋଲି ନିଜକୁ ପ୍ରମାଣ କରିବାକୁ ଚେଷ୍ଟାକରି ଉପଯୁକ୍ତ କୃଷ୍ଣମାଧବଙ୍କ ସାମନାରେ କିନ୍ତୁ ହେଲେ କହି ପାରିଲେ ନାହିଁ, କେବଳ ଥଙ୍ଗ ଥଙ୍ଗ ହେବା ସାର ହେଲା । କୃଷ୍ଣମାଧବ କ୍ରୋଧରେ, ବିରକ୍ତିରେ ଭୟଙ୍କର ସ୍ଫୀତ ହୋଇ ନିଜର ବୈଠକଖାନାକୁ ଚାଲିଗଲେ ।

ସେ ହରଶଙ୍କରଙ୍କ ଚିଠି ପାଇ ଯାଉଥିଲେ । ସେ ଯାଇ ଦୀପ୍ତି ନିକଟକୁ ତାଙ୍କ ଚିଠିଟା ମଧ୍ୟ ପଠାଇ ଦେଇପାରୁଥିଲେ । କିନ୍ତୁ କୃଷ୍ଣମାଧବଙ୍କ ପାଖକୁ ଲେଖାହୋଇଥିବା ଚିଠିଟା ତାଙ୍କ ପାଖରେ ଥିଲା । ଭୟରେ ସେ ଚିଠିଟାର କଥା ସେ ଭୁଲିଗଲେ, ଦେଇପାରିଲେ ନାହିଁ । ଭୁଲି ନ ଯାଇଥିଲେ ମଧ୍ୟ ସେତେବେଳେ ଦେଇ ପାରି ନ ଥାନ୍ତେ । କୃଷ୍ଣମାଧବଙ୍କ କ୍ରୋଧ ଓ ବିରକ୍ତି ଦେଖି ତାଙ୍କର ପ୍ଲୀହା ଜଳବତ୍ ତରଳ ହୋଇଯାଉଥିଲା । ପରେ ସୁସମୟ ଦେଖି ସେ ସେ ଚିଠିଟା କୃଷ୍ଣମାଧବଙ୍କ ହାତରେ ଅର୍ପଣ କରିବାକୁ ବସିଥିଲେ ।

---

## ଷୋଡ଼ଶ ପରିଚ୍ଛେଦ

କୌଣସି ଗୋଟାଏ ପୂତିଗନ୍ଧମୟ କଦର୍ଯ୍ୟ ରାସ୍ତା ଦେଇ ଯାଉଁ ଯାଉଁ ହଠାତ୍ ଯେତେବେଳେ ଗୁଡ଼ାଏ ସଦ୍ୟ ବିଷ୍ଠା ଉପରେ ପାଦ ପଡ଼ିଯାଏ, ସେତେବେଳେ ମନୁଷ୍ୟର ଅନ୍ତରାତ୍ମାଟା ଯାହା ହୁଏ ଏବଂ ନାସା-ମୁଖର ଆକୃତି ଯେଉଁ ବିକୃତି ଧାରଣ କରେ, ହରଶଙ୍କରଙ୍କ ଚିଠିଟା ପଢ଼ି କୃଷ୍ଣମାଧବଙ୍କର ଠିକ୍ ତାହାହିଁ ହୋଇଗଲା । କି କୁତ୍ସିତ କଥା ! ବ୍ରାହ୍ମଣ ସହିତ ଶୂଦ୍ରର ବିବାହ ! କଣ ଆଉ ବାକି ରହିଲା ? କଳିର ଭୋଗ ଏଥର ପରିପୂର୍ଣ୍ଣ । କୃଷ୍ଣମାଧବ ସ୍ତମ୍ଭୀଭୂତ ହୋଇ ବସିଗଲେ ।

ଜମିଦାରୀ କାର୍ଯ୍ୟରେ ହରଶଙ୍କରଙ୍କ ହସ୍ତକ୍ଷେପ ମନରେ ଦାରୁଣ ଆଘାତ ଦେଇଥିଲା । କିନ୍ତୁ ସଂସାରଭିଜ୍ଞ କୃଷ୍ଣମାଧବ ସେଟା କୌଣସି ପ୍ରକାରେ ସହିଯିବାକୁ ଚେଷ୍ଟା କରୁଥିଲେ । ଭାବୁଥିଲେ ଯେତେ ହେଲେ ହରଶଙ୍କର ଜମିଦାର, ସମ୍ପତ୍ତିର ମାଲିକ । ହଜାରେ ଅମ୍ଭୀୟ

ହେଲେ ବି କୃଷ୍ଣମାଧବ କର୍ତ୍ତ୍ୱଗ୍ରାହୀ ମାତ୍ର । ଶତ ପ୍ରବୃତ୍ତି ଜାଗିଲେ ବି ସେ ପ୍ରମତ୍ତ ହୋଇ ନ ପାରନ୍ତି । ସୁତରାଂ ମାଲିକର ବିରୁଦ୍ଧାଚରଣ କରି ଲାଭ କଣ ? ଯଦିଓ ଠିକା ଅଦାୟ ହୋଇଥିଲେ, ତାହାରି ଆୟ ବୃଦ୍ଧି ହୋଇଥାନ୍ତା । ସେ ଯଦି ତାର ଆୟବୃଦ୍ଧି ନ ଚାହେଁ, ତେବେ ଅନ୍ୟ ଲୋକର ସେଥିରେ ମଥାବ୍ୟଥା କାହିଁ ?

ଏହିପରି ଭାବି କୃଷ୍ଣମାଧବ ସେଥିରେ ଉଦାସୀନ୍ୟ କରିବାଟା ସାଂସାରିକ ଦୃଷ୍ଟିରୁ ଅବଶ୍ୟକତାର କାର୍ଯ୍ୟ ବୋଲି ମନେ କରୁଥିଲେ । ଘଟଣାଟାକୁ ଆଖି ବୁଜି ପିଠେଇଦେବାକୁ ସେ ସଂକଳ୍ପ କରିଥିଲେ । ମାତ୍ର ହରଶଙ୍କରଙ୍କର ଏହି ଶୂଦ୍ରବିବାହ ପ୍ରସ୍ତାବଟା ସେଥିରେ ପ୍ରଚଣ୍ଡ ପ୍ରତିବନ୍ଧକ ସୃଷ୍ଟିକଲା । ଏଟାକୁ ତ ସେ କୌଣସି ପ୍ରକାରେ ସମର୍ଥନ କରି ନ ପାରନ୍ତି । ଜାତି ବିରୁଦ୍ଧରେ ଏତେ ବଡ଼ ଗୋଟାଏ ଅତ୍ୟାଚାରର ପ୍ରଶ୍ରୟ ଦେବା କି ତାଙ୍କ ପକ୍ଷରେ ସମ୍ଭବ ? ତାହା କି ପ୍ରକାରାନ୍ତରେ ନରକାନ୍ତ ହେବାର ଚେଷ୍ଟା ନୁହେଁ ? ସମାଜପତି ବୋଲି କୃଷ୍ଣମାଧବଙ୍କର ସ୍ଥାନ ଅଛି । କିନ୍ତୁ ସମାଜପତି ହୋଇ ସେ ଯଦି ଏଭଳି ଦୁଷ୍କାର୍ଯ୍ୟର ପକ୍ଷପାତୀ ହୁଅନ୍ତି, ତେବେ ସମାଜରେ ତାଙ୍କର ସ୍ଥାନ ରହିବ କିପରି ? କାହିଁକି ବା ରହିବ ? ନା, ବାଁଚି ଥାଉଁ ଥାଉଁ କୃଷ୍ଣମାଧବ ଏଭଳି ଗୋଟାଏ ଅପକର୍ମର ସହାୟ ହୋଇ ପାରିବେ ନାହିଁ, ନାହିଁ, ନାହିଁ ।

କୃଷ୍ଣମାଧବ ଉତ୍ତେଜିତ ହୋଇ ଉଠିଲେ । ମନେ ମନେ ପ୍ରତିଜ୍ଞା କଲେ,—ଯାହା ହେଉ ନା କାହିଁକି, ସେ ଏଥିରେ ପ୍ରାଣପଣେ ବାଧା ଦେବେ । ନିତାନ୍ତ ଯଦି ଏଥିପାଇଁ ତାଙ୍କ ସମ୍ପର୍କ ତ୍ୟାଗ କରିବାକୁ ପଡ଼େ ତାହା ବି ସେ କରିବେ । ଚିରଦିନର ମାୟାବନ୍ଧନ ଛିନ୍ନ କରିବା କଷ୍ଟକର ସତ୍ୟ, କିନ୍ତୁ ହେଲେଇ ବା ? ଶେଷରେ କି ସେ ଜାତିଧର୍ମରୁ ଚ୍ୟୁତ ହୋଇ ନରକର ରାସ୍ତା ସଫା କରି ବସିବେ ?

କୃଷ୍ଣମାଧବ ବିଚଳିତ ହୋଇ ଉଠିଲେ । ଇଚ୍ଛା ହେଲା—ସଙ୍ଗେ ସଙ୍ଗେ ହରିଶଙ୍କରଙ୍କ ନିକଟକୁ ଉତ୍ତର ଦେଇ ସମସ୍ତ କଥା ପରିଷ୍କାର କରି ଲେଖିଦେବାକୁ । ହରଶଙ୍କର ଯଦି କାତନ୍ତ୍ରୁ ହେବାକୁ ଚାହାଁନ୍ତି, ତା ହେଲେ ଅତୀତର ଦାୟିତ୍ୱରେ ତାହା କରନ୍ତୁ, ସେଥିରେ କୃଷ୍ଣମାଧବ ଲିପ୍ତ ହେବାକୁ ଚାହାନ୍ତି ନାହିଁ । ଯାହାକୁ ଦୁର୍ବୁଦ୍ଧି ଗ୍ରାସ କରିଛି, ତାହାର ଫଳ ତାକୁହିଁ ଭୋଗ କରିବାକୁ ହେବ ।

ଏହା ଭାବି କୃଷ୍ଣମାଧବ ଉଠିଯାଇ ଜବାବ୍ ଲେଖିବା ଆରମ୍ଭ କରିଦେଲେ । "ନ ପାପଦ୍ ଦୃଶ୍ୟୋବେତ୍ତୁ" ପର୍ଯ୍ୟନ୍ତ ଲେଖି ସେ କଲମଟା ଥୋଇଦେଇ ଭାବିଲେ— କେଉଁ ଠିକଣାରେ ଚିଠି ଦେବେ ? ଠିକଣା କାହିଁ ? ହରିଶଙ୍କରଙ୍କ ଚିଠି ପଢ଼ି ଦେଖିଲେ, ଲେଖା ଅଛି କେବଳ ସମ୍ବଲପୁର । କିନ୍ତୁ ସମ୍ବଲପୁରର ଠିକ୍ କେଉଁ ଜାଗାରେ ସେ ? ଚିଠିଦେଲେ ପାଇବ ତ ? ତାର ଠିକ୍ କଣ ?

ଏହାପରି ସାତ ପାଞ୍ଚ ଭାବି ସେ ପତ୍ର ଲେଖା ବନ୍ଦ କଲେ । କିନ୍ତୁ ମନଟା ସ୍ଥିର ହୋଇ ରହି ପାରିଲା ନାହିଁ । ହରଶଙ୍କରଙ୍କ ଚିଠିଟା ହାତରେ ଧରି ଗୋଟାଏ ଚିନ୍ତିତ ଅପ୍ରସନ୍ନ ମୁଖରେ ସେ ଉଆସ ଭିତରକୁ ଚାଲିଲେ ।

ଭିତରେ ପ୍ରବେଶ କରି ସେ ଗମ୍ଭୀର କଣ୍ଠରେ ଡାକ ଦେଲେ— ନାନି ! ରାଧାପ୍ରିୟା ନିଜର ଶୟନକକ୍ଷରେ ବସି, ସୁଷମାକୁ ପାଖରେ ବସାଇ କହୁଥିଲେ—"ମା, ତୋର ହାତରେ ସବୁ କଥା । ପାଗଳା ମିଲଟା ଯେ ଝୁଙ୍କ ଧରିଛି, ତୁହି ଏକା ତାର ଝୁଙ୍କ ଭାଙ୍ଗିପାରୁ । ମିଲ୍‌ଦିନରୁ ଯେ ଏହାପରି ଝୁଙ୍କ, ଯାହା ଗୋଟାଏ ମନରେ ପଶିଥିବ ସେଥିପାଇଁ—ଆଗପଛ କିଛିହେଲେ ଦେଖିବାକୁ ଯାଏ ନାହିଁ,—ସମ୍ଭବ ଅସମ୍ଭବ ଦେଖେ ନାହିଁ,—ଚନ୍ଦ୍ରକର ଗୋଟାଏ କଥା ଧରିବସେ, ଆଉ ସେଥିରେ ବାଇଆ ହୋଇଯାଏ । ଶିଶୁକାଳ ତାର ଏଇ ସ୍ୱଭାବ, ଏଇ

ପାଗଳାମି । ମୋର ଖୁବ୍ ବିଶ୍ୱାସ, ତୋହର କଥାରେ ଫଳହେବ, ମା । ତୁ ଟିକିଏ ବାପୁଙ୍କୁ ବୁଝେଇ ଦେ, ଏମିତି ଗୋଟାଏ ବିବାହ କୌଣସିମତେ ସମ୍ଭବ ନୁହେଁ । ଶୁଣୁଛୁ ମା ?

ସୁଷି ଅନତନୟନରେ ଖଡ଼କା ଖଣ୍ଡିଏ ଧରି ଭୂଇଁରେ ଗାର କାଟୁଁ କାଟୁଁ ମୁଣ୍ଡ ହଲେଇ ନୀରବରେ ସମ୍ମତି ଜ୍ଞାପନ କରୁଥିଲା । ଠିକ୍ ଏହିପରି ସମୟରେ କୃଷ୍ଣମାଧବ ଡାକିଲେ—ନାନି !

ସ୍ୱର୍ଣ୍ଣପ୍ରିୟା ଧଡ଼ ପଡ଼ି ଉଠି ଦୁଆର ନିକଟକୁ ଆସି ଜବାବ୍ ଦେଲେ—କିଏ ରେ, କୃଷ୍ଣ ? କେତେବେଳେ ଆସିଲୁ ? ଆ, ଏଇ ଘରକୁ ଆ ।

କୃଷ୍ଣମାଧବ ଗୃହ ମଧ୍ୟରେ ପ୍ରବେଶ କରନ୍ତେ ସ୍ୱର୍ଣ୍ଣପ୍ରିୟା ସୁଷିକୁ ସମ୍ବୋଧନ କରି କହିଲେ—ସୁଷମା, ଏଇ ତୋର ମାମୁ ।

ସୁଷମା ବ୍ୟସ୍ତ ହୋଇ ସମ୍ମୁଖରେ ଆସି କୃଷ୍ଣମାଧବଙ୍କ ପାଦତଳେ ମସ୍ତକ ସ୍ପର୍ଶ କରି ପ୍ରଣାମ କଲା । କୃଷ୍ଣମାଧବଙ୍କ ଦୃଷ୍ଟି ତାର ସଲଜ୍ଜ ସୁନ୍ଦର ମୂର୍ତ୍ତିଟି ଉପରେ ପଡ଼ି ଯେପରି ମୁଗ୍ଧ ହୋଇଗଲା । କୃଷ୍ଣମାଧବ ଟିକିଏ ସ୍ତବ୍ଧ ହୋଇ ରହିଲେ । କିନ୍ତୁ ତାହା କ୍ଷଣକାଳ ପାଇଁ । କ୍ଷଣକ ପରେ ସେ ଦୃଢ଼ ହୋଇ ଉଠିଲେ । ମନେ ମନେ କହିଲେ—ଏଇ ବୋଧହୁଏ ସେହି । ହରଶଙ୍କରଙ୍କୁ ବିପଥଗାମୀ କରିବାକୁ ଯାଉଛି— ଏଇ ଭ୍ରଷ୍ଟା, ଏଇ ମାୟାବିନୀ, ଏହି ବିଧବା ମୂର୍ତ୍ତି ? କୃଷ୍ଣମାଧବ ସ୍ୱର୍ଣ୍ଣପ୍ରିୟାଙ୍କୁ ସମ୍ବୋଧନ କରି କହିଲେ—ନାନି ! ତୋ ସାଙ୍ଗରେ କେତେକ କଥା ଅଛି, ଟିକିଏ ନିରୋଳା ହେଲେ ଭଲ ହୁଅନ୍ତା ।

ସୁଷି ଏ କଥାର ତାତ୍ପର୍ଯ୍ୟ ବୁଝିପାରି କାହାରି ଆଦେଶର ଅପେକ୍ଷା ନ ରଖି ଘରୁ ନୀରବରେ ବାହାରିଗଲା । ପାର୍ଶ୍ୱବର୍ତ୍ତୀ ଗୋଟିଏ କ୍ଷୁଦ୍ର ପ୍ରକୋଷ୍ଠରେ ବସି କୌଣସି ଗୋଟାଏ କାର୍ଯ୍ୟରେ ନିଜକୁ ନିଯୁକ୍ତ କରିବାକୁ ଯତ୍ନ କଲା । କିନ୍ତୁ ମନଟା ଛନଛନ ହେବାକୁ ଲାଗିଲା ।

କୃଷ୍ଣମାଧବ ଆଲୋଚନାର ସୂତ୍ରପାତ କଲେ । କହିଲେ—କି କାଣ୍ଡ ଏସବୁ ହଉଛି ନାନା ! ତୋତେ କଣ ଏସବୁ ସୁନ୍ଦର ଦେଖା ଯାଉଛି ? ଯାହା ଲୋକ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରିବ ନାହିଁ ସେହିପରି ଘଟଣା ଯେ ତୋର ଆଖି ଆଗରେ ଘଟିଯାଉଛି, ତା କି ତୁ ଦେଖୁନାହୁଁ ?

କୃଷ୍ଣମାଧବ ଯେ ହଠାତ୍ ଉପସ୍ଥିତ ହୋଇ ଏକାବେଳକେ ରାଧାପ୍ରିୟାଙ୍କ ଉପରେ କଥାଟା ଏପରି ଆକସ୍ମିକ ଭାବରେ ପକାଇଦେବେ ଏହା ରାଧାପ୍ରିୟା ଭାବି ନ ଥିଲେ । ସେଥିପାଇଁ ସେ ଆଦୌ ପ୍ରସ୍ତୁତ ନ ଥିଲେ । ତେଣୁ କଣ କହି ଏହାର କୈଫିୟତ ଦେବେ ତାହା ସେ ସ୍ଥିର କରି ନ ପାରି ମୂକ ହୋଇ ରହିଲେ ।

କୃଷ୍ଣମାଧବ କହିବାକୁ ଲାଗିଲେ—ତୁ ଯାହା କହ ନାନା ! ଏସବୁ ଦିନକୁ ଦିନ ଅସହ୍ୟ ହୋଇ ଉଠୁଛି । ମଣିଷ ଆଉ କେତେ ସମ୍ଭାଳି ପାରେ ? ତାର ତ ପୁଣି ଆତ୍ମସମ୍ମାନ ଜ୍ଞାନ ଅଛି, ଭଲମନ୍ଦ ବିଚାରକରି ଚଳିବାର ଦାୟିତ୍ୱ ରହିଛି । ସବୁ କଥାକୁ ତ ସେ ସବୁବେଳେ ଆଖି ବୁଜି ଦେଇ ଚଳି ନ ପାରେ । ଆଜି ମୁଁ ସ୍ପଷ୍ଟ ଦେଖି ପାରୁଛି ନାନା, ଏଠି ଆଉ ବେଶି ଦିନ ନୁହେଁ ।

କଥାଟା ଶୁଣି ରାଧାପ୍ରିୟା ଚମକି ଉଠିଲେ । କୃଷ୍ଣମାଧବଙ୍କ ମୁହଁରେ ଏ କଥାଟା ନିତାନ୍ତ ଅସ୍ୱାଭାବିକ ଶୁଣାଗଲା । ରାଧାପ୍ରିୟାଙ୍କ ହୃଦରେ କିଏ ଯେପରି ଗୃହିଁ କରି ଗୋଟାଏ ଅଗ୍ନିଶଳାକା ମାରି ଦେଇଗଲା । ସେ ବ୍ୟସ୍ତବିକଳ ହୋଇ କହିଲେ—କଣ କହୁଛୁ ରେ କୃଷ୍ଣ ? ତୋ ମୁହଁରେ ଆଜି ଏ କି କଥା ?

କୃଷ୍ଣମାଧବ କବାବ୍ ଦେଲେ—ଏତେ ବଡ଼ କଥାଟା ଆଜି ତୋ ଆଗରେ କହିବା ମୋ ପକ୍ଷରେ ଯେ କି କଷ୍ଟକର ତା ମୁଁ ବୁଝିପାରୁଛି, ନାନା ! କିନ୍ତୁ ନ କହି ଉପାୟ ନାହିଁ । ଏତେ ଦିନ ହେଲା ତୋର

ଅନ୍ତଃପୁରରେ ବନ୍ଦୀ ଅଛିଲି । ଭାଇ ଶିବଶଙ୍କର ନିକଟରେ ମୁଁ ଯେ କି ପରିମାଣରେ ଋଣୀ ତା କଥାରେ ପ୍ରକାଶ କରି ହେବ ନାହିଁ । ଏବେ ଉପକାର ସଂସାରରେ କେହି କାହାର କରେ ନାହିଁ । ଶିବଭାଇ ମୋର ଯାହା କରିଛନ୍ତି, ମରି ମାଟି ହେଲେ ବି ତା ଭୁଲି ପାରିବି ନାହିଁ । ଲୋକେ କହନ୍ତି—'ଶିବଶଙ୍କର ରାଜା, କିନ୍ତୁ ରାଜତ୍ୱ କରେ କୃଷ୍ଣମାଧବ ।' ଏ କଥାଟା କେତେ ପରିମାଣରେ ଠିକ୍ ତା ମୁଁ ଯେତେ ବୁଝେଁ, ବୋଧହୁଏ ଆଉ କେହି ତେତେ ବୁଝିପାରିବ ନାହିଁ । ସେ ବର୍ତ୍ତମାନ ସ୍ୱର୍ଗବାସୀ, ଆଉ ତାଙ୍କର ସ୍ୱର୍ଗବାସ ସଙ୍ଗେ ସଙ୍ଗେ ମୋର ବି ସେ ସୁଖର ଦିନ ଯାଇଛି ଭଉଣି !

ଏହା କହି କୃଷ୍ଣମାଧବ ଗୋଟାଏ ନିଶ୍ୱାସ ତ୍ୟାଗକଲେ । ରାଧାପ୍ରିୟା ପୁନଶ୍ଚ ବ୍ୟସ୍ତ ହୋଇ କହିଲେ—କାହିଁକି ରେ କୃଷ୍ଣ ? ଏମିତ ଗୁଡ଼ାଏ କାହିଁକି ଭାବୁଛୁ ? ତୋର କଣ ହେଲା ?

କୃଷ୍ଣମାଧବ ଉତ୍ତର ଦେଲେ—ତୁ କଣ ଦେଖୁନାହୁଁ ନାନି ? ଶିବଭାଇଙ୍କ ଅମଳରେ ଏଇ କୃଷ୍ଣମାଧବ କଣ ନ କରିଛି ? କିନ୍ତୁ ଆଜି କି ଆଉ ସେ କଥା ଅଛି ? ତାର ଇଚ୍ଛାରେ କି ଆଜି ସବୁ କାମ ହଉଛି ? ଅବଶ୍ୟ ଜମିଦାରୀର କଥା ମୁଁ କହୁନାହିଁ ନାନି ! ସେ ଜିନିଷଟା ହରଶଙ୍କରର । ତାର ଯେମିତି ଇଚ୍ଛା ସେ ସେମିତି ଚଳେଇବ । ସେ ବିଷୟରେ ଆପତ୍ତି କରିବାଟା ଅନ୍ୟ ଲୋକର ଧୃଷ୍ଟତା । ମୁଁ କାହିଁକି ସେଥିରେ ବାଧା ଦେବି ? ଏଇ ଯେ ସେ ଦିନର ଘଟଣାଟା ହେଲା,—ତୁ ଜାଣୁ କି ନା ଅବଶ୍ୟ ମୁଁ ଜାଣେ ନାହିଁ,—ହେଲେ ମୁଁ ତ ସେଥିରେ ତିଳେମାତ୍ର ଆପତ୍ତି କରି ନାହିଁ । ବୁଝିଲୁ ନା, ମୁଁ କହୁଛି ସେହି ସଲାମି ଟଙ୍କାଟା ଛାଡ଼ିଦେବା କଥା । କେତେଗୁଡ଼ାଏ ପ୍ରଜା ଅନାବାଦି ଜମି ଚାଷ କରିବା ପାଇଁ ପ୍ରାର୍ଥୀ ଥିଲେ; ମୁଁ ସେମାନଙ୍କଠାରୁ କିଛି ସଲାମି ଆଦାୟ କରି ସେମାନଙ୍କୁ

ଗ୍ରହଣ କରିବାକୁ ଅନୁମତି ଦେବାକୁ ଚାହିଁଥିଲି । ମଜାରେ ଟଙ୍କାରୁ କିଛି ସଲାମି ଆଦାୟ ହୋଇ ନ ଥାନ୍ତା । କିନ୍ତୁ ହରଶଙ୍କର ମୋର ଅନୁପସ୍ଥିତିରେ, ଏପରିକି ମୋତେ ପଦେ ନ ପଚାରି, ସମସ୍ତ ଟଙ୍କାଟା ଛାଡ଼ି ଦେଲା । ମୁଁ ଗସ୍ତରୁ ଫେରି ଶୁଣିଲି । ଅବଶ୍ୟ ଏଟା କାନରେ ହାତ ଦେବା ଭଳି ଗୋଟାଏ କଥା । କିନ୍ତୁ ତା ହେଲେ ବି,—ମୁଁ କାହିଁକି ସେଥିରେ ବାଧା ଦେବି ? ହରଶଙ୍କର ଜମିଦାର, ମୁଁ ଯେତେ ହେଲେ ତାର ଗୋଟାଏ କର୍ମଚାରୀ ଛଡ଼ା ଆଉ କିଛି ତ ନୁହେଁ । ମୁନିବର ଇଚ୍ଛା ବିରୁଦ୍ଧରେ ମୁଁ ଗୋଟାଏ କାମ କରିବାକୁ ଯିବି କାହିଁକି ? କହିଲି—ଯାଉ ଦେ । ହରଶଙ୍କର ଯଦି ଛାଡ଼ି ଦେଇଛି, ବେଶ୍ ଭଲ ହେଲା । ଟଙ୍କାଟା ତାହାରି ହାତକୁ ଆସିଥାନ୍ତା । ସେ ଯଦି ହାତକୁ ନେବାକୁ ନ ଚାହେଁ, ତେବେ ସେଥିରେ ଅନ୍ୟ ଲୋକର କହିବାର କଣ ଅଛି ? ମୁଁ କିଛି ଅନ୍ୟାୟ କଥା କହୁଛି ନାନି !

ରାଧାପ୍ରିୟା କହିଲେ—ନ୍ୟାୟ ଅନ୍ୟାୟର କଥା କିଏ ରେ କୃଷ୍ଣ ? ହରି ପିଲାଟା, ଟିକିଏ ଦାନ ତ ଦେଇପାରେ ବାପା । ସେ କଣ ଏତେ କଥା ବୁଝିବ ? ଏତେ ଆଡ଼କୁ ନଜର ଦିଏ ? କେହି ଯଦି କାନ୍ଦି କାଟି ପଦେ କହିଦେଲା, ଯାଃ ଗୋଟାକସାରୁ ତାହାରି । ହରିର ଦୟା ମାୟା କଥା କି ତୁ ଜାଣୁ ନାହିଁ ରେ କୃଷ୍ଣ, ଏଇଥିପାଇଁ ଅଭିମାନ କରିବସିଛୁ ?

କୃଷ୍ଣମାଧବ ବାଧା ଦେଇ କହିଲେ—ନା, ନା, ନା, ତୁ ସେ ଭୁଲ ବୁଝିଲୁ ନାନି ! ମୁଁ କଣ ସେଥିପାଇଁ ଅଭିମାନ କରୁଛି ? ଢଳାର୍ଦ୍ଧ ନୁହେ । ତାର ଜମିପାଟକ, ତାଙ୍କ ହାତ ସେ ଦୟାକଲା, ସେଥିରେ ଅଭିମାନ କରିବାର କଣ ଅଛି ? ରାଗ କରିବାର ବା କଣ ଅଛି ? ତା ନୁହେଁ । ସେଇଟାତ ଅତି ସାମାନ୍ୟ କଥା । କିନ୍ତୁ ତା ଅପେକ୍ଷା ଗୁରୁତର କଥା କି ତୋ ଦୃଷ୍ଟିରେ ପଡ଼ୁନାହିଁ ନାନି ?

କୃଷ୍ଣମାଧବଙ୍କର କଥାର ଲକ୍ଷ୍ୟ ରାଧାପ୍ରିୟା ମନେ ମନେ
ବୁଝିଲେ । ଶତ ପ୍ରତିବାଦ ସତ୍ତ୍ୱେ କୃଷ୍ଣମାଧବ ଯେ ଅଭିମାନ କରି
ବସିଛନ୍ତି, ସେଇଟା ସତ୍ୟ । ତାହା ତାଳି ଘୋଡ଼ାଇ ରଖିବାର କଥା
ନୁହେ । ହରିଶଙ୍କର ମଧ୍ୟ ବଡ଼ ଗୋଟାଏ ଅନ୍ୟାୟ କରିଛନ୍ତି । ଠିକ୍‌ଟା
ଛାଡ଼ିଦେବା ପୂର୍ବରୁ ଥରେ କୃଷ୍ଣମାଧବଙ୍କୁ ପଚାରିବା ଉଚିତ ଥିଲା ।
ହେଲେ ଏଇଟା କି କୃଷ୍ଣମାଧବଙ୍କର ଅଭିଯୋଗର ଏକମାତ୍ର କାରଣ ?
ରାଧାପ୍ରିୟା ବୁଝିଲେ—ନା, ଅସଲ ଅଭିଯୋଗ ସେହି ବିବାହ
ପ୍ରସଙ୍ଗ ନେଇ । ହରିଶଙ୍କର ଯେ ଯୁକ୍ତିକୁ ବିବାହ କରିବାକୁ ଧରିବସିଛନ୍ତି
ସେଇଥିରେହିଁ ସମସ୍ତ ଗଣ୍ଡଗୋଳର ମୂଳ । ହାୟ ! କେଉଁ ବିଧାତାର
ନିଷ୍ଠୁର ନିର୍ଦ୍ଦେଶରେ ଯୁକ୍ତି ସହିତ ହରିର ପରିଚୟ ହେଲା ! ଯଦି ବା
ହେଲା, ହରିଶଙ୍କର ମନରେ ଏ ଅସମ୍ଭବ କଳ୍ପନା କାହିଁକି ଜାଗି
ହେଲା ? ଯୁକ୍ତିକୁ ବା କାହିଁକି ବ୍ରାହ୍ମଣ ଘରେ ଜନ୍ମ ନ ଦେଇ ବିଧାତା
ଶୂଦ୍ରକୁଳରେ ଜନ୍ମଦେଲା ? ବିଧାତାର ଏ ଅନ୍ୟାୟବିଧାନ ବିରୁଦ୍ଧରେ
ରାଧାପ୍ରିୟାଙ୍କର ଅନ୍ତର ବିଦ୍ରୋହ କରି ଉଠିଲା । ମାତ୍ର ସେ କୃଷ୍ଣମାଧବଙ୍କୁ
ଗୃହିଁ କହିଲେ—କୃଷ୍ଣ, ଏତେ ଅଧୀର ହେଲେ କି ଚଳିବ ? ତୋ
ନିକଟରେ ଅସାଧ୍ୟ ହୋଇ ରହିବ, ଏଭଳି ଗୁରୁତର କଥା କଣ ଅଛି ?
ହରିଶଙ୍କର ଯଦି ନିଜର ଅଜ୍ଞାତବଳରେ ଗୋଟାଏ ଭୁଲ ଭ୍ରାନ୍ତ କରି
ପକାଏ ତାକୁ ସୁଧାରିବାକୁ ତୋ ଛଡ଼ା ଆଉ ମୋର କିଏ ଅଛି ?
ତେବେ, କାହିଁକି ଏତେ ବ୍ୟସ୍ତ ହେଉଛୁ ଶୁଣେ ?

କୃଷ୍ଣମାଧବ ହରିଶଙ୍କରଙ୍କ ଚିଠିଟା ରାଧାପ୍ରିୟାଙ୍କ ଆଡ଼କୁ
ଘୋଷାଡ଼ି ଦେଇ କହିଲେ—କାହିଁକି, ଏଇ ଦେଖ । ଥରେ ହରିର
ଚିଠିଟା ପଢ଼ି ନୁହଁ । କି ଦୁର୍ବୁଦ୍ଧି ଆଜି ତାକୁ ଗ୍ରାସ କରିଛି ସେହି
ଚିଠିଟା ପଢ଼ିଲେହିଁ ଜାଣିପାରିବୁ । ମିଛଟାରେ କୃଷ୍ଣମାଧବ କେବେ
ଉତ୍ତେଜିତ ହୁଏ ନାହିଁ ।

ଶ୍ୟାମପ୍ରିୟା କହିଲେ—ମୁଁ ଆଉ କଣ ପଢ଼ିବାକୁ ଯିବ ଭାଇ, ତୁ ତ ପଢ଼ିଛୁ, କଥାଟା କଣ କହ । ହର କଣ ତୋତେ ଗୁରୁତର ଅପମାନ ଦେଇଛନ୍ତି କୃଷ୍ଣ ?

କୃଷ୍ଣମାଧବ ଜବାବ୍ ଦେଲେ—ଗୁରୁତର ଅପମାନ ଆଉ କାହାକୁ କୁହାଯାଏ ନାନି ? ଜାତିଧର୍ମର ବନ୍ଧନରେ ଯଦି କେହି କଣ୍ଟ କରିବାକୁ ଯାଏ, ତାଠାରୁ ବଳି ଗୁରୁତର ଅପମାନ ଆଉ କଣ ହୋଇପାରେ ? ଏଇ କେତେ ଦିନ ମଧ୍ୟରେ ହରିଶଙ୍କର କି କାଣ୍ଡଟା ନ କରିଛନ୍ତି କହିଲ ? ତାର ବିବାହପାଇଁ ଆମେ କେତେ ଚେଷ୍ଟା ନ କରୁଛେଇଁ ? କିନ୍ତୁ ଦେଖ୍, ଆମର ସମସ୍ତ କଥାକୁ ପାଦରେ ଠେଲି ଦେଇ କେଉଁଠୁ ଗୋଟାଏ ଅରକ୍ଷିତା, ଅଜ୍ଞାତ କୁଳଶୀଳା, ଭ୍ରଷ୍ଟଚରିତ୍ରା ଶୂଦ୍ରକନ୍ୟାକୁ ଆଣି କାହାର ମତର ଅପେକ୍ଷା ନ ରଖି ଏକାବେଳକେ ଘରେ ଭର୍ତ୍ତି କରି ଦେଇଚି ! ପୁଣି କଣ ନା, ତାକୁଇ ବିବାହ କରିବାକୁ ଚାହେଁ ! ଜାତିଧର୍ମ କି ଏକାବେଳକେ ରସାତଳକୁ ଯାଇ ସାରିଛନ୍ତି ନାନି ? କଳିକାଳ ହେଲା ବୋଲି କଣ ସବୁ ଏକାବେଳକେ ଶେଷ ? ଲୋକ ଯାହା ଇଚ୍ଛା ତାହା କରିଯିବ, କେହି ବାଧା ଦେବେ ନାହିଁ !

ଏହା କହି କୃଷ୍ଣମାଧବ ଉତ୍ତର ଅପେକ୍ଷାରେ ଶ୍ୟାମପ୍ରିୟାଙ୍କ ମୁହଁକୁ ଚାହିଁ ରହିଲେ । କଥାଗୁଡ଼ାକ ଶ୍ୟାମପ୍ରିୟାଙ୍କ କାନରେ ଯେପରି ଅଗ୍ନି ବର୍ଷଣ କରିଗଲା । କୃଷ୍ଣମାଧବ ଯାହା ଯାହା କହିଲେ ତାହା ସତ୍ୟ, କିନ୍ତୁ ସୁଷମା କି ଭ୍ରଷ୍ଟଚରିତ୍ରା ? ଅନାଥିନୀର ସନ୍ତାନକୁ ନ ବୁଝି ନ ସୁଝି ଏତେ ବଡ଼ ଅପବାଦ ଦେବାଟା ଶୋଭାପାଏ ନାହିଁ । କିନ୍ତୁ ସେ କି ପ୍ରତିବାଦ କରିବେ ? ରାଗମୁଣ୍ଡରେ କୃଷ୍ଣମାଧବ ଏପରି ଗୋଟାଏ କହିଥାଇ ପାରନ୍ତି, ସେଥିପାଇଁ ତାଙ୍କୁ ଦୋଷୀ କରାଯାଇ ନ ପାରେ । ତେବେ ଆଉ ଯେଉଁ ଯେଉଁ କଥା କୃଷ୍ଣମାଧବ କହିଲେ

ତାହାତ ମିଥ୍ୟା ବୋଲି ଉଡ଼େଇଦେଇ ହେବ ନାହିଁ । ରାଧାପ୍ରିୟା ବ୍ୟସ୍ତହୋଇ ଭାବିଲେ—ହରଶଙ୍କର କି କାଣ୍ଡଟା ନ କଲା ? ବର୍ତ୍ତମାନ ଉପାୟ କଣ ? ରାଧାପ୍ରିୟାଙ୍କ ମସ୍ତକ ଘୂର୍ଣ୍ଣିତ ହେବାକୁ ଲାଗିଲା । କୃଷ୍ଣମାଧବଙ୍କ କଥାର କୌଣସି ଉତ୍ତର ଦେବାକୁ ସେ ସମର୍ଥ ହେଲେ ନାହିଁ । ନୀରବରେ ତଳକୁ ମୁହଁ କରି ବସିରହିଲେ ।

କୃଷ୍ଣମାଧବ କହିଲେ—ତୁନି ହୋଇ ବସି ରହିଲ୍ ଯେ ନାନି ! ରାଧାପ୍ରିୟା ଗୋଟାଏ ଗଭୀର ନିଃଶ୍ୱାସ ତ୍ୟାଗକରି ଜବାବ ଦେଲେ —କଣ ଆଉ କହିବି କୃଷ୍ଣ ? ତୋତେ ଯେପରି ଭଲ ଦେଖାଯାଉଛି ସେହିପରି କର୍, ମୋତେ ଆଉ ପଚାରୁଛୁ କଣ ?

ଠିକ୍ ଏହି ସମୟରେ ଯୋତା ମଚ୍ ମଚ୍ କରି ଘର ଭିତରକୁ କେହି ପଶି ଆସୁଥିବାର ଶବ୍ଦ ଶୁଣାଗଲା । ଆରେ ! ଏ ଯେ ହରଶଙ୍କର ! କୃଷ୍ଣମାଧବ ଚମକି ଉଠିଲେ । ରାଧାପ୍ରିୟା ଅଷ୍ଟସ୍ଥ ହୋଇ କହିଲେ —ହରି ଯେ !

ହରଶଙ୍କର ସସ୍ମିତ ମୁଖରେ ଉତ୍ତର ଦେଲେ—ହଁ ମା, ଯେତେ ଦିନ ରହିବାକୁ ପଡ଼ିବ ବୋଲି ଭାବିଥିଲି, ତା ରହିବାକୁ ପଡ଼ିଲା ନାହିଁ । ଭାବିଲି—ଯାଏଁ, ଘରର ପୁଅ, ଏଥର ଘରର ଭାତଟା ଯାଇ ଖାଏଁ । ଅଚ୍ଛା, କଣ ଭଲ କାମଟାଏ କରି ନାହିଁ ମା ? ଏତିକି କହି ସେ ହୋ ହୋ ହୋଇ ହସି ଉଠିଲେ । ପରେ ସେ ମାତୁଳ କୃଷ୍ଣମାଧବଙ୍କୁ ଚାହିଁ ପଚାରିଲେ—କେବେ ଫେରିଲେ ମାମୁ ? ଏଥର କୁଦ୍ ଲମ୍ଫ ଗପ କରିବାକୁ ପଡ଼ିଲା ପରା ?

କୃଷ୍ଣମାଧବ କହିଲେ—ହଁ, ଯାହା ଯେତେବେଳେ କରିବାକୁ ହୁଏ, କରିବା କଣ ?

କୃଷ୍ଣମାଧବ ଏପରି ଉଦାସଭାବରେ ଉତ୍ତରଟାଏ ଦେଲେ ଯେ ହରଶଙ୍କରଙ୍କୁ ତାହା କପରି ଟିକିଏ ଅସ୍ୱାଭାବିକ ବୋଧ ହେଲା ।

ଦେହରୁ ଗମାଗମ୍ ଖୋଲ ବୋହୁଥିଲା । ସେ ଶୀଘ୍ର ପୋଷାକପତ୍ର ଖୋଲି ପକାଇବାପାଇଁ ଦୋତାଲା ଉପରେ ଥିବା ତାଙ୍କର ବୈଠକ ଘର ଆଡ଼କୁ ଚାଲିଗଲେ ।

---

## ସପ୍ତଦଶ ପରିଚ୍ଛେଦ

ମାତୁଳ କୃଷ୍ଣମାଧବଙ୍କ ସହିତ ହରିଶଙ୍କରଙ୍କର କଳହଦିନ ପରେ ଗୋଟାଏ ଭୟଙ୍କର ବର୍ଷା ହୋଇଗଲା । ବିବାହ ପ୍ରସଙ୍ଗ ନେଇ ଉଭୟଙ୍କ ମଧ୍ୟରେ ସୁତୀବ୍ର ଆଲୋଚନା ଚାଲିଥିବା ବେଳେ କୃଷ୍ଣମାଧବ ହରିଶଙ୍କରଙ୍କୁ ଅନେକ ଗୁଡ଼ାଏ ଗରମ ଗରମ କଥା ଶୁଣାଇଦେଲେ । ଏପରି କଥା ସେ ଜନ୍ମାବଧି କୃଷ୍ଣମାଧବଙ୍କ ମୁଖରୁ ଶୁଣି ନ ଥିଲେ । ମାତୁଳ ଭଗିନେୟଙ୍କୁ ଚିରଦିନ ସ୍ନେହଚକ୍ଷୁରେ ଦେଖି ଆସିଥିଲେ, ନିଜର ପୁତ୍ରପରି ଜ୍ଞାନ କରୁଥିଲେ । କିନ୍ତୁ ଆଜି ସେ ସମସ୍ତ ସ୍ନେହଧାରା ଯେପରି ଏକ ମୁହୂର୍ତ୍ତରେ ଶୁଖିଯାଇ ଖାକ୍ ହୋଇଗଲା । ଏତେ ଦିନର ସରସ ମଧୁର ମମତାର ଅମୃତକୁଣ୍ଡ ପଲକ ମଧ୍ୟରେ ଯେପରି ତିକ୍ତ ଗରଳାକ୍ତ ହୋଇଉଠିଲା । କହୁଁ କହୁଁ କୃଷ୍ଣମାଧବ ଅନେକ କଥା କହି ପକାଇଲେ । ଜମିଦାରୀଟା ଯେ ହରିଶଙ୍କରଙ୍କର ଘର୍ମସିକ୍ତ ପରିଶ୍ରମର ଫଳ ନୁହେଁ, ପିତୃପିତାମହଙ୍କର ଅର୍ଜିତ ସମ୍ପତ୍ତି । କୃଷ୍ଣମାଧବ ଯେ ତାହାପାଇଁ ତିଳ ତିଳ କରି ପ୍ରାଣବଳି ଦେଇଆସିଛନ୍ତି ଓ ତାହାରି ଫଳରେ ଜମିଦାରୀର ଏ ପ୍ରତ୍ୟକ୍ଷ ସମୃଦ୍ଧି, କୃଷ୍ଣମାଧବ ବଜ୍ରକଠୋର କଣ୍ଠରେ ଏ କଥାଗୁଡ଼ାକ ଶୁଣାଇଦେଲେ । ଆଜି ଚୌଧୁରୀବଂଶର ମର୍ଯ୍ୟାଦା ଓ ଧନବୃଦ୍ଧି ପାଇଁ ପ୍ରାଣପାତ କରିଥିବା ସେହି ଶୁଭାନୁଧ୍ୟାୟୀ ମାତୁଳର କ୍ଷମତା ଲୋପ କରିବା ସକାଶେ ଯେ

ପ୍ରକାରାନ୍ତରେ ଚେଷ୍ଟା ହେଉଛନ୍ତି, ତାହା ମଧ୍ୟ ସେ ଶୁଣାଇଦେବାକୁ ଛାଡ଼ିଲେ ନାହିଁ । ତାଙ୍କର ବର୍ତ୍ତମାନର ଏ ମହତ୍ତ୍ୱକୁଳର ମର୍ଯ୍ୟାଦା କ୍ଷୁଣ୍ଣ ହେବାକୁ ସେ କୌଣସି କ୍ରମେ ଦେଇ ନ ପାରନ୍ତି । ହୁଏ ତ ତା ପୂର୍ବରୁ ତାଙ୍କୁ ଏ ବଂଶସମ୍ପର୍କ ତ୍ୟାଗ କରିବାକୁ ହେବ । ନଚେତ୍ ଯାହା ଲାଗି ଏ ପ୍ରାଚୀନ ସୁପବିତ୍ର ବ୍ରାହ୍ମଣକୁଳରେ କଳଙ୍କ ଲାଗିବାକୁ ଯାଉଛି ତାକୁ ଅବିଳମ୍ବେ ଏଠୁ ଅନ୍ତରିତ କରିବାକୁ ହେବ । ଏଇ ଦୁଇ କଥାରୁ ଗୋଟାଏ ଗ୍ରହଣ,—ଏହାର ଅନ୍ୟଥା ନାସ୍ତି ।

ହରଶଙ୍କର ରୁଦ୍ଧକଣ୍ଠରେ ପଚାରିଲେ—'ଏଇଟା କି ଆପଣଙ୍କର ଶେଷ କଥା ମାମୁ ?' କୃଷ୍ଣମାଧବ ତତୋଧିକ କର୍କଶକଣ୍ଠରେ ଜବାବ୍ ଦେଲେ—'ଅଲବତ୍ତ ।'

କୃଷ୍ଣମାଧବ ଉଗ୍ରମୂର୍ତ୍ତି ଧରି ଟଗ ଟଗ ହୋଇ ବାହାରିଗଲେ । ହରିଶଙ୍କର ଗମ୍ଭୀର ମୂର୍ତ୍ତିରେ ବସିରହିଲେ । ଆକସ୍ମିକ ବଜ୍ରପାତ ହେଲେ ଯେପରି ହୁଏ, ଗୃହର ଅବସ୍ଥା ତାହାହିଁ ହେଲା । ସମସ୍ତେ ସ୍ତମ୍ଭୀଭୂତ ହୋଇ ରହିଲେ । ଗୃହରବାକରଚାକର ସ୍ତବ୍ଧ । ମା ରାଧାପ୍ରିୟାଙ୍କର ତୁଣ୍ଡରେ ଟିଁ-ଚୁଁ ପର୍ଯ୍ୟନ୍ତ ଶବ୍ଦଟି ନାହିଁ । ସେ ଏକାବେଳକେ ହତବୁଦ୍ଧି ହୋଇପଡ଼ିଲେ ।

ହରଶଙ୍କର କ୍ଷଣକ ପରେ ଉଠି ଝଡ଼ବେଗରେ ଆସି ଉପସ୍ଥିତ ହେଲେ ସୁଷମା ପାଖରେ । ଡାକ ଦେଲେ—ସୁଷମା !

ସୁଷମା ଏକ ନିର୍ଜନ କୋଣରେ ବସି ନୀରବରେ ରାଧାପ୍ରିୟାଙ୍କ ପାଇଁ ପାନ ଭାଙ୍ଗିବାରେ ଲାଗିଥିଲା । ହରିଶଙ୍କରଙ୍କ ଡାକ ଶୁଣି ସେ ମୁହଁ ଟେକି ଅନାଇବାକୁ ଚେଷ୍ଟାକଲା, କିନ୍ତୁ ଟେକିନେଇଁ ପାରିଲା ନାହିଁ । ହରଶଙ୍କର ଆହୁରି ଟିକିଏ ପାଖକୁ ଘୁଞ୍ଚିଯାଇ ଡାକ ଦେଲେ—ଝୁଣି !

ସୁଷମା ଠିଆ ହୋଇପଡ଼ି ଧୀରେ ଧୀରେ ଜବାବ୍ ଦେଲା—କିଛି କହିବାର ଅଛି ?

ହରଶଙ୍କର ପଚାରିଲେ—ରାଗିଛ ?

"କାହା ଉପରେ ?"

"ତୁମର ଦୁର୍ଭାଗ୍ୟର ଯେ ଏକମାତ୍ର କାରଣ ।"

ଏହା କହି ସେ ସୁଷମାର ହାତଟି ଧରି ରହିଁ ରହିଲେ । ଉଚ୍ଛ୍ୱସିତ ପ୍ରାଣର ଆବେଗ ସମ୍ଭାଳି ରଖିବା ତାଙ୍କ ପକ୍ଷରେ କଷ୍ଟକର ହେଲା । ଚକ୍ଷୁ ଦୁଇଟି ବାଷ୍ପାକୁଳ ହୋଇଉଠିଲା ।

ସୁଷମା ମୃଦୁ କଣ୍ଠରେ କହିଲା—କାହିଁକି ଏତେ ଅଧୀର ହେଉଛ କହିଲ । ତମେ ଯଦି ମୋର ଦୁର୍ଭାଗ୍ୟର କାରଣ, ତେବେ ସୁଷମାର ସୌଭାଗ୍ୟ-ତପନ କିଏ ?

କିଏ ଏ ଭାଷାର ଝଙ୍କାର ଆଜି ସୁଷମା କଣ୍ଠରେ ଏପରି ଆଚମ୍ବିତ ଭାଷାରେ ସୃଷ୍ଟି କଲା, ତା ସୁଷମା ଜାଣେ ନାହିଁ । କିନ୍ତୁ ହରଶଙ୍କରଙ୍କ ତପ୍ତ-ପ୍ରାଣରେ ତାହା ଯେପରି ଅମୃତ ବର୍ଷଣ କଲା । ଆବେଗର ଆତିଶଯ୍ୟରେ ସେ ସୁଷିକୁ ଆପଣାର ବକ୍ଷ ଉପରକୁ ଟାଣିନେଇ ଯେପରି ଅନନ୍ତ ଶାନ୍ତିର ଅଜସ୍ର ଅଗ୍ରମ ଉପଭୋଗ କଲେ । ସୁଷମାର ଆଜି ବାଧା ଦେବାର ଶକ୍ତି ନ ଥିଲା, ଇଚ୍ଛା ମଧ୍ୟ ନ ଥିଲା ।

ସୁନ୍ଦରୀର ଶୁଷ୍କ ମୁଖଟି ବକ୍ଷ ଉପରେ ରଖିଧରି ହରଶଙ୍କର କହିଲେ—ସୁଷି, ତମେ କି ସତେ ଏ ଅପଦାର୍ଥକୁ ଭଲ ପାଅ ? ସ୍ୱାମୀ ବୋଲି ମନେ କରିପାର ?

ସୁନ୍ଦରୀର ରୁଦ୍ଧକଣ୍ଠ ଅକୁଣ୍ଠିତସ୍ୱରରେ ସଂକ୍ଷିପ୍ତ ଉତ୍ତର ବାହାରିଲା—ହୁଁ ।

"ନଦାହ ନ ହେଲେ ବି ?"

ପୁନଶ୍ଚ—"ହଁ" । ସୁଷମାର ସମସ୍ତ ଲଜ୍ଜା ଆଜ ଏକ ମୁହୂର୍ତ୍ତରେ କୁଆଡ଼େ ପାଣି ହୋଇ ବୋହିଗଲା ।

"ସାବାସ୍" ବୋଲି କହି ହରିଶଙ୍କର ସୁଷମାକୁ ବାହୁପାଶରୁ ମୁକ୍ତ କଲେ । ଯୁବକର ହୃଦୟ ଆଜି ଗଭୋଲ୍ଲାସରେ ଭରି ଉଠିଲା । ପ୍ରଚଣ୍ଡ ତୋଫାନ ପରେ ଯେପରି ଅମାବାସ୍ୟାର ଅନ୍ଧକାର ଦୂର କରି ନବୀନ ରବିର କନକକିରଣ ତାଙ୍କର ସମଗ୍ର ପ୍ରାଣକୁଞ୍ଜ ସୁନ୍ଦର ରଙ୍ଗରେ ରଞ୍ଜିତ କରିଦେଲା ।

ହରିଶଙ୍କର କିଛିକ୍ଷଣ ନୀରବ ରହି ପୁନର୍ବାର ଆରମ୍ଭ କଲେ—କିନ୍ତୁ ସେଠା ସେତେ ସହଜ ନୁହେଁ ସୁଷି ! ଚିରଦିନ ଯେ ଏହି ଅବସ୍ଥାରେ ରହିବାକୁ ପଡ଼ିବ ।

ସୁଷି ଜବାବ୍ ଦେଲା ଯେ, ସେଠା ତା ପକ୍ଷରେ ଏକାନ୍ତ ସହଜ ।

ହରିଶଙ୍କର କହିଲେ—କିନ୍ତୁ ସେଠା ଯେ ଜୀବନାନ୍ତ ପର୍ଯ୍ୟନ୍ତ ପ୍ରିୟେ !

ସୁଷି ସେହିପରି ସହଜ କଣ୍ଠରେ ଉତ୍ତର ଦେଲା—ଜାଣେ ପ୍ରିୟତମ !

ହରିଶଙ୍କର ନଗ୍ନ ଉଲ୍ଲାସରେ ଏକାବେଳକେ ନାଚି ଉଠିଲେ ଓ ସଙ୍ଗେ ସଙ୍ଗେ ଚିତ୍କାରକରି ଉଠିଲେ—ତେବେ, ଗୃହ ସୁଷି ! ଆଜିଠାରୁ ଉଭୟଙ୍କର ସେହି ବିଚ୍ଛେଦମୟ ଜୀବନଯାତ୍ରାର ଆରମ୍ଭ ।

ଏହା କହି ସେ ଦୁମ୍ ଦୁମ୍ ହୋଇ ବାହାରିଗଲେ ।

ହରିଶଙ୍କରଙ୍କ ଜୀବନରେ ଏତେ ବଡ଼ ଗୋଟାଏ ଦୁଃଖମୟ ପୁଣି ସୁଖମୟ ଦିବସ ଆଉ କେବେ ଦେଖାଦେଇ ନ ଥିଲା ।

ତିନିଟା ବେଳେ ଗୋଟାଏ ଗାଡ଼ି ଦକ୍ଷିଣକୁ ଯାଏ । ହରିଶଙ୍କର ସେହି ଗାଡ଼ିରେ ଯିବାପାଇଁ ସଙ୍କଳ୍ପ କରି ଗୋଟାଏ ଟେକ୍ସି ଡାକି ଆଣିବାକୁ ଗୃହର ଚାକିରିଆକୁ ଆଦେଶ ଦେଲେ । ଟେକ୍ସି ଆସି

ପଡ଼ୁଥିବାର ଅବ୍ୟବହୃତ ପୂର୍ବରୁ ହରଶଙ୍କର ପୋଷାକପତ୍ର ପିନ୍ଧି ସୁଷମା ନିକଟରେ ଉପସ୍ଥିତ ହୋଇ କହିଲେ—ଆଉ ବେଳ ନାହିଁ, ସୁଷି ! ଏବେ ବାହାର ପଡ଼ିବାକୁ ହେବ । ଯାଅ, ଶୀଘ୍ର ମା'ଠାରୁ ବିଦାହୋଇ ଆସ । ଆଉ ବାଉଳିମାକୁ ମଧ୍ୟ ପ୍ରସ୍ତୁତ ହେବାକୁ କହି ଦିଅ । ଠିକ୍ ଏହି ସମୟରେ ଷ୍ଟେସନ୍‌ରେ ପହଞ୍ଚି ଘଣ୍ଟି ଦେଲା । ହରଶଙ୍କର କହିଲେ— ଆଉ ଡେରି କର ନାହିଁ ।

ପ୍ରତିଦିନ ଶୁଭ୍ର ଶାଢ଼ୀ ଖଣ୍ଡିଏ ପିନ୍ଧି ସୁଷମା ଯେପରି ରାଧାପ୍ରିୟାଙ୍କ ଆଗରେ ଆସି ଉପସ୍ଥିତ ହୁଏ ଆଜି ମଧ୍ୟ ସେହିପରି ଆସି ଉପସ୍ଥିତ ହେଲା । ରାଧାପ୍ରିୟା ଅନ୍ୟମନସ୍କ ଭାବରେ ଝରକା ମାଳିଳାପରି କଣ ଯେ ଭାବୁଥିଲେ ବା ଭାବୁ ନ ଥିଲେ ତା ଯେ ଦିନରାତି କରୁଛନ୍ତି ସେହି ଜାଣନ୍ତି । ବାହାରର ଘଟଣାବଳୀ ତାଙ୍କ ଚକ୍ଷୁ ସମକ୍ଷରେ ପଡ଼ୁଥିଲେ ସୁଦ୍ଧା ମନ ଉପରେ ଯେ ତାହା କୌଣସି ରେଖାପାତ କରିପାରୁଛି ସେପରି ଜଣାଯାଉ ନ ଥିଲା । ଏହିପରି ଅବସ୍ଥାରେ ସୁଷମା ଆସି ପାଦମୂଳରେ ମସ୍ତକ ସ୍ପର୍ଶ କରି ଜୁହାରଟିଏ ହେଲା ଏବଂ ଅତି ନମ୍ର ଭାବରେ କହିଲା—'ଯାଉଛି ମା ।'

ରାଧାପ୍ରିୟା କେବଳ ଜଳଜଳ ହୋଇ ଅନେଇଁ ରହିଲେ, ତୁଣ୍ଡରୁ ପଦେ ହେଲେ କଥା ବାହାରି ପାରିଲା ନାହିଁ । ରାଧାପ୍ରିୟାଙ୍କ ମନ ରାଧାପ୍ରିୟାଙ୍କ ଭିତରେ ନ ଥିଲା ।

କ୍ଷଣକ ପରେ ସୁଷି ଏହି ଜମିଦାର ଗୃହର ସମସ୍ତ ସୁଷମା ନେଇ ଚିରକାଳ ପାଇଁ ବିଦାୟ ହୋଇଗଲା ।

---

## ଅଷ୍ଟାଦଶ ପରିଚ୍ଛେଦ

ଭୁବନେଶ୍ୱର ଷ୍ଟେସନରେ ପହଞ୍ଚି, ସେଠାରୁ ଗୋଟାଏ ବଳଦ ଗାଡ଼ି ଭଡ଼ା କରି ସୁଷିର ଗ୍ରାମକୁ ଯିବାଟା ସହଜ । ମାତ୍ର ସେପର୍ଯ୍ୟନ୍ତ ଯିବାକୁ ହରଶଙ୍କରଙ୍କର ମନ ବଳୁ ନ ଥିଲା । ରେଲରେ ଆସୁଁ ଆସୁଁ ସେ ଭାବିଥିଲେ ଭୁବନେଶ୍ୱର ଷ୍ଟେସନରୁ ଫେରିବେ, ଆଉ ଅଗ୍ରସର ହେବେ ନାହିଁ; କିନ୍ତୁ ଷ୍ଟେସନରେ ପହଞ୍ଚି ହରଶଙ୍କର ସେ କଳ୍ପନା ପରିତ୍ୟାଗ କଲେ । ସୁଷିକୁ ଘରେ ନେଇ ପହଞ୍ଚାଇ ଦେବାକୁ ଆଉ କିଏ ଅଛି ? ସଙ୍ଗରେ ନୁଷିଆର ଲୋକ କେହି ନାହିଁ । ଖାଲି ବାଉଲିମାଟି ମାତ୍ର ସହାୟ । କିନ୍ତୁ ତା ଉପରେ ଏ କାର୍ଯ୍ୟର ଭାର ଦେଇ ହରଶଙ୍କର କି ନିଶ୍ଚିନ୍ତ ହୋଇପାରନ୍ତି ? ନା, ନିଜକୁ ଶେଷ ପର୍ଯ୍ୟନ୍ତ ଯିବାକୁ ପଡ଼ିବ । ସୁତରାଂ ନିତାନ୍ତ ଅନିଚ୍ଛାସତ୍ତ୍ୱେ ହରଶଙ୍କର ତାହାହିଁ କଲେ ।

ଶୁଭ୍ର, ସୁନିର୍ମ୍ମଳ ଚନ୍ଦ୍ରାଲୋକ ପଡ଼ି ପଲ୍ଲୀର ଶ୍ରୀ ଯେପରି ହସି ଉଠୁଛି । ବୃକ୍ଷଲତା, ପଥପ୍ରାନ୍ତର ସବୁ ଏକାବେଳକେ ପରିପ୍ଳୁତ । ଅବାରିତ ଗତିରେ, ଅନନ୍ତ ସ୍ରୋତରେ ତାହା ଊର୍ଦ୍ଧ୍ୱଦେଶରୁ ତଳକୁ ଝରୁଛି । କେଉଁ ସୁଦୂର ପରୀରାଜ୍ୟର ସ୍ୱପ୍ନମୟ ଆଦେଶ ପୃଥିବୀ ଉପରେ ଅନବରତ ବର୍ଷିତ ହେଉଛି । ଟିକିଏହେଲେ ବିରାମ ନାହିଁ, ବିଶ୍ରାମ ନାହିଁ । ଚନ୍ଦ୍ରଭୁବନରୁ ଆରମ୍ଭ କରି ଧରିତ୍ରୀର ଶ୍ୟାମସୀମା ପର୍ଯ୍ୟନ୍ତ ସମସ୍ତ ଜଗତ ଶୁଭ୍ର ସୁଷମାରେ ପରିପୂର୍ଣ୍ଣ କରି ରଖିବାକୁ ଯେପରି ତାର ଅକ୍ଳାନ୍ତ ଉଦ୍‌ଯୋଗ ! ତାହାର ଫଳରେ ଆଜି ସମସ୍ତ ପ୍ରକୃତି ଶୁଭ୍ର ସୁନ୍ଦର ହୋଇଉଠିଛି । ଚନ୍ଦ୍ରକାବଧୌତ ବୃକ୍ଷଲତାର ରୁଚିର ରୂପକାନ୍ତି ଦେଖିଲେ ଆନନ୍ଦରେ ସେଗୁଡ଼ିକୁ କୁଣ୍ଢେଇ ପକେଇବାକୁ ଇଚ୍ଛା ହେଉଛି । ପ୍ରାଣରେ ଅନନ୍ତ ଉନ୍ମାଦନା ଢେଉ-

ଉଠୁଛନ୍ତି । ହରଶଙ୍କର ଭାବୁଛନ୍ତି—ସୁନ୍ଦର ଗ୍ରାମଟି କି ସୁନ୍ଦର ! ଦିନେ ଏହି ସୁନ୍ଦର ଗ୍ରାମଟି କି କଦର୍ଯ୍ୟ ଥିଲା ! ଜଳକର୍ଦ୍ଦମରେ କି କୁତ୍ସିତ ଦେଖା ଯାଉଥିଲା ! କିନ୍ତୁ ଏଇ ଅଳ୍ପ କେତେଟା ଦିନ ଭିତରେ ପୁଣି କି ସୁନ୍ଦର ହୋଇ ଉଠିଛି ! ଆହା, ଚିରଦିନ ଯଦି ଏହା ଏହିପରି ରହିପାରନ୍ତା, ତା ହେଲେ କି ସୁନ୍ଦର ସ୍ୱର୍ଗ ନ ହୁଅନ୍ତା ! କିନ୍ତୁ ପୁନର୍ବାର ବନ୍ୟାର ବିଭୀଷିକା ଆସିବ, ଉତ୍କଳର ମସ୍ତକରେ ବିଧାତାର ସେହି ପ୍ରଚଣ୍ଡ ଅଭିଶାପ ବର୍ଷକୁ ବର୍ଷ ବର୍ଷିତ ହେବ । ଗୃହ ଭବନ ଭାଙ୍ଗିବ, ଶସ୍ୟସୁଷମା ମଉଳିବ, ଦୁର୍ଭିକ୍ଷ ଉଙ୍କିବ, ସମସ୍ତ ଶ୍ରୀ—ସମ୍ପଦ ତୁଟିବ । ହାୟ ରେ ଲଲାଟ !

ଭାବନାର ସ୍ରୋତରେ ଭାସି ଭାସି ହରଶଙ୍କର ଚାଲିଲେ । ଗାଡ଼ି ଲକ୍ଷ୍ୟସ୍ଥାନର ନିକଟରୁ ନିକଟତର ହେବାକୁ ଲାଗିଲା । ଗୋଟି ଗୋଟି ହୋଇ ସଦ୍ୟ ଅତୀତର ଅନେକ ସ୍ମୃତି ମନରେ ଜାଗ୍ରତ ହେଲା । ଏହି ସେହି ଗ୍ରାମ,—ଏହି ସେ ଗ୍ରାମର ରାସ୍ତା,—ଏହି ଗ୍ରାମର ଗୋଟିଏ ଅନାଥିନୀ ବିଧବାର ଅର୍ଦ୍ଧଭଗ୍ନ ଗୃହକୁ ସେଦିନ ତାଙ୍କର ଆଗମନ,—ମୁକ୍ତି ସହିତ ସାକ୍ଷାତ,—ମୁକ୍ତିକୁ ଜୀବନସଙ୍ଗିନୀ କରିବାର ସଂକଳ୍ପ ।

ଆହା ! ସବୁ ସ୍ୱପ୍ନ, ସବୁ ମିଥ୍ୟା, ମୂଳରୁ ଶେଷପର୍ଯ୍ୟନ୍ତ ସମସ୍ତହିଁ ଶୂନ୍ୟ ବୁଦ୍‌ବୁଦ ! ହରଶଙ୍କରଙ୍କର ମନେ ହେଲା—ସତେ ଯେପରି ସେ ଗୋଟାଏ ଚଳନ୍ତ ଗାଡ଼ିର ଚକ ଉପରେ ପଡ଼ିରହି ଉଠୁଛନ୍ତି—ପଡ଼ୁଛନ୍ତି, ଯାଉଛନ୍ତି—ଫେରୁଛନ୍ତି । ଚକ ଘୂରୁଛି, ସେ ମଧ୍ୟ ଘୂରୁଛନ୍ତି । ଜୀବନଟା କେବଳ ଘୂର୍ଣ୍ଣନ ! କେବଳ ଆବର୍ତ୍ତନ —ବିବର୍ତ୍ତନ ! ଆଉ କିଛି ନା ।

ଦେଖୁଁ ଦେଖୁଁ ଗାଡ଼ିଟା ଆସି ନିତାନ୍ତ ନିକଟବର୍ତ୍ତୀ ହେଲା । ଗାଡ଼ିବାଲା ପଚାରିଲା—କୁଆଡ଼େ ନେବି ବାବୁ ? ହରଶଙ୍କରଙ୍କ

ଚିନ୍ତାସ୍ରୋତ ବାଧା ପାଇଲା । ସେ ଅଙ୍ଗୁଳି ସଙ୍କେତ କରି କହିଲେ—ଏଇ ଯେ ଯୋଗାଶ୍ରମ ଦେଖାଯାଉଛି, ତା ପାଖରେ ଯେଉଁ ଘର ସେଇ ଘରକୁ ନେଇ ଚାଲ । ଗାଡ଼ିବାଲା ଅବିଳମ୍ବେ ନେଇ ସେହିଠାରେ ଗାଡ଼ି ହାବୁଡ଼େଇ ଦେଲା । ସେତେବେଳକୁ ସୂର୍ଯ୍ୟ ଟିକିଏ ଢଳି ଆସିଯାଇଥିଲା । ହରଶଙ୍କର ଡାକିଲେ—ସୁଷମା, ଉଠ, ଗାଡ଼ି ଯେ ପହଞ୍ଚିଗଲାଣି । ସୁଷମା ଧଡ଼ପଡ଼ ହୋଇ ଉଠିଲା । ଗୋଟି ଗୋଟି ହୋଇ ଗାଡ଼ିରୁ ସମସ୍ତେ ଅବତରଣ କଲେ । ସଙ୍ଗରେ ଜିନିଷପତ୍ର ବିଶେଷ କିଛି ନ ଥିଲା । କେବଳ ଗୋଟିଏ ପୋଟଳା । ବୋଧହୁଏ ସୁଷି ଓ ବାଉଲମାର ଖଣ୍ଡି କେତେ ପିନ୍ଧିବା ଲୁଗା ।

ଘରଟି ତାଲାବନ୍ଦ ଥିଲା । ହରଶଙ୍କର ପକେଟରୁ ଚାବି ଥୋଳାଟିଏ କାଢ଼ି, ତହିଁ ମଧ୍ୟରୁ ତିନି ଚାରୋଟି ଚାବି ରିଙ୍ଗ୍ ଦେହରୁ ବାହାରକରି, ବାଉଲମା ହାତକୁ ବଢ଼ାଇଦେଲେ ଏବଂ ସଦର ଦରଜା ଓ ଭିତର ଘରଗୁଡ଼ିକ ଖୋଲିବାକୁ ଆଦେଶ ଦେଲେ । ଗାଡ଼ିବାଲା ସେହିକ୍ଷଣି ବିଦାହୋଇ ଯିବାକୁ ଚାହିଁବାରୁ ହରଶଙ୍କର କହିଲେ ନା—ନା, ଟିକିଏ ଅପେକ୍ଷା କର, ମୋତେ ଷ୍ଟେସନକୁ ଫେରାଇ ନେଇଯିବାକୁ ହେବ । ଗାଡ଼ିବାଲା ଆଶ୍ଚର୍ଯ୍ୟହୋଇ କହିଲା—ଡବଲ ଭଡ଼ା ପଡ଼ିବ ବାବୁ । ହରଶଙ୍କର ଜବାବ୍ ଦେଲେ—ପରୱାହ ନାହିଁ, ଏହିକ୍ଷଣି ନେବୁ ? ଗାଡ଼ିବାଲା କହିଲା—ହଁ ବାବୁ ଭଲ ହୁଅନ୍ତା । ହରଶଙ୍କର ମନିବ୍ୟାଗରୁ ଟଙ୍କା କାଢ଼ି ଆଗ ଡବଲ ଭଡ଼ାସମେତ ସମସ୍ତ ପାଉଣା ନିର୍ବିବାଦରେ ଚୁକ୍ତି କରିଦେଲେ ଏବଂ ଗାଡ଼ିକୁ ରାସ୍ତା ଉପରକୁ ନେଇ ବୁଲାଇ ତିଆରି ରଖିବାକୁ କହିଲେ ।

ସୁଷି ଦ୍ୱାର ନିକଟରେ ଦଣ୍ଡାୟମାନ ହୋଇ କଣ ଭାବୁଥିଲା କେଜାଣେ । ହରଶଙ୍କର ତାର ସମୀପବର୍ତ୍ତୀ ହୋଇ ଧୀରେ ଧୀରେ କହିଲେ—'ସୁଷି, ଏଇଟା ବସା, ଯେତେଦିନ ରହିବ ଯାହା ଦରକାର

ତାହା ଖର୍ଚ୍ଚ କରିବ । ଅନ୍ନ ଅଭାବ ହେଲେ ମୋତେ ଜଣେଇବ ।' ଏହା କହି ସେ ଯୂଥିର ହାତରେ ସମଗ୍ର ମନିବେଗ୍‌ଟା ଗୁଞ୍ଜିଦେଲେ । ଯୂଥି ରୁଦ୍ଧ କଣ୍ଠରେ ଚକ୍ଷୁ ଦୁଇଟି ଛଳ ଛଳ କରି ଭୂମିଲଗ୍ନ ଦୃଷ୍ଟିରେ ଚାହିଁ ରହିଲା । ହରିଶଙ୍କର ପଚାରିଲେ—'ତମର କିଛି ଭୟ ହେଉଛି ଯୂଥି ?' ଯୂଥି ମୁଣ୍ଡ ହଲେଇ ଦୃଢ଼ ସ୍ୱରରେ ଉତ୍ତର ଦେଲା—'ନା' ।

ହରିଶଙ୍କର କହିଲେ—ତେବେ ଯାଅ । କିଛି ଚିନ୍ତା କରିବ ନାହିଁ, ବ୍ୟସ୍ତ ହେବନାହିଁ । ମନୁଷ୍ୟର ସମସ୍ତ ଅଭିଳାଷ ଗୋଟାଏ ଜନ୍ମରେ ପରିପୂର୍ଣ୍ଣ ହୁଏ ନାହିଁ, ଯୂଥି ।

ଏହା କହି ସେ ଯୂଥିର ହସ୍ତଟି ଧରି ପ୍ରାଣର ସମସ୍ତ ସ୍ନେହାଦର ଅଧରରେ ତାହାର ଉପରେ ଅଙ୍କାଇ ଦେଇ ବିଦାୟ ନେଲେ । ଯୂଥି ଅନ୍ୟମନସ୍କ ଭାବରେ ଠିଆହୋଇ ରହିଲା ।

ବାଉଳୀମା ଘରଗୁଡ଼ିକ ଝୋଳିଦେଇ ଦ୍ୱାରପାଖକୁ ଆସି ଡାକିଲା—ଭିତରକୁ ଆସ ମା । ବାହାରଠାରେ ଛିଡ଼ାହୋଇ ରହିବାଟା ଭଲ ନୁହେଁ ।

ଯୂଥିର ଅନ୍ୟମନସ୍କତା ଭାଙ୍ଗିଗଲା । ସେ ଧୀରେ ଧୀରେ ଗୃହ-ମଧ୍ୟରେ ପ୍ରବେଶ କରିବାକୁ ଆରମ୍ଭ କଲା ।

ରାତି ସେତେବେଳକୁ ପ୍ରଭାତ ହୋଇ ଆସିଥିଲା । ପୂର୍ବଦିଗରେ ସିନ୍ଦୂର ଫାଟି ଯାଉଥିଲା । ସମସ୍ତଙ୍କ ଆଗେ ଯେଉଁ ଡାମରାକାଉଟାର ନିଦ୍ରାଭଙ୍ଗ ହୁଏ ଏବଂ ଘରେ ଘରେ ବୁଲି ଯେ ପ୍ରଭାତର ଆଗମନ କା-କା କରି ଜଣେଇଦେଇଯାଏ, ସେହି କାଉଟା ଏକ ଘର ଉପରେ ବସି ପୂର୍ବପରି ସଙ୍କେତ ଦେଇଗଲା ଏବଂ ବକ୍ର ନୟନରେ ଚାହିଁ ଦେଖିଗଲା—ଶୂନ୍ୟନଗରଟିରେ ପୁଣି ଦୁଇଟି ଲୋକର ଆବିର୍ଭାବ ହେଲାଣି ।

ବାଉଳୀମା ଡାକିଲା—ଯୂଥି !

ସୁଷମାର ପୂର୍ବ ନାମ—ସୁଷମାରାଣୀ । ବାଉଲମା ତାକୁ ଚିରଦିନ 'ରାଣୀ' ବୋଲି ଡାକେ । କିନ୍ତୁ ସେହି ପୁରାତନ ଡାକଟା ଆଜି ତାକୁ ନୂତନ ଶୁଣାଗଲା । ସେ ପ୍ରାୟ ଚମକି ଉଠିଲା । କିନ୍ତୁ କ୍ଷଣକ ମଧ୍ୟରେ ସେ ନିଜକୁ ଅସ୍ୱୃତ କରିନେଇ ମନେ ମନେ ଅପାରସୀମ କୃତଜ୍ଞତାର ସହିତ କହିବାକୁ ଲାଗିଲା—ହଁ ଠିକ୍, ସେ ରାଣୀ, ପର୍ଣ୍ଣକୁଟୀରବାସିନୀ ସୌଭାଗ୍ୟମୟୀ ରାଣୀ । ଆଜି ହୃଦୟ-ସିଂହାସନରେ ଅଧିଷ୍ଠିତ ତାର ରାଜାର ନାମ—ହରଶଙ୍କର ।

ଉତ୍ସାହରେ ତାର ସମଗ୍ର ପ୍ରାଣ ଉଜ୍ଜ୍ୱଳ ହୋଇଉଠିଲା । ସେ ଜବାବ୍ ଦେଲା—କଣ କହୁଛୁ, ବାଉଳି ମା ?

ବାଉଳିମା କହିଲା—ପାଣି ଦାନ୍ତଦାଠି ଆଣି ଥୋଇଦେଇଛୁ, ଦାନ୍ତ ଘସିପକାଅ ମା । ବାବୁ କଣ ଚାଲିଗଲେ ?

ସୁଷମା କହିଲା—ହଁ, କାହିଁକି ?

ବାଉଳିମା ଜବାବ୍ ଦେଲା—ଅଚ୍ଛା, ଗଲେ ଯାଉନ୍ତୁ । ମୋ ପାଖରେ ଅଛି ।

ସୁଷମା ଆଶ୍ଚର୍ଯ୍ୟ ହୋଇ ପଚାରିଲା—ତୋ ପାଖରେ କଣ ଅଛି, ବାଉଳିମା ?

ବାଉଳିମା କହିଲା—ଢେର୍ ଅଛି । ସାଆନ୍ତାଣୀମା (ଗ୍ରାମ୍ପିସ୍ମା) ଖୁସିହୋଇ ଦେଲେ ଅଚ୍ଛା ଯାହା ମୋତେ ଦେଇଛନ୍ତି ତାର ଗୋଟାଏ ଛଦାମ ବି ଖର୍ଚ୍ଚ ହୋଇନାହିଁ, ଯେମିତି ଅଛି, ଦେଖିବ ?

ଏହା କହି ସେ ତରତର ହୋଇ ଗାଣ୍ଠିଆ ଖୋଲି ଗୃହ ପାଉଁ ଟଙ୍କାର ନୋଟଗୁଡ଼ିକ ବାହାରକରି ଆଣିଲା ।

ସୁଷମା ପଚାରିଲା—ସେ ସବୁ କଣ ହେବ ବାଉଳିମା ?

ବାଉଳିମା ଉତ୍ତର ଦେଲା—ଦିନ ପାଞ୍ଚ ସାତଟା କଣ ଏଥିରେ ଚଳିବ ନାହିଁ ? ଖୁବ୍ ଚଳିବ । ତେଣିକି ଦେଖାଯିବ, ହାତ ଗୋଡ଼ ଅଛି ।

ସୁଷମା ତାର କଥାଗୁଡ଼ାକ ଶୁଣି ସେ ଅବସ୍ଥାରେ ସୁଦ୍ଧା ବେଶ୍ ଆମୋଦ ଅନୁଭବ କଲା । ଓଷ୍ଠାଧରପୁଟରେ କଅଁଳ ହାସ୍ୟରେଖା ଖେଳାଇ ସେ କୌତୁକ କରି ପଚାରିଲା—ତା ପରେ ?\

ବାଉଳୀମା କହିଲା—ତା ପରେ 'ଗଡ଼ର' ଫେଟେଇ ବାଉଳୀମା ଦୁଇଟା ପେଟ ପୋଷିପାରେ ।

ସୁଷମା ହସି ହସି ପଚାରିଲା—ଏତେ ସାହସ ?

ବାଉଳୀମା ଠାଣି ହୋଇ ଜବାବ୍ ଦେଲା—ତା ଦେଖିବୁ ଯେଣି !

ସୁଷମା ମୃଦୁ ହାସ୍ୟ କରି କହିଲା—ହଉ ହଉ, ଏବେ ସବୁ ରଖ୍ । ଦରକାର ହେଲେ ବାହାର କରିବୁ । ଏବେ ଯାଉ, ସେଇ ଘରେ ଯେ ମନିବେଗ୍‌ଟା ପଡ଼ିଛି, ସେଇଟା ଆଣ୍ ତ ।

ଘର ଭିତରକୁ ପ୍ରବେଶ କରି ବାଉଳୀମା ଅଣ୍ଡାଳି ହୋଇ ପଚାରିଲା—ଏଁ ! "ମଣିଆବେଗ" କାହିଁ ମା ?

ସୁଷମା କହିଲା—ସେଇ ଯେ ଜନ୍ଦାଟା ପଡ଼ିଛି, ଆଣ୍ ।

ବାଉଳୀମା ତା ଆଣି ସୁଷମାର ହାତରେ ଦେଲା । ସୁଷମା ଖୋଲି ଦେଖିଲା—ସେଥିରେ ନୋଟ, ଟଙ୍କା, ରେଜକି ମିଶି ଅନେକ ଗୁଡ଼ାଏ ଅଛି । ପ୍ରାୟ ତିନିଶ ଟଙ୍କାରୁ କମ୍ ନୁହେଁ । ସୁଷମା ସେଥିରୁ ଦୁଇଟା ଟଙ୍କା ବାହାର କରି ବାଉଳୀମାକୁ ଦେଇ କହିଲା—ଏଇ ନେଇଯା, ଗୋବିନ୍ଦ ପଧାନ ଦୋକାନରୁ ଯାହା ଯାହା ଦରକାର ସବୁ ନେଇଆସିବୁ ।

ବାଉଳୀମା ଚକ୍ଷୁ ଲଲାଟସ୍ଥ କରି ପଚାରିଲା—ସେ କାଗଜଗୁଡ଼ାକ 'ନୋଟ' କା କଣ ବୋଲି !

ସୁଷମା ହସି ହସି କହିଲା—ହଁ ନୋଟ । ତୋ ଗାଣ୍ଠିଆରେ ରଖିଥା, ଓଳ ।

ବାଉଳୀଆ ଚମକି ପଡ଼ି ଜବାବ ଦେଲା—ନୈଁ ମା ! ତାକୁ ସମ୍ଭାଳିବ କିଏ ? ତମ ପାଖରେ ଥାଉ ।

ଏହା କହି ସେ ଟଙ୍କା ଦୁଇଟି ନେଇ କାନିରେ ବାନ୍ଧିଲା । ମନେ ମନେ କହିଲା—ରଜାର ପିଲା, ତାଙ୍କ କଣ ଅଭାବ ? ଗୁପ୍ତେ ଗୁପ୍ତେ ଚୁକ୍ତିଦେଇ ଯାଉଛନ୍ତି, ବସି ଖାଉଥା । ଆଉ ରାଣୀର ବି ମନମୋହିନେବା କରାମତ ବେଶ୍ ଅଛି । ହସୁ ହସୁ, ନାଆଁ ଧରଚୋପା ଜାଉଁଠା ବିନା ସବୁ ଗୋଳମାଳ କରିଦେଲା । ନହେଲେ, ରାଣୀ ଠିକ୍ ରାଣୀହୋଇ ବସିଥାନ୍ତା ।

ଏଭଳିଆର ଭାବୁ ଭାବୁ ବାଉଳୀଆ ହଠାତ୍ ମୁହଁ ପଛକୁ ବୁଲାଇ କାଉ କାନ୍ଦୁଡ଼ି ପକାଇଲା । ନିଜକୁ ଶାସନାଇବା ମନେ ମନେ କହିଲା—ଆରେ ମା ! ମୁଁ କଣ ଭାବୁଛି ଲେ ! ବଡ଼ ଘରର ବଡ଼ କଥା, କେତେବେଳେ ଲୁଗା ଖସିଜିବ, କଣ ଅବୋଲ କଣ ବାହାର ପଡ଼ିବ, ଅଳ୍ପ ଖୋଲୁ ଖୋଲୁ ମହାଦେବ ବାହାରିବ । ମୁଁ ଦୁଃଖୀ ଲୋକ, ମୋର ସେ କଥାରୁ କଣ ଯାଏ ଆସେ ଲୋ ମା ! ଚୁପ୍ ଚୁପ୍-ଚୁପ୍ ।

ଏଭଳିଆର ଭାବି ବାଉଳୀଆ ଠିକ୍ କଲା—ସେ ଯାହା ଯାହା ଶୁଣିଛି, ତା କାହାରି ପାଖରେ କିଛି ଲୁଗା ଖୋଲି କହିବ ନାହିଁ । ତାକୁ ବଡ଼ ମନୋଜ୍ଞ ଲୋକ, ରାଣୀ ଝିଅଟି ବି ବଡ଼ ସୁନ୍ଦର, ଦେଖିଲେ ମାଡେ ମାୟା ହୁଏ । ସେ ଦୁଇଟି ପ୍ରାଣୀର କଥା ସେ ନିଜେ କାହାକୁ କିନ୍ତୁ କହି ଜିପ୍ପଲଙ୍କ ପ୍ରତିମା ଦେହରେ କଳଙ୍କ ବୋଳିବ ନାହିଁ ।

ବାଉଳିଆ ଘର ଦ୍ୱାର, ମେଲା ଅପଣା ସବୁ ଝାଡ଼ି ପୋଛିଦେଇ ସଫା ସୁତୁରା କରିବାକୁ ଲାଗିଲା । ଶାଗ ଶାଗୁ ସେ ଘରୁ ଝାଡ଼ି ସାରି ଓଷ ଦୋକାନକୁ ବାହାରିବାପାଇଁ ତତ୍ପର ହୋଇପଡ଼ିଲା ।

ସୁଧାମା ଧାନ୍ତି ଘସୁ ଘସୁ ଭାବିବାକୁ ଲାଗିଲା—ଆରଦିନର ଖାଦ୍ୟାନର କଥା । ମନରେ ବସ ଅପୂର୍ବ ଦୃଢ଼ତା ଧରି ସେହି

ବୈଭବମୟ ଜୀବନପଥରେ ନିର୍ଦ୍ଦ୍ୱନ୍ଦ୍ୱରେ ଚାଲିବାକୁ ସଙ୍କଳ୍ପ କଲା । ଯାହାର ଅଲକ୍ଷିତ ହସ୍ତ ତାକୁ ସଂସାରରେ ଟାଣିନେଇ ଚାଲିଛି, ତାହାର ତାକୁ ଯେଉଁଆଡ଼କୁ ନେବାର ଇଚ୍ଛା, ସେ ଆଡ଼କୁ ନେଉ । ସେଥିରେ ସେ ବିଚଳିତ ହେବ କାହିଁକି ?

ଦିନ ପରେ ଦିନ କଟିଯିବାକୁ ଲାଗିଲା । ଦିନ ସମସ୍ତଙ୍କର କଟେ । ରଜାର କଟେ ମୂଲିଆର ବି କଟେ । ସୁଖୀର କଟେ, ଦୁଃଖୀର ବି କଟେ । ସନାଥର କଟେ, ଅନାଥର ମଧ୍ୟ କଟେ । ଏହିଠାହିଁ ଏ ଦୁନିଆର ସାମ୍ୟବାଦର କଥା । ତେବେ କାହାର ହର୍ମ୍ୟକୋଳରେ କଟେ, କାହାରବା ପର୍ଣ୍ଣକୁଟୀରରେ କଟେ । କାହାର ସ୍ୱର୍ଣ୍ଣପଲଙ୍କରେ ଦିନ ଯାଏ, କାହାର ବା ତୃଣଶଯ୍ୟାରେ ଯାଏ । ଏଇମାତ୍ର ପ୍ରଭେଦ । ଏଇ ପ୍ରଭେଦଟିକୁ ନେଇ ସୁଷମାର ଦିନ ଗୁଡ଼ିକ ବେଶ୍ କଟିଯିବାକୁ ଲାଗିଲା । ବାଉଳିମା ତାର କଡ଼େ କଡ଼େ ଥାଏ, ନିଜର ମୃତ୍ୟୁପାଳିତ କନ୍ୟାଟି ପରି ତାକୁ ସ୍ନେହ କରେ, ସ୍ନେହମମତାର ବନ୍ଧନ ପ୍ରଗାଢ଼ରୁ ପ୍ରଗାଢ଼ତର ହୋଇଉଠେ, ମା-ଝିଅ ପରି ଦୁଇପ୍ରାଣୀ ଆନନ୍ଦରେ ଚଳିଯାନ୍ତି । ଜନ୍ମ ଜନ୍ମର କଥା କୁହନ୍ତି । ଜଣେ ଆଉ ଜଣଙ୍କର ମନ ନେବାକୁ ସବୁବେଳେ ଚେଷ୍ଟିତ ଥିଲେ, ସଂସାରରେ ଯେଉଁ ଶାନ୍ତି ସୁଧାର ପ୍ରବାହ ଲୀଳାୟିତ ଗତିରେ ବୋହିଯାଏ, ଏହି କ୍ଷୀର ପର୍ଣ୍ଣକୁଟୀରଟିରେ ତାହା ଦିନ ପରେ ଦିନ ବୋହିଯାଉଥିଲା । ବାଉଳିମା ସୁଜିର ଜୀବନ-ଇତିହାସର ଦୁଃଖବିଷାଦଟି କାହାର ପାଖରେ ଖୋଲି କହେ ନାହିଁ । ମନରେ ଭୟ—କାଳେ ସେହି ସ୍ନେହମୟ ଯୁବକ ଯୁବତୀ ଦୁଇଟିର ଚରିତ୍ରରେ ଆଞ୍ଚ ଲାଗିବ । ପ୍ରତିବେଶିନୀମାନେ ତାକୁ ଅନେକ କଥା ପଚରା ଉଚରା କରନ୍ତି, ଫାନ୍ଦରେ ପକାଇ ଦେଲେ ଅଧେ ଗୋଟାଏ କଥା ପେଟରୁ ବାହାର କରିନେବାକୁ ଦୁଷ୍ପ୍ରକୃତିର ଲୋକେ ମଧ୍ୟ ଚେଷ୍ଟା କରନ୍ତି, ମାତ୍ର ବାଉଳିମା ସେ ବିଷୟରେ ବଡ଼

ସତର୍କ ଥାଏ । ତଥାପି ପ୍ରତିବେଶୀ-ପ୍ରତିବେଶିନୀମାନେ କାନେ କାନେ ବେଳେ ଅଟେ ଫୁସ୍ ଫୁସ୍ ହୁଅନ୍ତି । ଦୁଇଟା ଲୋକ କେମିତି ଚଳୁଛନ୍ତି, ଏହି କଥାଟା ଭାବି ଭାବି ଲଟେଣି ଅଧେ ଲୋକଙ୍କୁ ନିଦ୍ରା ହୁଏ ନାହିଁ । କେହି ଅବା କହେ ବଡ଼ଲୋକର ଆଶ୍ରୟରେ ଅଛି, ଅଭାବ କଣ ? ଅନ୍ୟ କେହି ବିଦ୍ରୁପ କରି ତାର ଜବାବ ଦିଏ—'ହଁ ! ଏମିତି ଖାଲି ଖାଲି ଆଶ୍ରୟଦେବା ଲୋକ ଦୁନିଆରେ ମୁଁ ତେର ଦେଖିଛି ।' ଗୋଟାଏ କଥା ସେମାନଙ୍କୁ ବିଶେଷ ବ୍ୟସ୍ତ କରିପକାଏ । ତା ହେଉଛି ଏହି ଯେ, ଯେଉଁ ଲୋକର ସେ ଆଶ୍ରିତା, ସେ କଣ ଦେଖୁନାହିଁ ଯେ ଝିଅଟାର ବିବାହର ବୟସ ଅତିକ୍ରମ କରିଯାଉଛି । ଭିତରର କଥାଟା କଣ ତାହା ଅନୁମାନ କରିବାକୁ ଚେଷ୍ଟାକରି କେତେଲୋକ ଘର୍ମାକ୍ତ ହୋଇଉଠନ୍ତି । ବାଉଲ୍‌ମାକୁ ପଚାରିଲେ ସେ ପାଙ୍କିଦେଇ କହେ— ହଃ, ତାହିଁ ବଳି ତାହିଁ ବଳି ଯୁବତୀ ଝିଅ ଲୋକମାନଙ୍କ ଘରେ ରହିଛନ୍ତି । ସେଥିର ଏମିତି କେତେଗୁଡ଼ାଏ ବୟସ କି ? ବାହା ଲଗନ ପିଟିଲେତ ହୁଏ, ପରଜାପତି ଘଟିଥିବ, ସେ କଣ କମ୍ କଥା ! ଯୋଗାଡ଼ ଲାଗିଛି । ଦିନେ ହବ ।

---

## ଊନବିଂଶ ପରିଚ୍ଛେଦ

ଦିନ ପରେ ଦିନ, ମାସ ପରେ ମାସ, ଏହିପରି ଗୋଟାଏ ଚୁରିବର୍ଷ କଟିଗଲା । ହରିଶଙ୍କରଙ୍କର କୌଣସି ଖବର ନାହିଁ । ସୁଚିର ତତ୍ତ୍ୱନେବାକୁ ଆସିବା ଦୂରେଥାଉ, ଗୋଟେ ଚିଠି ବି ଦିଅନ୍ତି ନାହିଁ । ସେହି ଯେ ସେଦିନ ହରିଶଙ୍କର ଗୃହମଧ୍ୟରେ ପ୍ରବେଶ ସୁଦ୍ଧା ନ କରି ବାହାରୁ ବାହାରୁ ଚାଲିଗଲେ, ତା ପରେ ଆଉ ଦେଖାନାହିଁ, ଦର୍ଶନ ନାହିଁ, କୌଣସି ସମ୍ପର୍କହିଁ ନାହିଁ । ବାଉଲ୍‌ମା ଦିନେ ଦିନେ ଅଧୈର୍ଯ୍ୟ

ହୋଇ ପଡ଼ିଲେ—ସଖି ! ବାବୁ କିଛି ଶରିଧନ ଦେଇଛନ୍ତି ? ସୁଶ୍ରୀମା କହେ—କାହିଁ ? ତୋତେ କି ଶରଂ ଦେବାକୁ କହିଯାଇଥିଲେ ? ବାଉଳିମା ଅଦ୍ଭୁତ ଅଶ୍ରୁଧାର ହୁଏ । ଉତ୍ତର ଦଏ—ମୋ ପାଇଁରେ ଥାଇ ତାଙ୍କର କେତେବେଳେ କାହାଦା,ଣ୍ଡା ହେଲା ମା ? ମୁଁ ତ ଜାଣେ ନାହିଁ ସେ କଥା । ତମେ ବ ଚିଠିଏ ତାଙ୍କୁ ଡାକିଲ ନାହିଁ, ସେ ବ ଆଉରକୁ ପଠିଲେ ନାହିଁ । ଏସବୁ କଣ ସଖି ?

ସୁଶ୍ରୀମା ଗମ୍ଭୀର ହୋଇ କହେ—ତୁ କାହିଁକି ଏତେ ଭାବୁଛୁ ବାଉଳିମା ? ବାବୁଙ୍କ ପାଇଁ କଣ କୌଣସି କଥା ଅଟକି ଯାଇଛି ? ଏଠି ଅସି ସେ କଣ କରିବେ ?

ବାଉଳିମା ତଟସ୍ଥ ହୋଇ କହେ—କି କଥା କହୁଛ ସଖି ! କିଛି କହିବାର ନାହିଁ ବୋଲି, କେଉଁଠି କଣ ଏକାବେଳକେ ଶୀଘ୍ରୋ ଦଅନ୍ତି ? ଏ କି ଧାରା !

ସୁଖି କହେ—ସେ ସବୁ କଥା ଭାବି କଣ ଲାଭ ବାଉଳିମା ? ସେଥିପାଇଁ ତୁ ବ୍ୟସ୍ତ ହେଉଛୁ କାହିଁକି ? ତୋର କିଛି ଅସୁବିଧା ହେଉଛି ?

ବାଉଳିମା ଉତ୍ତର ଦଏ—ସେଇ କଥା ତମର ଗଲାନାହିଁ ସଖି ! ମୋର ପୁଣି କି ଅସୁବିଧା ସ ? ମୋ ପେଟଟା କଣ ଉପାସ ରହୁଛି ? ମୁଁ କଣ ଖାଇବାକୁ ପାଉନାହିଁ, ନା ପିନ୍ଧିବାକୁ ପାଉନାହିଁ ? ନା, ତମଠାରୁ ଅଧିକ କେହି ମୋର ଯତ୍ନମାନ କରିବ ? ସେ କଥ କୁ କିଏ ମୁଁ ଭାବନା କରୁଛି ସଖି ! ଏହି କଣ କି—ଦିନେ ନୁହେଁ, ଦିପଦ ନୁହେଁ, ମାସେ ନୁହେଁ ପଦେ ନୁହେଁ; ଆଜିକୁ ବର୍ଷକୁ ଉପର ହୋଇଗଲା । ବାବୁଙ୍କର ପତ୍ର ନାହିଁ । ନିଜେ ଆସିବା ନାହିଁ, ଚିଠି ନାହିଁ । ମଣିଷର ତ ପୁଣି ଦଣ୍ଡ-ପା ଅଛି । "ହଁ ଆମର ସବୁ କୁଶଳ, ତମକୁ ଠାକୁରେ କୁଶଳରେ ରଖିଛନ୍ତି ତ ? ତମର ଦେହ ମୁଣ୍ଡ ଭଲ

ଣା''—ଏମିତି କରି ଦଉଡ଼ ଲେଖି ଶାଗଣ୍ଡ 'ପୁଷ୍ପଲାଟ୍' ଫୋପାଡ଼ି ଦେଇ ପାରୁନାହାନ୍ତି ? ଏଙ୍କ ହେଲାମହେଶ ଲୋ ମା !

ବାଉଳୀମାର କଥାଶୁଣି ସୁନ୍ଦିର ହସ ଲାଗେ । ସେ କହେ—ସଂଭେଭ ! ଭାରି ଅଭଦ୍ର ବାକୁଟି । ବାଉଳୀମାର ଦକ୍ଷମୁଣ୍ଡ କଥା ଥରେ ବୁଝିବା ଶୁଝିବା, ଭଲମନ୍ଦ ପରୁଣିବା, କିଛି ନାହିଁ—ମହେଶ ଠାକୁର କଅଁଠି ବସି ଗଡ଼େଇଇ ହସାରେ ଲାଗିଯାଇଛନ୍ତି !

ସୁନ୍ଦି କଥା ଶୁଣିକ ଏପରି ମୁନ୍ଦାଉଙ୍ଗିକଲା କହେ ଯେ ବାଉଳୀମା ସ୍ୱର ଲମ୍ବେଇଦେଇ ମନ୍ତବ୍ୟ ଝାଡ଼େ—ଆ ମଲ ! ସବୁବେଳେ ତମର ହାଉଳି !

ବଳେ ବଳେ ବାଉଳୀମା ଅତ ନିକଟକୁ ଘୁଞ୍ଚିଆସି ଫୁସ୍ ଫୁସ୍ କରି କହେ—ସତ୍ଯ ! ସତ କହୁଛ, ମୋ ମୁଣ୍ଡ ଖାଇବ, ବାବୁଙ୍କୁ କିଛି କଡ଼ାକଥା କହୁଛ ?

ସୁନ୍ଦି ବିରକ୍ତ ହୋଇ ଜବାବ ଦଏ—ଦୂର୍ ଯୋଡ଼ାମୁହିଁ ! ସବୁବେଳେ 'ବାବୁ—ବାବୁ' ବୋଲି ମଲ, ଆଉ ଲୋକଙ୍କୁ ଦରକାର ମାଲ ! ବାବୁ ପାଇଁ ତୋର ପ୍ରାଣ କାହିଁକି ଛୁଟିଯାଉଛିଲୋ ବାଉଳୀମା ?

ବାଉଳୀମା ଟିକିଏ ଦବିଯାଇ କହେ—ବୁଝିଲ ନାହିଁ, ବଡ଼ଘରର ଝିଅବୋହୂ ମା, ଋଷାବାଷାଘର କୁମାରୀ । ଘରୁ ଟିକିଏ ତଳ ଖସିଗଲେ ଗଲା । ତମ ଆମ୍ଭଲି ଦୁଃଖୀ-ରଙ୍କି ଜିନିଷ ଯେ ପାଞ୍ଚପଦ ଶୁଣି ଶୁଣି କରି ହଁଶିଆରି ଦେଇଗଲେ ଦରଦାମ୍ଭ କାହିଁପାଇଁ । ପଛେ ଅସ୍ଥି ଗଣ୍ଡଗୋଳ ସେମାନଙ୍କ ଦାମରେ ଗ୍ଳାଏ ପଡ଼ ଲାଗିଯାଏ ।

ସୁନ୍ଦି ଅଟ୍ଟହାସ କହେ—ଓହୋ ! ବୁଝିଲି ! ସେଥି ଦାମକୁ ଦାଗ ଲାଗିଯାଏ ଖୁବ୍ ! ହଇ ପଇ ପଇସା ସେପରି ନଷ୍ଟ ହେବ ଲୋ ମା !

ବାଉଳୀମା ଏହାଶୁଣି ଅଧିକ ସନ୍ଦେହ କରି ବସେ । ପଚାରେ
—ସତି ! ସତରେ କିଛି କହୁଛ ?

ସୁଷ୍ମି ଗମ୍ଭୀର ହୋଇ ତାମସା ଦେଖିବା ମନରେ କହେ—ନ କହିବ
ଛାଡ଼ କି ? ତାଙ୍କ ଘରକୁ ସେ ବଡ଼, ଆମ ଘରକୁ ଆମେ ବଡ଼ ।
ଏଥିରେ ଡର କାହିଁକି ?

ବାଉଳୀମା ସୁଷ୍ମିର ମୁହଁକୁ ବଲ୍ ବଲ୍ କରି ଅନାଏ । ମନଟା
ତାର ଅଶଙ୍କାରେ ପୂରିଉଠେ । ସେ ଭାବେ—କଣ ହେଲା ? ସୁଷ୍ମମା
ତ ମାଛିକୁ ମର ବୋଲି କହିବା ଝିଅନୁହେଁ, ତା ତୁଣ୍ଡରୁ ପୁଣି କି
କଥା ବାହାରି ପଡ଼ିଲା ? ମାଣିଚଟିଆ ମାନ ମାରି ବସିରହିଲେ । ଏହା
ଭାବି ସେ ଖୁବ୍ ଭୟଭୀତ ହୁଏ ।

ସୁଷ୍ମମା କୌତୁକ କରି ପଚାରେ—ତେବେ ଆଉ କଣ
ବାଉଳୀମା ? ତାଙ୍କ ଗୋଡ଼ତଳେ ପଡ଼ିଥାନ୍ତି ?

ଏହା କହି ସେ ଖିଲ ଖିଲ ହୋଇ ହସିଉଠେ । ବାଉଳୀମା
ବୁଝିପାରେ—ସବୁ ମିଛ । ସୁଷ୍ମି ଥଟ୍ଟା କରୁଛି ।

ଦିନେ ବାଉଳୀମା ଖଣ୍ଡେ ପୋଷ୍ଟକାର୍ଡ ପାଇଁ ବଗିଚା କରି
କଟେଣି ଲୋକହାତରେ ପଇସା ଦେଇଦେଲା । ପୋଷ୍ଟ ଅଫିସଟା
ଅନେକ ମାଇଲ ବାଟ । ଲୋକଟି ପୋଷ୍ଟକାର୍ଡ ଖଣ୍ଡିଏ କିଣିଆଣି ତା
ହାତରେ ଦେବାପରେ ବାଉଳୀମା ତରତର ହୋଇ ଆସି ସୁଷ୍ମି
ପାଖରେ ହାଜର ହୋଇଯାଇ କହିଲା—ଏଇ ଆଣିଛି ସତି !

ସୁଷ୍ମି ଖଣ୍ଡିଏ ରାମାୟଣ ପୋଥି କୋଳରେ ଧରି ତନ୍ମୟ ହୋଇ
ପଢୁଥିଲା । ରାମ ଜାନକୀ ଦେବୀଙ୍କୁ ବର୍ଜନ କରିଛନ୍ତି, ହତଭାଗିନୀ
ଆଜି ବନବାସିନୀ । କେତେବଡ଼ ରାଜ୍ୟର ରାଣୀ କେତେ ଘରର
କୁଳବଧୂ, କେତେ ସତୀ ସୁଲକ୍ଷଣୀ ! କିନ୍ତୁ ଆଜି ତାଙ୍କର କି ଅବସ୍ଥା,
କି କଷଣ ! ଏତେ ବଡ଼ ସ୍ନେହମୟ ସ୍ୱାମୀ ରାମଚନ୍ଦ୍ର ସୀତାଠାକୁରାଣୀଙ୍କୁ

ଫୁଟ୍‌ପାଇଛନ୍ତି,—ନିବାସିତ କରି ନାହାନ୍ତି। ହାୟ, ହାୟ, ଦେବତା ବି ଏତେ କଠୋର ହୁଅନ୍ତି ! ଦେବୀ ଠାକୁରାଣୀଙ୍କ ଜୀବନରେ ବି ଏମିତି ଗୋଟାଏ ଗୋଟାଏ ଦୁଃଖର ଦିନ ଅଛି ! ଛାର ମନୁଷ୍ୟର କଥା ବା କଣ !

ଏହା ଭାବି ଭୁଟିର ଜାନକୀଦେବୀଙ୍କ ଉପରେ ଅସୀମ ସହାନୁଭୂତି ଜାତ ହେଉଥିଲା, ରାମଚନ୍ଦ୍ରଙ୍କ ଉପରେ ଭୟଙ୍କର କ୍ରୋଧ ଜନ୍ମୁଥିଲା। ଠିକ୍ ଏହାପରି ସମୟରେ ବାଉଳିମା ଆସି ପାଖିରେ କହିଲା—ଏଇ ଆଣିଛି ରାଣି !

ଏତେବଡ଼ ରସମୟ ଉପାଖ୍ୟାନର ମଧ୍ୟସ୍ଥଳରେ ରସଭଙ୍ଗ ଘଟିବାରୁ ଭୁଟି ବିରକ୍ତହୋଇ କହିଲା—କି ନିଦ୍ଦା ଆଣିଛୁ ଲୋ ପୋଡ଼ାମୁହିଁ ?

ବାଉଳିମା ଜବାବ ଦେଲା—ଏ ରାଣି ! ଏ ମା ! ଦ କଲମ ଲେଖି ଦିଅନ୍ତୁ ଦେଲ, ତମ ହାତ ଯୋଡ଼ ଧରୁଛି।

ଏହା କହୁଁ କହୁଁ ସେ ଭୁଟିର ଦୁଇଟି ଧରି ପକେଇଲା। ଭୁଟି ଅବାକ୍ ହୋଇ ରହିଁ ରହିଲା। କି ପାଗଳାଟା ! ତାର ସମସ୍ତ ବିରକ୍ତି ମୁହୂର୍ତ୍ତକ ମଧ୍ୟରେ ଉଭେଇଗଲା। ସେ ପଚାରିଲା—କା ପାଖକୁ ଲେଖିବାକୁ କହୁଛୁ ବାଉଳିମା ?

"ବାବୁଙ୍କ ପାଖକୁ ରାଣି, ଆଉ ପୁଣି କାହା ପାଖକୁ ?"

ଭୁଟିମା ହସିଦେଇ କହିଲା—ଦୂର୍ ପାଗଳୀ ! ତାଙ୍କର ଠିକଣା କଣ ଜଣାଅଛି ?

ବାଉଳିମାର ବୁଦ୍ଧି ଗୋଳମାଳ ହୋଇଗଲା। ସେ ଭାବିବାକୁ ଲାଗିଲା—ଏଥିକୁ କି ଉପାୟ ? ଏତେ କୁହାପୁଛା ଖୋସାମଦ୍ ଦରାମଦ୍ କରି ଯୋଗାଡ଼ କରିଥିବା ଖଣ୍ଡେ ଯେ ଅଣାଇ ଥିଲା, ସେ ଖଣ୍ଡିକା କଣ

ମ.ଝି ହୋଇଯିବ ? ହଠ'ତ୍ ତା ମୁଣ୍ଡରେ ଗୋଟାଏ ବୁଦ୍ଧି ପଶିଗଲା ।
ସେ କହିଲା—ତାହେଲେ ଭ.ଣି, ଗୋଟାଏ କାମକଲେତ ହୁଅନ୍ତା ?

ସୁଗ୍ରୀମା କୌତୁହଳୀ ହୋଇ ପଚାରିଲା—କି କାମଟେ ?

ବାଉଳୀମା ଜବାବ୍ ଦେଲା—ଏତେ ଲୋକ 'ଟେଲିଗ୍ରାମ୍' କରି ଖବର ଦେଉଛନ୍ତି, ତାଙ୍କରତ ଠିକ୍ ପରେ ପହଞ୍ଚିଯାଉଛି । ସେମିତିଟାଏ କରିଦେଲେ ହୁଅନ୍ତା ନାହିଁ ?

ସୁଗ୍ରୀମା ଠୋ ଠୋ ହୋଇ ହସି ଉଠିଲା । କହିଲା—ଦୂର୍ ଅଲାଗୀ ! ଠିକଣା ଜାଣିଥିଲେ 'ଟେଲିଗ୍ରାମ୍', ସରଗ୍ ସବୁ ହୁଏ, ନ ଜାଣିଥିଲେ କିଛି ହୁଏ ନାହିଁ ଲୋ ?

ତା ପରେ ସୁଗ୍ରୀମା ତାକୁ ବୁଝେଇ ସମଝେଇ କହିଲା—ବାଉଳୀମା ! ତୁ ଏମିତି ହ'ନା । ବାବୁତ ଚିଲା ନୁହନ୍ତି । ଶଠେପସ ଦେବା ଦରକାର ଥିଲେ ସେ ଦଅନ୍ତେ । ଯେତେବେଳେ ଦରକାର ପଡ଼ିବ, ସେତେବେଳେ ନିଶ୍ଚେ ଦେବେ । ଅଜି ତୁ ସେ ପୋଷ୍ଟକାର୍ଡ଼ଟା ରଖିଦେଇଥା, ପରେ ଠିକଣା ବୁଝି ଚିଠି ଲେଖିବା ।

ଅଗତ୍ୟା ବାଉଳୀମା ନିଃଶ୍ୱାସଟାଏ ପକାଇ ପୋଷ୍ଟକାର୍ଡ଼ଖଣ୍ଡ ନେଇ ସାଇତି ରଖିବାକୁ ଗଲା । କିନ୍ତୁ ତାର ମନ ପ୍ରବୋଧ ମାନିଲା କି ନାହିଁ କିଏ ଜାଣେ ।

ପାନ୍ଦୁନା କିଛିଦିନ ଗଡ଼ିଗଲା । ବର୍ଷ ପୂରିଯାଇ ଦୁଇମାସରୁ ଅଧିକ ହେବାକୁ ବସିଲା । ତଥାପି ବାହାରର କୌଣସି ଲୋକ ଖୋଜଖବର ନେଲେ ନାହିଁ । ବାଉଳୀମା ଭଲ ଭଲ ନିରନ୍ତ ହୋଇପଡ଼ିଲା । ବୁଝି ସେସବୁ କଥା ଭାଳିବାକୁ ଯାଏନାହିଁ । ଥରେ ଅଟେ ତାର ଅବାଧ୍ୟ ମନଟା ଶାସନରୁ ଖସିଯାଇ ତାହା ଭଲବସିଲେ ଏସ ସୃଜିଷ୍ଟ ତାକୁ ବୃଦ୍ଧତା ସନ୍ଧ୍ୟାରେ ବାଟକୁ ନେଇଅଟେ । ତାକୁ ଯେତେଜେଲେ କହେ—ଏ ଜଳ୍ମରେ ଯେଉଁଟା ଭଳିବାର କଥା

ନୁହେ ଚେଷ୍ଟା ଭୁଲିବାକୁ ବସୁଛୁ କାହିଁକି ? ଏ ଦୁର୍ବଳତା ମାର୍ଜନାର ଯୋଗ୍ୟ ନୁହେଁ । ଚେଷ୍ଟା ସର୍ବଥା ଛାଡ଼ିବାକୁ ହେବ । ମନକୁ ଏହି ମହାମାନ୍ୟ ହିତୋପଦେଶ ଦେଇ ଦେଇ ହରଶଙ୍କରଙ୍କ ବିଦାୟବାଣୀ ତାର ସ୍ମୃତିପଥରେ ଉଦିତ ହୁଏ । "ମନୁଷ୍ୟର ସମସ୍ତ ଅଭିଳାଷ ଗୋଟାଏ ଜୀବନରେ ପରିପୂର୍ଣ୍ଣ ହୁଏ ନାହିଁ, ସୁଷି !"—ଏହି ତାଙ୍କର ଶେଷକଥା । ଏହି ଉପଦେଶ ତାର ଶିରୋଧାର୍ଯ୍ୟ । ଏହା ହିଁ ଖାଣ୍ଟି ସତ୍ୟ,—ବେଦବାକ୍ୟଠାରୁ ବଳି ମୂଲ୍ୟବାନ୍ । ସୁଷି ଏ ଜୀବନରେ ସେପରି ଅଭିଳାଷ ରଖିବାକୁ ଚାହେଁନାହିଁ । ଜୀବନାନ୍ତ ପର୍ଯ୍ୟନ୍ତ ତାକୁ କପଟ ଅବସ୍ଥାରେ ଏହି କାଳ କାଟିବାକୁ ପଡ଼ିବ ତା ସେ ନିଜେ ମଧ୍ୟ ସ୍ପଷ୍ଟାକ୍ଷରରେ ହରଶଙ୍କରଙ୍କୁ ଶୁଣାଇ ଦେଇଛି । ସୁତରାଂ ସେ ପ୍ରଶ୍ନର ମୀମାଂସା ହୋଇସାରିଛି । ଆଉ କିଛି ବାକିନାହିଁ । ସୁଷିର ଜୀବନରେ ଯେଉଁଠାହିଁ ଶେଷ ତୃପ୍ତି ଏବଂ ସେହି ତୃପ୍ତି ରକ୍ଷାରେହିଁ ତାର ମୁକ୍ତି ।

ଏମିତି କରି ସେ ହରଶଙ୍କରଙ୍କ କଥା ଭୁଲିବାକୁ ଚେଷ୍ଟାକରେ କିନ୍ତୁ ଆଉ ଜଣକର କଥା ସେ ଭୁଲିପାରେ ନାହିଁ, ଭୁଲିବାକୁ ଚେଷ୍ଟାମଧ୍ୟ କରେନାହିଁ । ସେ ଜଣକ ରାଧାପ୍ରିୟ । ତାର ଶ୍ୟାମପ୍ରିୟଙ୍କୁ ଭୁଲିବାକୁ ଇଚ୍ଛା ହୁଏ ନାହିଁ । ଅନେକ ସମୟରେ ସେ ତାଙ୍କ କଥା ମନେ ପକାଏ ଏବଂ ସେଥିରୁ ଆନନ୍ଦ ପାଏ । ଆଜିକାଲି କିଏ ତାଙ୍କୁ ତରଣ ଗୁଜିଷ୍ଣ ଖଣ୍ଡ ଲେଖାଏଁ ପାନ ଭାଙ୍ଗି ଦେଉଛନ୍ତି ? ମନୋମତ କରି ଭାଙ୍ଗିଦେଉଛନ୍ତି ତ ? ହଁ, ତା ନ ଦେଉଥିବେ କାହିଁକି ? ପ୍ରବୁଦ୍ଧନେ ଜଣ ସୁଷି ତାଙ୍କ ପାଖରେ ଥିଲା ? ଅନ୍ୟଲୋକ ତ ପୁଣି ଭାଙ୍ଗି ଦେଉଥିଲେ । ଏହିପରି କେତେ ତର୍କ ତା ମନରେ ଉଠେ ଏବଂ ସଙ୍ଗେ ସଙ୍ଗେ ସମସ୍ତ ତର୍କର ମୀମାଂସା ହୋଇଯାଏ । କିନ୍ତୁ ଶ୍ୟାମପ୍ରିୟଙ୍କ ସ୍ମୃତି ସେ ତର୍କ ଓ ମୀମାଂସାର ବହିର୍ଭୂତ ପରି ବୋଧହୁଏ । ଥରେ ଥରେ

ପ୍ରାଣଭିତରେ ଥାଇ କିଏ ଯେପରି ତାକୁ ଠେଲାଠାଏ ଦେଇ କହେ—ଚାଲ୍ ଚାଲ୍, ସ୍ୱାମୀପ୍ରିୟଙ୍କ ପାଇଁ ଦଣ୍ଡେ ପାନ ଭାଙ୍ଗି ଦେଇ ଆସିବୁ ଚାଲ । ସେ ଚମକି ପଡ଼େ । ନିଜର କଳ୍ପନା ଆଜି ତା ସହିତ ପରିହାସ କରୁଛି, ଏହା ବୁଝିପାରି ସେ ଲଜ୍ଜିତ ହୁଏ ।

ବାଉଳିମା ପାନ ଖାଏ, ଅବଶ୍ୟ ତରୁଣ ଚାଳାଣ ଖଣ୍ଡ ନୁହେଁ । ଦୀନ ଦରିଦ୍ର ଯେପରି ଖାଆନ୍ତି ସେହିପରି । ତେବେ ଖଣ୍ଡେ ପାଟିରେ ଗୁଞ୍ଜିଦେଲେ ପାଞ୍ଚସାତ ଘଣ୍ଟା ଚାଲିଯାଏ । ମେଞ୍ଚାଏ ଚୂନ, ତଦନୁପାତରେ ଖଇର ଗୁଣ୍ଡ, ତା ସାଙ୍ଗକୁ କିଛି ଗୁଆ, ପୁଣି ହାପୁଲେ ଗୁଣ୍ଡି—ଏ ହେଲା ବାଉଳିମାର ପାନଖିଆ । ତୃପ୍ତି ସ୍ୱାମୀପ୍ରିୟଙ୍କ କଥା ମନେ କରି ଦିନେ ଦିନେ କହେ—'ବାଉଳିମା ମୋତେ ଖଣ୍ଡେ ପାନ ଦେ ତ ଆଜି ଖାଏଁ ।' ବାଉଳିମା ଆକାଶରୁ ଦୁଲ୍ କରି ଝୁଣ୍ଟି ପଡ଼ିଲା ଭଳି କହେ—'କଲେ ମା, ଆଜି କଉଁଦିଗରୁ ସୂର୍ଯ୍ୟ ଦେବତା ଉଇଁଥିଲେ କି, ପାନ ଖାଇବାକୁ ମନ ହେଉଛି ।' ତୃପ୍ତି ହସି ଉଠେ । ବସୁଡ଼ିକରେ—ଟିକିଏ ଚୂନ, ଟିକିଏ ଖଇର, ଅଳ୍ପ କିଛି ଗୁଆ ଦେଇ ଖଣ୍ଡେ ପାନ ଭାଙ୍ଗିଆଣ । ବାଉଳିମା ତଦନୁସାରେ ଖଣ୍ଡିଏ ପାନ ଭାଙ୍ଗିଦିଏ, କିନ୍ତୁ ତାର ମନକୁ ପାଏନାହିଁ । ସେ କହେ—ଛିକର ! ଏମିତି ପାନ ଖାଇବା ଯାହା, ପାଟିରେ ଛତୁମୁଣ୍ଡିବା ତାହା ।

ସେଦିନ ବାଉଳିମା ତୃପ୍ତିର ବିବାଦରେ ଟୋଡ଼ି ଲଗେଇ ପାନ ଭାଙ୍ଗୁଛି । ତୃପ୍ତି ଟିକିଏ ଛଡ଼ାରେ ବସି କହୁଛି—'ଏଁ, ଇସ୍ସ୍ କଣ କଲୁ ? ମୋତେ ମାରିଦେବୁ କି ? ଏତେ ଚୂନ ବୋଳି ପକାଉଛୁ କାହିଁକି ? ଖାଲି ଧାରେ ଦେ ।' ଏହିପରି ସମୟରେ ହସ୍ ହସ୍ ହୋଇ ଜଣେ ଘର ଭିତରକୁ ପଶି ଆସିଲା । ମୁହଁରେ ଲମ୍ବା ଦାଢ଼ି, ହାତରେ ଖଣ୍ଡେ ଛଡ଼ି । ହଠାତ୍ ତୃପ୍ତି ଉପରେ ଦୃଷ୍ଟି ପଡ଼ିବାରୁ କହିଲା—ବାଃ, ତୁ ତୃପ୍ତି ନାରେ ? ଏତେ ବଡ଼ ହୋଇଲେଣି !

ସୁଷି ଅବାକ୍ ହୋଇରହିଲା । ବାଉଳିମା ତୁନି ତୁନି କହିଲା—ଏଇଟା କାହା 'ଝିଅଟି ଲୋ ମା' ?

ଆଗନ୍ତୁକ ଅଗ୍ରସର ହୋଇ ହୋଇ ନିଜର ପରିଚୟ ଦେଲା । ଟେଉବର ହାତରେ ବାଡ଼ିର ଅଗଟା ମୋଡ଼ୁଁ ମୋଡ଼ୁଁ କହିଲା—ଓହୋ ! ଚିହ୍ନି ପାରୁନାହୁଁ ପରା । ହଁ, ଚିହ୍ନିବୁ ବା କେମିତି ? କେଉଁ କାଳର କଥା ! ଗୋଟେ ଏ ଯୁଗ ବିତିଗଲାଣି ! ଆରେ, ମୁଁ ତୋର ଜଇ ଭାଇରେ ! ପିଲାଦିନେ ତୋତେ କେତେ କାନ୍ଧେଇ କାନ୍ଧେଇ ମଣିଷ କରିଛି । ସେକଥା କି ଆଉ ତୋର ମନେ ଥିବ ? ଅପାଥିଲେ ଆଜି ଚିଠିପତ୍ର ଲେଖିଆନ୍ତେ । ହାୟ ହାୟ, ସେତ ଆଜି ସ୍ୱର୍ଗରେ ମୁଁ ଏଇ ସେ ଦିନ ଖବର ପାଇଲିରେ । ଖବରଟା ପାଇ ମନଟା ବଡ଼ ଘାଣ୍ଟିଚକଟି ହେଲା । ଭାବିଲି—"ନା, ଥରେ ନ ଗଲେ ନୋହିବ । ପିଲାଟା ଆଜି ଅକାଳରେ ଭାସୁଥିବ, ମାଆଟିତ ଗଲେଣି; ଆଉ କିଏ ଅଛି ? ଆଉ କଲିକତା ଗାଁରେ ବସି ବାବୁଆନା କରିବାକୁ ମନ ଟେକିଲା ନାହିଁ । ବସିଲାଠାରୁ ଉଠି ଆସିଲି । ଆହା ହା ! ଆହା ଠାକୁରାଣୀ ! ସେ କେଡ଼େ ମଙ୍ଗଳର ମଣିଷ ଥିଲେ ! ମୋତେ କେତେ ଶରଧା କରୁଥିଲେ !"

ଏହା କହି ଆଗନ୍ତୁକ ହାୟ ହାୟ ହେବାକୁ ଲାଗିଲା । ସୁଷିର ଚଟ୍‌ପଟ୍ ମନେ ପଡ଼ିଗଲା,—ଜୟକୃଷ୍ଣ ବୋଲି ମାଆଙ୍କର ଏକ ଦୂର ସମ୍ପର୍କୀୟ ପୁତୁରା ଥିଲା, ପିତାଙ୍କ ଅଜ୍ଞାତରେ ସେ ତାକୁ ଘରେ ଆଣି ରଖିଥିଲେ । ସେ ଦିନେ ଘରଛାଡ଼ି ପଳେଇଥିଲା । ମା ଥରେ ଅଧେ ତା କଥା କହିଛନ୍ତି । କିନ୍ତୁ ଭ୍ରାତୃପୁତ୍ରର ସେ ଯେଉଁ ଚିତ୍ର ଅଙ୍କନ କରିଯାଇଛନ୍ତି ତାହା ଉଦ୍ଧତ,—ଅନ୍ତତଃ ସୁନ୍ଦର ନୁହେଁ ।

ସୁଷମା କେତେକ ପରିମାଣରେ କୁଣ୍ଠିତ ଚିତ୍ତରେ ଆସି ଭାଇ ଭାଇର ପାଦତଳେ ପ୍ରଣାମ କଲା । ଜୟକୃଷ୍ଣ ତାର ମୁଣ୍ଡଟି ସ୍ପର୍ଶ କରି କହିଲା—ଉଠ୍ ଉଠ୍, ସୁଷି, ଉଠ୍ । ସୁଷି ଉଠି ଛିଡ଼ାହେଲାରୁ ସେ

ଛୁନି ଛୁନି ପଚାରିଲା—ସେ ଲୋକଟି କଏରେ ବୁଢ଼ୀ ! ଟୁଣ୍ଡି ଜବାବ୍ ଦେଲା ସେ ବାଉଲିମା । ମାଆଙ୍କ କାଳ ହୋଇଗଲା ଦିନରୁ ସେ ଯମ ଘରେ ଅଛି ।

ଜୟକୃଷ୍ଣ "ଓଃ ହୋ, ହୋ" ହୋଇ ହସିଉଠି କହିଲା—ବାଉଲିମା, ବାଉଲିମା ? ଆରେ ! ତାକୁ ଅଉ ମୁଁ ଚିହ୍ନେ ନାହିଁ ନା ? ବେଶ୍ ବେଶ୍, ଭଲ ଭଲ । ଘାଟକୁ ଗୋଟିଏ ଲୋକ ଥିବା ଦରକାର ।

ବାଉଲିମା ଆଁ ଠା କରି ଗୃହିଁଥାଏ । ମନେ ମନେ କହୁଥାଏ —କେଉଁଦିନ ଏତେ ପରିଚୟ ହେଲା ଲୋ ମା ।

ସେ ଯାହା ହେଉ, ବର୍ତ୍ତମାନ ଦୁଇଟି ଲୋକସ୍ଥାନରେ ତିନୋଟି ଲୋକ ହେଲେ । ଠିକ୍ କହିବାକୁ ଗଲେ ଏହି ଗର୍ବଲେଶହୀନ ପଲ୍ଲୀ ମନ୍ଦିରଟିରେ ଦୁଇଟି ଦେବତା ଥିଲେ, ବର୍ତ୍ତମାନ ସେମାନଙ୍କ ସାଙ୍ଗକୁ ଏକ ଦାନବର ଆବିର୍ଭାବ ହେଲା । ଜୟକୃଷ୍ଣ ଏତେ କାଳ ହେଲା କଲିକତାରେ ରହି ଯେ କଦର୍ଯ୍ୟ ଉପାୟରେ ଜୀବନ ଯାପନ କରୁଥିଲା, ତାହା ବର୍ଣ୍ଣନା କରି ଏ କାହାଣୀ କଳଙ୍କିତ କରିବା ଲେଖକର ଅଭିପ୍ରେତ ନୁହେଁ । କିନ୍ତୁ ସାମାନ୍ୟ ଟିକିଏ ସୂଚନା ନ ଦେଲେ ନ ଚଳେ । ଯେଉଁ ଦୁଷ୍ଟରିତ୍ରା ସ୍ତ୍ରୀଲୋକଟାକୁ ନେଇ ଜୟକୃଷ୍ଣ ସେଦିନ ଅନ୍ତର୍ଦ୍ଧାନ ହୋଇଯାଇଥିଲା ସେ କଲିକତାରେ ରହି କାଳକ୍ରମେ ବେଶ୍ୟାବୃତ୍ତି ଆରମ୍ଭ କରିଦେଇଥିଲା ଏବଂ ଜୟକୃଷ୍ଣ ତାର ସେହି କଦର୍ଯ୍ୟ ଜୀବିକାଯାପନରେ ସହାୟତା କରି ନିଜର କଳୁଷିତ କଳଙ୍କମୟ ଜୀବନ ଯାପନ କରୁଥିଲା । ଅନେକଦିନ ଏହିପରି କଟିଥିଲା । କିନ୍ତୁ ଏ ଜୀବନଯାତ୍ରାର ଅପରିହାର୍ଯ୍ୟ ପରିଣାମ ଯାହା, ତାହାହିଁ ଅବଶେଷରେ ଘଟିଲା । ନାନାକାରଣରୁ, ନାନାଘଟଣାଚକ୍ରରୁ ଏହି ଦୁଷ୍ଟରିତ୍ର ଯୁବକ ଯୁବତୀ ଦୁଇଟାଙ୍କ ମଧ୍ୟରେ ଭୀଷଣ କଳହରୁ

ସୁବିଧାତ ହେଲା । ତାହା ଦିନକୁ ଦିନ ପରିପୁଷ୍ଟ ଓ ପରିବର୍ଦ୍ଧିତ ହୋଇ ଅବଶେଷରେ ଗୋଟାଏ "ଖୁନ୍-ଖରାପି" ବା ହତ୍ୟାକାଣ୍ଡର ଅଭିନୟ ହେବାକୁ ଯାଉଥିଲା । କିନ୍ତୁ ଭାଗ୍ୟକ୍ରମେ ଜୟକୃଷ୍ଣ ଜୀବନନେଇ ପଳାଇ ଆସିବାକୁ ସମର୍ଥ ହୋଇଥିଲା ଏବଂ ତାହାର ପାପପ୍ରବୃତ୍ତି କଲିକତାର ଜଣେ ଧନଶାଳୀ ବଙ୍ଗୀୟ ବାବୁଙ୍କର "ବାଗାନବାଡ଼"ରେ ପ୍ରତିଷ୍ଠିତା ହୋଇ ଉଦ୍ୟାନ ବିହାରର ସୌଭାଗ୍ୟସୁଖ ବର୍ଦ୍ଧନ କରିଥିଲା । ଜୟକୃଷ୍ଣର ହଠାତ୍ ମନେ ପଡ଼ିଗଲା ପୂର୍ବତନ ଆଶ୍ରୟ ସ୍ଥଳୀର କଥା ଏବଂ ଅଜ୍ଞାତବଳରେ ସେ ଏଥର ଜନ୍ମଭୂମି ଅଭିମୁଖରେ ବାହୁଡ଼ାଯାତ୍ରା ଆରମ୍ଭ କରିଦେଲା ।

ଜୟକୃଷ୍ଣ ସଙ୍ଗରେ ଆଣିଥିଲା ତାର ବହୁଦିନର ପରିପୋଷିତ ଅହିଫେନପ୍ରୀତି । ପ୍ରତିଦିନ ସେହି ପ୍ରୀତିପଥର ପାଥେୟ ସ୍ୱରୂପ ତାର ଗୁଣ୍ଠିଗଣ୍ଡା ପଇସା ଲୋଡ଼ା । ସେତକ ନ ହେଲେ ତାକୁ ତ୍ରିଭୁବନ ଅନ୍ଧାର ଦିଶେ, ଦଶଦିଗ ଘୂର୍ଣ୍ଣିତ ହୁଏ, ଜୀବନର ସମସ୍ତ ସରସତା ମୁହୂର୍ତ୍ତିକେ ଲୋପ ପାଇଯାଏ । ହାଇ ଆସେ, ଆଖି ବୁଜିଯାଏ, ନିଶ୍ୱାସ ତାତିଉଠେ, ପୃଥ୍ୱୀ ପ୍ରଳୟ ହୁଏ । ଦିନେ ଓଳିଏ ତାର ଭାତ ନ ଖାଇଲେ ଚଳିଯାଇପାରେ, କିନ୍ତୁ ଅଫିମ ନ ହେଲେ ସେ ଅଚଳ । ସେତକ ତାର ପ୍ରାଣ, ସ୍ୱୟଂ ସେତକରୁ ବଞ୍ଚିତ ହେଲେ ସେ ମହା-ବିଭ୍ରାଟ ସୃଷ୍ଟିକରେ, ଅକଥ୍ୟ ଉପଦ୍ରବ ଆରମ୍ଭ କରେ, ସ୍ୱର୍ଗକୁ ନରକରେ ପରିଣତ କରିବାକୁ କୁଣ୍ଠାବୋଧ କରେ ନାହିଁ । ସେତକ ନିର୍ବିବାଦରେ ଲାଭକରି ପାରିଲେ ସେ ସଂସାରରେ ନିଜକୁ ପରମସୁଖୀ ମନେକରେ ଏବଂ ଯେ ବ୍ୟକ୍ତି ସେତକ ତାର ହସ୍ତଗତ କରିଦେଇ ପାରେ ସେ ତାର ମସ୍ତକର ମଣି, ହୃଦୟର ହାର, ପ୍ରାଣର ଉପାସ୍ୟ ଦେବତା; ନଚେତ୍ ସେ ତାର ଶତ୍ରୁ, ତାର ଦୁସ୍‌ମନ୍, ତାର କଣ୍ଟକ ।

କେଉଁ କୁଚକ୍ରୀ ବଧ୍ୟ ତାର କୁଚକ୍ରଫଳରେ ଏହି ଦୁଷ୍ଟଦାନବ କଲିକତାର ହାଡ଼କଟା ଗଳିରୁ ଫେରି ଆସିଲା, ତା ସେହି ବ୍ୟାଘ୍ର ପୁରୁଷହିଁ ଜାଣେ । କିନ୍ତୁ ତାର ଆବିର୍ଭାବ ଫଳରେ ସୁର ଜୀବନରେ ନୂତନ ଦୁଃଖ ଦୁର୍ଯୋଗର ବହ୍ନି ଜଳିଉଠିଲା ।

---

## ବିଂଶ ପରିଚ୍ଛେଦ

"ଏତେବେଳ ଯାଏଁ କଣ ଚା ଟିକିଏ ହୋଇପାରିଲା ନାହିଁରେ । ଉଃ, ଏଇ କେତୋଟା ଦିନ ଭିତରେ କି ଅଳସେଇ ପେ ପାଲଟି ଯାଇଛୁ ତୁ, ତା ଦେଖି ମୁଁ ଅବାକ୍ ହଉଛି !"

ଏହା କହି ଜୟକୃଷ୍ଣ ଗୃହାଭ୍ୟନ୍ତରକୁ ପ୍ରବେଶ କଲା । ପ୍ରାତଃକୃତ୍ୟ ସାରି ଗରମ ଚା ଟିକିଏ ତାର ନ ହେଲେ ନ ହୁଏ । ପ୍ରତିଦିନ ଏଇ ଉଞ୍ଚାଳ । ସେ ଆସିଲା ଦିନରୁ ଏ ଗୋଟାଏ ନୂତନ ଧନ୍ଦା ଆରମ୍ଭ ହୋଇଛି । ସୁଷମାର ଗୋଟାଏ ଅଧିକା କାମ ବଢ଼ିଛି । ପ୍ରାତଃକାଳରୁ ଉଠି ପ୍ରତିଦିନ ତାକୁ ଚା କରିବାକୁ ହୁଏ । ତା ନ ହେଲେ ଭାଇଭାଇର ମିଜାଜ ଚୁଠାରୁ ଅଧିକ ଗରମ ହୋଇଯାଏ, ସେ ଦକାଦକି କରେ, ଅକାରଣଟାରେ ଅଶାନ୍ତି ସୃଷ୍ଟିକରେ । ଅଜ ଯେ ବେଶୀଗୁଡ଼ାଏ ବେଳ ହୋଇଯାଇଛି, ତା ନୁହେଁ । ଏଇ ଘଣ୍ଟାଏ ହେଲା ରାତି ପାହିଲା । ସୂର୍ଯ୍ୟଦେବତା ଉପରକୁ ଉଠି ନାହାନ୍ତି । ଅନ୍ୟଲୋକଙ୍କ ଘରେ ଏଯାଏଁ କବାଟ ଫିଟି ନାହିଁ । ତଥାପି ଭାଇର ଚା ପାନର ସମୟ ଗଡ଼ିଗଲା ବୋଲି ସେ ଅସ୍ଥିର ହୋଇଉଠିଲା ।

ସୁଷି ଚୁଲ୍ଲୀ ଭିତରକୁ ଜାଳଟା ଠେଲି ଦେଉଁ ଦେଉଁ ଜବାବ ଦେଲା—ହଉଛି, ଟିକିଏ ଥୟ ଧର ଭାଇଭାଇ । ପାଣିଟା ଅଣ୍ଟାଇବ ଫୁଟିଲେ ତ ହବ ?

"ଅରେ ତୋ ପାଣି ଫୁଟୁ ଫୁଟୁ ଏଆଡ଼େ ମଣିଷର ପତ୍ର ପଡ଼େ ପଡ଼ିଯାଉ । ଦ ଘଣ୍ଟାହେଲା ତୋର ପାଣି ଫୁଟୁଛି !"—ଏହା କହି ଜୟକୃଷ୍ଣ ମୁହଁ ଶୁଖାଇବାକୁ ଲାଗିଲା ।

ବାଉଳୀମା ଅଧା ମୁହଁରେ ଅଗଣାଟା ପହଁରୁଥିଲା । ଜୟକୃଷ୍ଣର ଉତ୍ପାତ ଦେଖି ସମ୍ଭାଳି ପାରିଲା ନାହିଁ,—କହି ପକାଇଲା—କି ମିଶିଯିଟା ମ ! ସନ୍ଧ୍ୟାସମ୍ଭାଳିହେବା ପାଡକରେ ନାହିଁ । ଶୀତ ପାହୁଛି କି ନାହିଁ,—ପାହାନ୍ତିଆ କୁଆ ଗୁହ ଖାଇଛି କି ନାହିଁ,—କଣ ନା, ଦାଅ ମୋତେ ଚା । ମୋ ହଂସା ଉଡ଼ିଗଲା । ଏ କି ଅଲକ୍ଷଣ ଢଙ୍ଗ ଲୋ ମା !

ଏହା କହି ସେ କଙ୍କାଳରେ ହାତଦେଇ ଚର୍ ଚର୍ ହୋଇ ପହଁରିବାକୁ ଲାଗିଲା । ଜୟକୃଷ୍ଣ କାନରେ କଥାଗୁଡ଼ାକ ଯାଇ ଠକ୍ ଠକ୍ ଝୋଇ ବାଜିଲା । ମିଞ୍ଜାସ ଆହୁରି କଡ଼ା ହୋଇଉଠିଲା । ସେ ଖଟକାର ଛାଡ଼ିଲା—କଲିକତା ଭାଷାରେ ଶୋଧନ ଝାଡ଼ିଲା—"ଦ୍ୟାଖ୍ ଦ୍ୟାଖ୍ ମୁଷ୍ଟି, ଏଇ ଦକାର ମାଗୀଟାକେ ଦ୍ୟାଖ୍ତ ! ଯତ ବଡ଼ ମୁଖ୍ ନୟ, ତତ ବଡ଼ କଥା ! ତୁଇ ଏ ବାଡ଼ିତେ କେ'ଲା ?"

ବାଉଳୀମା ଏଥର କଙ୍କାଳ ସିଧାକରି ଛିଡ଼ାହେଲା । ସମ୍ମାର୍ଜନୀଟା ପଛପଟର ଭଦରେ ଅଗକୁ ଦର୍ଶେଇ ଦେଇ କହିଲା—ହଇରେ "କେ'ଲା !" ମୁହଁ ସମ୍ଭାଳି କଥାକହ । ନୋହିଲେ ତୋ ବଙ୍ଗାଳପଣିଆ ଛଡ଼ାଇଦେବି । ଜାଣୁନା ? ଏ ଅଉ କେହି ନୁହେଁ ଯେ—ବାଉଳୀମା । ଭଲପାଖରେ ସେ ଯେତିକି ଭଲ, ମନ୍ଦ ପାଖରେ ସେତିକି ମନ୍ଦ । ମୋ ଆଗରେ ବଙ୍ଗଳା ଝାଡ଼ୁଛୁ ! କେତେ ବଙ୍ଗାଳୀଙ୍କୁ କାନରେ ବାନ୍ଧି ଫୋପାଡ଼ି ଦେବି । ଆଚ୍ଛା ରେ ଚା-ଖିଆ ବଙ୍ଗାଳ ! ପଚାରେଁ, କଲିକତା ଗାଁରୁ କି ମାଲ୍ମତାଟା ନେଇ ଆସିଥିଲୁ କହ ନି, ଏତେ ଜୁଲମ୍ ?

ଜୟକୃଷ୍ଣ ଏହା ଶୁଣି ଆହୁରି ରାଗି ଉଠିଲା । ମାରିବାପାଇଁ ହୁମ୍ ହୁମ୍ ହୋଇ ପାଖକୁ ଭିଡ଼ିଗଲା । ବାଉଳୀମା ବି ଛାଡ଼ିବା ପାତ୍ରୀ

ନୁହେଁ । ତୁରନ୍ତ ଲମ୍ବା ଦାଢ଼ିରେ ହାତପକାଇ ଦେଲା । କହିଲା— କଣ ରେ ଅଲଗାଇଯିଆ ଝାଡ଼ୁଖିଆ ମେଘେନ୍ଦ୍ରର ! ମାରିବୁ, ମାରିବୁ ? ଲଗାନ୍ତ ହାତ, ଦେଖେଁ !

ଏହା କହି ପିଠି ସହିତ ସମ୍ମାର୍ଜନୀର ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠା କରି ଦେବାକୁ ଉଦ୍ୟତ ହୋଇଥିଲା; ଏହି ସମୟରେ ପୁଷ୍ପି ଧାଇଁଆସି ଦୁହିଁଙ୍କୁ ଛଡ଼ାଛଡ଼ି କରିଦେଲା । କହିଲା ଛି ଛି, ଏ ଗୋଟାଏ କି ଅମର୍ଯ୍ୟାଦାର କଥା ମ ! ଲୋକେ ଶୁଣିଲେ କଣ କହିବେ ? ମୋର ଟିକାଏ ଉଠିବାକୁ ଡେରି ହୋଇଗଲା । ନ ହେଲେ କି ଏତେବେଳଯାଏଁ ଗୃହଟା ଭଅଁର ଘର ନ ଥାନ୍ତା । ଯା ଯା ବାଉଳୀମା, ତୋ କାମରେ ଯା । ଅସ୍, ଜଇଭାଇ ଗୃହ ଥଣ୍ଡା ହୋଇଯିବ ।

ଏହା କହି ସେ ବାଉଳୀମାକୁ ଠେଲି ଅନ୍ୟଆଡ଼କୁ ବାହାର କରିଦେଲା । ବାଉଳୀମା ଗର୍ ଗର୍ ହୋଇ କହିବାକୁ ଲାଗିଲା— 'ତମର ସେଇ ସର୍ବସହଣୀପଣ ଗଲା ନାହିଁ ସାନ୍ତୀ, ସେଥିପାଇଁତ ଏତେ ଦୁଃଖ ।' ପୁଷ୍ପି ତାକୁ ତୁନି 'ତୁନି ବୋଧ ଦେଇ କହିଲା—ହଉ ଲୋ ବାଉଳୀମା କଣ କରିବା, ମୋ ମୁହଁକୁ ଅନେଇଁ ସବୁ ସହି ଯା ।

ବାସ୍ତବିକ ବାଉଳୀମା ପୁଷ୍ପିର ମୁହଁକୁ ଅନେଇଁ ସବୁ ସହିପାରେ । ସେ ଆଉ ଉଚ୍ଚବାଚ୍ୟ ନ କରି ନିଜ ଧନ୍ଦାରେ ଲାଗିଗଲା । ଇତ୍ୟବସରରେ ଜୟକୃଷ୍ଣ ଯାଇ ଗୋଟାଏ ଘରର ନିର୍ଜ୍ଜନ କୋଣରେ ଠିଆହୋଇ ଦାଢ଼ିଟା ଅଉଁସୁ ଅଉଁସୁ ମନେ ମନେ କହିଲା—'ଉଃ, ଚଣ୍ଡାଳୁଣୀଟା କି ଝିଙ୍କାଟା ଦେଲା, ହୁ ହୁ ହୋଇ ଜଳୁଛି !' ବାସ୍ତବରେ ବାଉଳୀମା ଅଲ୍ଲାକର ଝିଙ୍କାଟାଏ ଦେଇଥିଲା । ସେହିପରି ଆଉ ଥରେ ଝିଙ୍କି ଦେଇଥିଲେ ଜୟକୃଷ୍ଣର ଦାଢ଼ି ନିବାଡ଼ ହୋଇଯାଇଥାନ୍ତା । ଯାହାହେଉ ଜୟକୃଷ୍ଣର ଚେତନା ହେଲା । ସେ ବୁଝି ପାରିଲା— ବାଉଳୀମାଟା ସିଧା ଜନ୍ତୁ ନୁହେଁ । ତା କଥାଉପରେ କଥା କହିବା

ବୁଦ୍ଧିଆଟୋକର କାମ ନୁହେଁ । ଏହିସମୟରେ ସୁଷି ଆସି ଡାକିଲା— ଆସ ଜଇଭାଇ, ତମେ ଏଇଠି ଅଛ, ମୁଁ କେତେ ଖୋଜିଲିଣି । ଗୁ-ଟା ପରା ଥଣ୍ଡା ହୋଇଯାଉଛି !

ଜଇ ଛଳନାପୂର୍ଣ୍ଣ ଅଭିମାନ କରି କହିଲା—ନା, ସୁଷି, ଆଉ କଣ ଖାଇବି, ଆଉ । ଗୁ ଖାଇବାର ବଡ଼ ବାପ ହୋଇଯାଇଛି ।

ସୁଷି ଅନୁନୟକରି କହିଲା—ଛି, ଜଇଭାଇ, ଏମିତି ଅବୁଝା ହେଲେ କି ଚଳେ ? ମୋ ଉପରେ ରାଗିବାଟା କଣ ଉଚିତ ? ଆସ, ଖାଇବ ଆସ ।

ଏହା କହି ସେ ଜୟକୃଷ୍ଣଙ୍କର ହାତଧରି ଟାଣି ନେଇଗଲା । ଜୟକୃଷ୍ଣର ମନଟା ମଧ୍ୟ ଥିଲା, ସୁତରାଂ ସେ ପିଠା ଗିଳିବାକୁ ଲାଗିଲା ।

ଗରମ ଗୁ ଉଦରସ୍ଥ କରି ଜୟକୃଷ୍ଣ ବୁଲିବାକୁ ବାହାରିଗଲା । ସେହିଦିନ ଜୟକୃଷ୍ଣର ଅଫିମ ଅଣିବା ପାଳି । ସୁଷି ଦୁଇଦିନକୁ ଟଙ୍କାଟିଏ ଦିଏ ଏବଂ ସେହି ଟଙ୍କାରେ ଅଫିମ କିଣାହୋଇ ଆସେ । ଆଜି ଅଫିମଲାଗି ଦେବାକୁ ଯାଇ ସୁଷି ଦେଖିଲା—ପାଣ୍ଠି ପ୍ରାୟ ଶେଷ ଉପରେ । ଆଉ କେତୋଟାଦିନ ଗଲେ ସବୁ ଝାଡ଼ଝୁଡ଼ ହୋଇଯିବ । ଗୋଟାଏ କାଣିକଉଡ଼ି ବି ରହିବ ନାହିଁ । ତେବେ ଉପାୟ କଣ ? ତାର ଚକା ବୁଡ଼ିଗଲା । ଏତେଦିନେ ତା ମନରେ ଦୁଶ୍ଚିନ୍ତା ପ୍ରବେଶକଲା । ଚତୁର୍ଦ୍ଦିଗ ତାକୁ ଶୂନ୍ୟ ଦେଖାଗଲା । ଭବିଷ୍ୟତଟା ଘୋର ବିଭୀଷିକାମୟ ହୋଇଉଠିଲା । ଅଫିମପାଇଁ ଟଙ୍କାଟିଏ ଜୟକୃଷ୍ଣର ହାତକୁ ବଢାଇ ଦେଇ, ସେ ଆସି ପିଣ୍ଡାଟିରେ କାନ୍ଥକୁ ଆଉଜି ବସିପଡ଼ିଲା । ପଦ୍ମଫୁଲପରି ସୁନ୍ଦର ମୁହଁଟି କରତଳରେ ନ୍ୟସ୍ତକରି ସେ ଭାବିବାକୁ ଲାଗିଲା—ଅଦୂର ଭବିଷ୍ୟତର କଥା । ବାଉଳିମା ଯୋଗୀସି ଭୁଠକୁ ଯାଇଥିଲା । ଫେରିଆସି ସୁଷମାର ସେହି ଚିନ୍ତାକୁଳ ଅବସ୍ଥା ଲକ୍ଷ୍ୟକଲା । ସୁଷିର ସୁପ୍ରସନ୍ନ ମୁଖମଣ୍ଡଳଟି ଯେପରି କଳା ବଉଦରେ

ଅଚ୍ଛନ୍ନ ହୋଇ ରହିଥିଲା । ବାଉଳୀମା ପାଖକୁ ଆସି ଡାକିଲା— ସୁଷି !

ସୁଷମାର ଧ୍ୟାନ ଭାଙ୍ଗିଗଲା । ସେ ବିଷାଦକ୍ଲିଷ୍ଟକାନ୍ତ ମୁଖ ମଣ୍ଡଳରେ ପ୍ରସନ୍ନତାର ଦୀପ୍ତି ଫୁଟାଇବାକୁ ଚେଷ୍ଟାକଲା, ମାତ୍ର ଧରା ପଡ଼ିଗଲା । ବାଉଳୀମା କହିଲା—ସୁଷି ! ଏ କଣ ?

ସୁଷି ଉତ୍ତରଦେଲା—ନା, କିଛି ନା ।

ବାଉଳୀମା ଧରିବସିଲା—'ନା' ବୋଲି କହିଲେ କି ହୁଏ ମା ? ମୁହଁଖଣ୍ଡି ଯେ ଏକାବେଳକେ କଳାକାଠ ପଡ଼ି ଯାଉଛି । କଣ ହେଲା ସୁଷି !

ବାଉଳୀମା ଜିଦ୍ କରିବାକୁ ଲାଗିଲା । ଠିକ୍ ଗର୍ଭଧାରିଣୀଟି ପରି କୋଳକୁ ଟାଣିନେଇ କହିଲା ମା ମୋର, ସୁନାର ଧାରଟି ମୋର ! କି ଦୁଃଖ ରେ ତୋର ?

ସୁଷି କୋଳରେ ମୁହଁଟି ଗୁଞ୍ଜି କହିଲା—ବାଉଳୀମା, ଗୋପାଳ ବାବୁଙ୍କର ଛୋଟ ଛୋଟ ଝିଅ ଦୁଇଟିଙ୍କୁ ପଢାଇବାପାଇଁ ଗୋଟିଏ ମାଷ୍ଟ୍ରାଣି ଦରକାର ବୋଲି ଶୁଣିଥିଲି । ତାଙ୍କ ଘରକୁ ଟିକିଏ ଯାଇ ବୁଝିଆସି ପାରିବୁ ?

ବାଉଳୀମା ଏଥର ସୁଷିର ମନ ଦୁଃଖର କାରଣ ଦେଖି ଅନୁମାନ କରିନେଲା । ଭାବିଲା—ଯେଉଁ କେତୋଟି ଟଙ୍କା ! ଅଉ କେତେଦିନ ସେଥିରେ ଚଳନ୍ତା ? ବସି ଖାଇଲେ ନଈବାଲି ସରେ । ତା ଉପରେ ପୁଣି ସେହି ଅକର୍ମାଟା ଆସି କେଉଁଠୁ ଜୁଟିଲା । ବାହାରେ ମାଲ ଥୁଆହୋଇଥିଲା ପରି ବସି ବସି ଚଳୁ କରୁଛି । ସେଥିରେ ପୁଣି କେତେ ଜୁଲମ୍ ! ଗୁ ଦିଅ, ଅଫିମ ଦିଅ, ଯା ଦିଅ, ତା ଦିଅ, ନ ହେଲେ ଝଗଡ଼ା । ସତେ ଯେପରି ଚଉଦପୁରୁଷର ଗୁରୁ ଗୋସେଇଁ । ପୁଣି ଅଇଲା ତ ଅଇଲା ଏବେ ଯା । ନା ତା ବି ନୁହେଁ । ଟୋଡ଼ ଉଠୁନାହିଁ ।

ବାଉଳିମା ଏହା ଭାବି ଭାବି ଘାରିଲେ । ମନେ ମନେ କହିଲେ—ସୁଷି ଯଦି ଥରେ ଇସାରା ଦେଇ ଦିଅନ୍ତା, କୁଢ଼େ ଯୋଗିନୀଖିଆଙ୍କୁ ପହଁରା ମୁଣ୍ଡରେ ଦଂପାହାର ଦେଇ ଅଜ ବଦା କରିଦିଅନ୍ତି । ସେଇଠା ନ ଥିଲେ, ଦଂଠା ପେଟ ପୋଷିବା ବାଉଳାମା ପଥରେ ବାଳିପଡ଼ନ୍ତା ନାହିଁ ।

ଏହାପରେ ମନେ ମନେ ଭାବି ସେ ସୁଷମାକୁ କହିଲେ—ଶୁଣି ! କେଉଁ ଗୋପାଳବାବୁ ? ସେଇ ପର ଗାଁର ଜମିଦାରବାବୁ ? ଯା ନାଁ ଧରିଲେ ଭାତ ମିଳେ ନାହିଁ ? ରାମ୍, ରାମ୍, ଲୋକେ ପୁଣି ତା ମୁହଁ ଗୁହାଁନ୍ତି ! ଆଉ ତାର ମାଷ୍ଟରଣୀ ଦରକାର ଥିଲେ ବି କଣ ହେଲା ?

ସୁଷି ଜବାବ୍ ଦେଲା—ଯଦି ଦୟାଙ୍କର ପିଲା ଦିଓଟି ପଢ଼େଇବାର ଭାର ମୋ ଉପରେ—

ବାଉଳିମା ବାଧାଦେଇ କହିଲେ—ଥାଉ, ଥାଉ । ଆଉ କହିବାର ଦରକାର ନାହିଁ । ତାଙ୍କ ଘରର ଯେଉଁ ଦୟା ମାୟା ତ ! ମରିଯାଉଥିଲେ ଲୋକର ତୁଣ୍ଡରେ ପାଣି ଟୋପାଏ ଦେବେ ନାହିଁ । ତାଙ୍କ ଘର କଥା ମୁଁ ଜାଣେ ନାହିଁ ନା ? ପଇସା ଥାଇ କଣ ହେବ ? କାହିଁ ଲାଗିଯାଉ ସେ ପଇସାରେ । ତା ଖତଗଦାକୁ ବି ଯୋଗ୍ୟ ନୁହେଁ । ସେଇଠିକି ଯାଇ ପଢ଼େଇବୁ ବୋଲି ବାହାରିଛୁ ପରା ଶୁଣି ! ଛି କର ! ମଣିଷ ତାଙ୍କ ଦୁଆର ମାଡ଼ନ୍ତି ? ପୁଣି ତାଙ୍କ ଘର ଯାଇ କଉଁଠି,—ଏ ଗାଁ ଠିଆଲେ ଯାଉ ସେ ଘାଁ । ଏତେ ବାଟ ପାଠ ପଢ଼େଇବାକୁ ଯିବ ? କି ? ପେଟକୁ ଚାର ଖୁଆଇଦେଲେ କଣ ହେଲା କି ? ଦେଖାଯାଉ କେଉଁଠା ପାଣି କେଉଁଠିକି ଯାଉଛି । ଏଡେ 'ବେସ୍ତ' କାହିଁକି ? ଯୋଗିନୀଖିଆଟା ଆଜି ଗଲେ, କାଲି ମରିଲେ କଥାଟା ବଳିଯିବ ନାହିଁ । ତମେ ଏମିତି କାହିଁ ହେଉଛ ? କମରରେ ଜୋର ଥିଲେ ବାଉଳିମା ଏ ସବୁ କଥାକୁ ଚିନ୍ତା କରେ ନାହିଁ ଶୁଣି ! ଗୁଲି,

ଗୁଲ, ଲୁଗାଟା ପାଲଟି ଦିଅ, ମୁଁ ପଖାଳ ପକାଏଁ । ଏଇକ୍ଷଣି ଘଣ୍ଟି ମାଡ଼ିଆସିବ ।

ସୁଷି ଧୀରେ ଧୀରେ ଉଠି ଠିଆ ହେଲା । କହିଲା—ନା, ବାଉଳମା, ମୁଁ ପୋଖରୀ ତୋଠକୁ ଯାଇ ପେଟଟା ପାଣିରେ ବୁଡ଼ାଇଦେଇ ଆସେ ।

ଏହାପରେ ଭିତରେ ଆଉ କିଛିଦିନ କଟିଗଲା । ଦିନେ ବାଉଳମା ସୁଷିକୁ ବୁଝେଇ କହିଲା—ଦେଖ ସୁଣି ! ଆମର ଜ ଠ—ଠା ଠିକ୍ । ଆଉ କେତେ କାଳ ସେ ମିଣିପଟାକୁ ଦେଖେଇ ଦେଖେଇ ପୋଷୁଥିବ ? ତାକୁ ଏବେ ସଫା କହିଦେଲେ ହୁଅନ୍ତା ନାହିଁ ଯେ—ବାବା, ଏବେ ତୋର ବାସ୍ତା ତୁ ଦେଖ୍ । ଏତେକାଳ ଚଳେଇ ଆସିଲୁଁ, ଆଉ ପାରିବୁ ନାହିଁ ।

ସୁଷମା ଉତ୍ତର ଦେଲା—ଛି ଛି, ଏମିତ ଗୋଟାଏ କଥା କି କୁହାଯାଏ ବାଉଳମା ?

ବାଉଳମା କହିଲା—ହଁ ନୂର୍ କୁହାଯାଏ । ତମେ ନ କୁହ, ମୁଁ କହିବି । ନ କହି ତ ଆଉ ଉପାୟ ନାହିଁ ମା ।

ଏହା କହି ସେ ଅନୁମତ ପ୍ରତୀକ୍ଷାରେ ସୁଷିର ମୁହଁକୁ ଚାହିଁ ରହିଲା । ସୁଷି ଅନେକ ଭାବି ଭାବି କହିଲା—ନା ବାଉଳମା, ତାଇଭାଇ ମନରେ କଷ୍ଟ ହେବ ।

ବାଉଳମା ଚିଡ଼ଚିଡ଼ି କହିଲା—ଦୂର କର । ଯା ମନରେ କଷ୍ଟ ହୁଏ, ସେ ଅନ୍ୟର କଷ୍ଟ ନ ବୁଝେ କାହିଁକି ? ଯେତେବେଳେ କାଣ୍ଟି ଉପାସଟି ରହିବାକୁ ହେବ ସେତେବେଳେ ? ଅବସ୍ଥା ବୁଝି ତ ପୁଣି ଚାମ କରିବାକୁ ହୁଏ ?

ଏହା କହି ସେ ପୁନର୍ବାର ସୁଷିର ଅନୁମତକୁ ଚାହିଁ ରହିଲା । ସୁଷି ନିଃଶ୍ୱାସ ପକାଇ କହିଲା—ଯାହା ଭଲ ବୁଝୁଛୁ କର, ବାଉଳମା । ତେବେ ନିତାନ୍ତ କଡ଼ାକଥା ଯେପରି—

ବାଉଳମା ଉଦ୍ଦେଶ୍ୟଟା ବୁଝିପାରି ତୁରନ୍ତ କହି ଉଠିଲେ—ନା ମା, କଣ୍ଠ କଥା କାହିଁକି କହିବାକୁ ଯିବ ? ଏଥିରେ ସଙ୍କୋଚଟାର ଦରକାର କଣ ?

ସେଦିନ ସେ ଅନ୍ୟ ସମୟରେ ଜୟକୃଷ୍ଣଙ୍କୁ ଡାକି କହିଲେ—ଆହେ ଜଇଭାଇ, ଗୋଟାଏ କଥା କହିବି, ମନରେ କିଛି ଭାବିବ ନାହିଁ ତ ?

ଜୟକୃଷ୍ଣ ସନ୍ଦେହ ମନରେ ପଚାରିଲେ—କଣ ଏମିତି ଭାବନାର କଥାଟା ବାଉଳମା ?

ବାଉଳମା ଜବାବ ଦେଲେ—ହଁ ଭାଇ, ଭାବନାର କଥା ନୁହେଁ ତ ଆଉ କଣ ? ତମେ ବି ତ ଦେଖିପାରୁଥିବ ! ଏ କେତେ ଦିନ ହେଲା ପେଟଁ ହଉଚି ଚାହିଁବାକୁ ପଡୁନ୍ତି ତା ଯେ ଦିନରାତି କରୁଛନ୍ତି ସେ ଜାଣେ । ଦେହଟା ବଡ଼ ଦୁର୍ବଳ ହୋଇ ଗଲାଣି, ବସି ବସି ଖାଲି କରୁଛନ୍ତି । ହାତରେ ପଇସା ବୋଲି ଯାହା ଥିଲା, ସବୁ ଶେଷ । ଏପରି ଆକାଶକୁ ଅନାଇ ରହିବା ଛଡ଼ା ଆଉ ରାସ୍ତା କଣ ଅଛି ? କଥାଟା, ଭାଇ, ତମରି ଭଲପାଇଁ କହୁଛି । ଆମେ ଦରିଦ୍ର ମାଇପିଲୋକ ଉପାସ ରହିଲେ ଚଳିଯିବ କପାଳକୁ ଆଦର କାଳ କାଟିବୁଁ । ତୁମେ ମର୍ଦ୍ଦପୁଅ, ହାତ ହଲେଇ ରୋଜଗାର କରିବା ଲୋକ । ତୁମେ କାହିଁକି ଆମପାଖରେ ପଡ଼ି ଘାଣ୍ଟି ହେବ କହିଲ ।

ଜୟକୃଷ୍ଣ ବୁଝିପାରିଲେ ଯେ, ତାଙ୍କୁହିଁ ଘରୁ ବାହାର କରିବା ପାଇଁ ଏତେ ଫିକର । ମନେ ମନେ ବଙ୍ଗଳାରେ କହିଲେ—'ମାଗୀ କମ୍ ନୟ ତ !' ପ୍ରକାଶ୍ୟରେ ଉତ୍ତର ଦେଲେ—କିଲେ ବାଉଳମା, କଣ ହେଲା ଯେ ଏତେ ବ୍ୟସ୍ତ ହୋଇପଡ଼ୁଛ ?

ବାଉଳମା କହିଲେ—ମିଛଟାରେ କି ଆଉ ବ୍ୟସ୍ତ ହେଉଛି ଭାଇ ! ଦିନ ଦୁଇ ଗୁଡ଼ାଏ ପଟର ଯେ କଣ କରିବାକୁ ହେବ, ତା

ଭବ ଗୃହବଗ ଅନ୍ଧାର ଦେଖାଯାଉଛୁ । ଏଇ କଥା ଭାବ ଭାବ ବାଳୀର ଅଧେ ଦହ ହଉଗଲାଣି । ସେ ଦନ ପବ କହୁଁ କହୁଁ କନ୍ଧ ପଡେଇଲା—ନାଁ, ବାଉଳମା, ଗଳାରେ ଦଉଡ଼ି ଦେଇ ପଛେ ମରିଯିବି, ଏମିତ ହତ୍ୟା ଜୀବନ ରଖି ପାରିବ ନାହିଁ ।

ଜମ୍ବୁକ୍କଷ୍ଟ କହଲା—ଏଁ ଏଁ, ଏ କି କଥା ! ଆଚ୍ଛା, ବାଉଳମା ସୁକ୍ତି ହାତରେ କଣ ପଇସା ନାହିଁ ? ସମସ୍ତେ ଯେ କହୁଛନ୍ତ— ଗୋଟାଏ ଭାବ ବଡଲୋକ ତାଙ୍କୁ ବହୁତ ଟଙ୍କା ଦଉଚ,—ଯୁକ୍ତି ଉପରେ ତାର ଜୀବ ସୁନାଜୀର, ଏସବୁ କଥା କଣ ସତ ନୁହେଁ ?

ବାଉଲାମା କହଲ—ହାୟରେ ହାୟ ! ଲୋକେ କଣ ନ କୁହନ୍ତ ! କୁଆ ଉଡ଼ିଗଲେ, କୁଆ ଉଡ଼ିଗଲା । ଏଇତ ଏ ସଂସାରର ଲକ୍ଷଣ । ତେବେ ଭାଇ, କଥାଟା ଏତ୍ୟା ଯେଉ ଯେ ଗଲାବର୍ଷ ନଈ ବଢ଼ିକି ମାଡ଼ିଆସି ସବୁ ଛାରଖାର କରି ଦେଇଗଲା, ସେତିକିବେଳେ ଲୋକଙ୍କୁ ଖାଇବାକୁ ବାଣ୍ଟିବାପାଇଁ ବାବୁ ପଞ୍ଚାଏ ଆସିଥିଲେ, ଠିକ୍ ସେତିକିବେଳେ ସଇଦ ଅପାର କାଳ ହୋଇଗଲା । ତାଙ୍କ ଭିତରୁ ଗୋଟିଏ ବାବୁ—ଭାରି ଦୟାବାନ୍, ବାଳୀର ଦୁଃଖ ଦୁର୍ଦ୍ଦଶା ଦେଖି ସେତେବେଳେ ସାହା ଭରସା ହୋଇଥିଲା । ବାବୁଟି କୁଦ୍ ଉପକାର କରିଛନ୍ତି । ବଡ଼ଲୋକ ଘର ପୁଅ, ତାର କେଉଁ କଥାଜ ଅଭାବ ? ଦେଖିଲା ଯେତେବେଳେ ଅସହାୟଟି ମଝି ଦରିଆରେ ଭାସି ଯାଉଛୁ ସେତେବେଳେ ପାଖରେ ଛିଡ଼ାହୋଇ ହାତ ବଢ଼େଇ ଦେଇଥିଲା । ତେବେ ସେଇ କଥାଟକୁ ନେଇ ସମସ୍ତଙ୍କର ଆଜ ଚହଲ ପଡ଼ିଛି । ହାୟରେ ଗାଁ ଗଣ୍ଡକ । ଭଲଟିଏ ପାଇଲେ ତାକୁ ଡାଳ କରି ଥୋଇବେ । କି ? ସେ ତ ପରପୁଅ, ଆପଣାର କିଛିତ ନୁହେଁ ଯେ କାଳ କାଳକୁ ଭରସା ହୋଇଥିବ । କହଲା—"ପର ପୁଅ, ସାର ଚଢ଼େଇ, ଉଡ଼ିଗଲେ ଯାଏ, ଅଙ୍କା ହୋଇ ମନୁଅ ମୋ ଗୃହେଁ

ରହିଥାଏ ।" ସବୁ ଧନକୁ ଯେ ସାହା ହୋଇଥିବ ବୋଲି କିଏ ଲେଖିଦେଇଛନ୍ତି ? ନା, ତା ଉପରେ କାହାର ଜୋର ଜୁଲମ ଯାଏ ? ସଂସାରରେ ଘର କରିଥିଲେ ଆପଣା କପାଳ ଆପଣାର । ନା, ଭଇଭାଇ ମୁଁ ମିଛ କହୁନି ।

ଜମ୍ବୁକୃଷ୍ଣ କହିଲ—ମିଛ କାହିଁକି ହେବ ଭଉଣୀ ! ତେବେ କଣ କି କଥାଟା ଭଲ ହେଲା ନାହିଁ । ଯଦି ସେମିତି ଗୋଟାଏ ଭାବ ପ୍ରୀତି ଲାଗିଥିଲା, ତେବେ ସେଟା ଭାଙ୍ଗିଦେବା କଅଁ ଭଦ୍ରଲୋକର କାମ । ଅଭିଆଡ଼ା ଝିଅଟା ଏହିଲାଗେ କାନ୍ଦା ଦୁଆରେ ଯାଇ ଛିଡ଼ା ହେବ ?

ଜମ୍ବୁକୃଷ୍ଣର କଥାର ଗତ କେଉଁଆଡ଼େ ଯାଉଛି, ତା ବୁଝିପାରି ବାଉଳମା ଚମକି ଉଠିଲା । ଆଉ ଅଧିକ ସେ ବସମୃ ଚର୍ଚ୍ଚା କରିବା ବଚନ୍ଦ୍ରଜନକ ମନେକରି ସେ ଧାଁରେଇ ଦେଇ କହିଲା—ସେଥିପାଗି ମୁଁ କହୁଛି, ଭଇଭାଇ, ତମର ଆଜ ଏଠି ପଡ଼ି ମଇବାଣ ହେବାଟା ଶୋଭାପାଏ ନାହିଁ, ଦେଲ ଆଉଁ ଥାଉଁ ତାର ଫନାଗ କରିବା ଦରକାର ।

କାହୁ—"ତୁ ଯେତେ ମାଠିବୁ ମାଠ, ମୁଁ ସେଇ ଦରଯୋଡ଼ା କାର ।" ଜମ୍ବୁକୃଷ୍ଣ ଏ କଥାରେ ଭୁଲିବାର ପାତ୍ର ନୁହେଁ । ସେ କିପରେ ହାତ ମାରିଦେଇ କହିଲା—ଅହୁପର ବାଉଳମା, ଅମୃଧର, ମୁଁ ସବୁ ଠିକ୍ କରି ଦେଉଛି ।

ଏହା କହି ସେ ଘରୁ ବାହାରି ପଡ଼ିଲା ।

ପରଦିନ ସେ କିବେଳାରେ ସୁଷମା ନିକଟକୁ ଯାଇ କହିଲା —ସୁଷମା, ଗୋଟାଏ ଭଲ ଉପାୟ ଭାବି ଭାବି ମୁଁ ସ୍ଥିର କରିଛି । ତୋତେ କେମିତି ଲାଗୁଛି କହିଲୁ ?

ସୁଷମା ପଚାରିଲା—କି ଉପାୟ ଭଇଭାଇ ?

ଜୟଚନ୍ଦ୍ର କହିଲ—ଗୃଲ, ମୋ ସାଙ୍ଗରେ କଲକତା ଗୃଲ । ଚିନ୍ତା କରିବାର କିଛି କାରଣ ନାହିଁ । ବୁଝିଲୁ ସୁକି, ସେ ଭଳି ଜାଗାରେ ପେଟ ଅପୋଷା ରହେ ନାହିଁ । କପାଳରେ ଥିଲେ ତୋପରି ଗୋଟାଏ ଲୋକ ସେଠି ଧନ ଦଉଲତରେ ଲଷପତି ହୋଇ ବସିଯିବା ବିଚିତ୍ର ନୁହେଁ । ତେଡେ ବଡ଼ ବଡ଼ ଲୋକ, ରଜା ମହାରଜାଙ୍କ ରହିଛନ୍ତି ସବୁ ! କଣଜାଣି ସୁନଜର ପଡ଼ିଗଲେହିଁ ହେଲା ।

କଳାଚନ୍ଦ୍ର ଜୟଚନ୍ଦ୍ରଙ୍କୁ ଖୋଲପଣି ଧରିଥିଲେ ।

ମାତ୍ର ଜୟଚନ୍ଦ୍ରର କଥାଟା ଶୁଣି, ସୁକିର ଅନ୍ତରାତ୍ମା ଘୃଣାରେ ଭିତରେ ଜର୍ଜର ହୋଇ ଉଠିଲା । ଛି ଛି ଛି, କି କଦର୍ଯ୍ୟ ପ୍ରସ୍ତାବ ! ପୁଣି ଯେ ସୁକିର ଭାଇବୋଲି ନିଜର ପରିଚୟ ଦିଏ ! ଏଭଳି କଥା ଶୁଣିବାପୂର୍ବରୁ ସେ ମର୍ତ୍ତ୍ୟ ମାଟିରେ ମିଶି ନ ଗଲା କାହିଁକି ? ଆଜ ସୁକି ବା କାହିଁକି ବଞ୍ଚିରହିଲା ଏମିତା ଶୁଣିବାପାଇଁ ? ଛି ଛି ଛି ! ସୁକି ଆଉ ସେଠି ଠିଆ ହୋଇପାରିଲା ନାହିଁ । କଣ କହି ପଳେଇବ ତାକୁ ବୁଝିବାକୁ ଦେଖାଗଲା ନାହିଁ । ଏହିପରି ସମୟରେ ବାଉଳୀମା ଆସି ଡାକ ଦେଲା—ସଣି ! କୁଆଡ଼େ ଗଲ ?

ସୁକି ନମ୍ରାର ନାଇଁ କରି "ଏଇ ଯାଉଛି" ବୋଲି କହି, ଏକ ନିଃଶ୍ୱାସରେ ପଳେଇଗଲା ।

---

# ଏକବିଂଶ ପରିଚ୍ଛେଦ

"କୁଆଡ଼େ ଚଲ ହେ ବାବା ଜୟଚନ୍ଦ୍ର ?"—ବୋଲି ବାହାରୁ ଡାକ ଦେଇ ଦେଇ, ଶୀରଟୋଲିକାଠର ବାଡ଼ିଖଣ୍ଡ ଭୂଇଁରେ ଠକ୍ ଠକ୍ କରି କରି ଘରଭିତରକୁ ପଶିଆସିଲେ ବୁଢ଼ା ଶମ୍ଭୁନାଥ ଶତପଥୀ । ଶମ୍ଭୁନାଥଙ୍କ ସମବୟସୀ ଲୋକ ଆଖ ପାଖ ପାଞ୍ଚଖଣ୍ଡିଗାଁରେ

କୁହ କାହିଁ ଅଛନ୍ତି,—ବସ୍ତୁଏ ସନ୍ତାନର ସେ ଧାରା । ଜାତିରେ ବ୍ରାହ୍ମଣ, ମୋଟା ଅନେକ ରକମ । ଚଣ୍ଡୀପାଠଠାରୁ ଆରମ୍ଭକରି ହୁଙ୍କା ବନ୍ଦୀ ପର୍ଯ୍ୟନ୍ତ ଶମ୍ଭୁନାଥ ସବୁ କରିପାରନ୍ତି । ନାନା ମନ୍ତ୍ର ତନ୍ତ୍ର ମଧ୍ୟ ଜାଣେ ବୋଲି ଅନେକ ଲୋକଙ୍କର ମତ । ଯଥା ଶିଙ୍ଗ ଫୁଙ୍କିଦେବା, ସାପବିଷ ଝାଡ଼ିଦେବା, ପେଟରେ ଥାଳିଲାଗିଲେ ଦୋଦଣ୍ଡ ବ୍ୟନ୍ତ୍ରର ବଶ ଲେଖେ ଗମ୍ଭୀରରେ ମଣିଷ ତା ପ୍ରକାଶ କରିଦେବା, ଏକ ଦୁହାଁଳୀ ଗାଈର ଦୁଧ ହୁଅଟେନଇ ଅନ୍ୟଗାଈର ପହ୍ଲାରେ ଭର୍ତ୍ତି କରିଦେବା, ଯୁବତୀ ଅର୍ଦ୍ଧଯୁବତୀ ବନ୍ଧ୍ୟାନାରୀଙ୍କୁ ନେଇ କଳିକତାପର ମହା ମହା ନଗରୀମାନଙ୍କୁ ଚାଲାଣ କରିବା ଇତ୍ୟାଦି ଇତ୍ୟାଦି ଅନେକ ସତ୍କର୍ମ କରି ମୁଣ୍ଡର ସମନ୍ତବାଳ ପାଚି ବହୁକାଳରୁ ଝୋଟ ହେଲାଣି । ଶମ୍ଭୁନାଥ ବିବାହେଚ୍ଛୁ ବିପତ୍ନୀକ ବୋହିଲଦେବ ଭେଟହେଲଦେଇ-ମାନଙ୍କର ପରମ ଉପକାର ସ୍ଥଳ । ଯେହ୍ନି ଏକଅଙ୍ଗ ବିହଙ୍ଗମନ୍ତ୍ରୁଡ଼ିକପାଇଁ କୋଇଁଠାରୁ କେତେଦାନରେ ମୀଡ଼ମଣ୍ଡନା ବିହଙ୍ଗମାଟିଏ ମିଳିବ, ତାର ପୁଙ୍ଖାନୁପୁଙ୍ଖ ତତ୍ତ୍ୱ ରଖନ୍ତି ଏହି ବିପ୍ରବର ଶମ୍ଭୁନାଥ । ଅଧିକ ବୟସର ଲୋକ ପତ୍ନୀ ବିୟୋଗରେ ପଡ଼ି ପୁନର୍ବାର ଗୃହସଂସାରଟି ଗଢ଼ିବାପାଇଁ ଆକୁଳହୋଇ ଧରିବସନ୍ତି ତାଙ୍କୁ । ସେଥିପାଇଁ କୃତଜ୍ଞ ପ୍ରାଣରେ ହାତରେ ଶହେ ପଚାଶ ଗୁଞ୍ଜିଦେବାକୁ ବି କୁଣ୍ଠା ବୋଧକରନ୍ତି ନାହିଁ । ଏଥିରୁ ଶତପଥୀଙ୍କର ଦୁ'ପଇସା ଭଲରକମ ହାତପେଠ ହୁଏ । ହୁଷ୍ଟଲୋକେ ବାଲକଥା କହିଲେ ସୁଦ୍ଧା ତାକୁ ସେ ଭଲମାନେ ଭ୍ରୂକ୍ଷେପ କରନ୍ତି ନାହିଁ । ହସି ଉଡ଼ାଇଦିଅନ୍ତି । ବୁଦ୍ଧିବିହୀନ ପରଶ୍ରୀକାତର ଲୋକଙ୍କର ଏହା ସ୍ୱଭାବ ଦୋଷ ବୋଲି ମନେ କରି ସେ ତାକୁ ପଛକୁ ପକାଇଦେଇ ସଂସାର ପଥରେ ବୀରବିକ୍ରମରେ ଅଗ୍ରସର ହୁଅନ୍ତି ।

ଶମ୍ଭୁନାଥଙ୍କ ଡାକଟା ଶୁଣି ଜୟକୃଷ୍ଣ ଘରୁ ବାହାରିଆସି,— "ଓହୋ ଶମ୍ଭୁ କକା ଯେ" ବୋଲି କହି ଓଳିଏଟାଏ ହେଲ । ତା ପରେ କୌତୂହଳୀ ହୋଇ ପଚାରିଲ—ଏ ଅବେଳୁ ଆଜି କେମିତି ପାଦ ପଡ଼ିଲ କି କକା ?

ଶମ୍ଭୁନାଥ ଜବାବ୍ ଦେଲେ—ଅନେକ ଦିନରୁ ଆସି ନ ଥିଲି ପୁଅ, ଟିକିଏ ବୁଲି ଆସିଲି । ଭାବିଲି—ବହୁତ ଦିନ ପରେ ବାବା ଜୟକୃଷ୍ଣ ଘରକୁ ଫେରିଛନ୍ତି,—ଟିକିଏ ଦେଖାଟା କରି ଦ'ଟା କଥାଭାଷା ହୋଇଅସେଁ । ଦିନ ଦଶପରେ ତୁଏ ତ ତମେ ଚାଲିଯିବ, ଟିକିଏ ସାକ୍ଷାତ ହେବା । ପୁଣି ଆମର ବା କଣ ଅଉ ଦିନକାଳ ଅଛିଟି ! ପାକଳ ତାଳ, ଅଜ ଅଛୁଁ କାଲି ଖସିଗଲେ ଗଲି । ଏଣୁ ସବୁ କଥାକୁ ଲକ୍ଷ୍ୟ କର,—ବୁଝିଲ ନା ବାପା !—ଆରେ ! ଏ ମୋର ମା ସୁଷମାରାଣୀ ନା କିଏ ରେ !

ଅକସ୍ମାତ୍ ସୁଷମା ଆସି ଉପସ୍ଥିତ ହୋଇଯିବାରୁ କଥୋପ-କଥନର ଗତି ବଦଳିଗଲା । ଶମ୍ଭୁନାଥ ଦନ୍ତବିହୀନ ତୁଣ୍ଡରେ ହାସ୍ୟର ଅପରୂପ ପ୍ରଭା ବିସ୍ତାର କରି କହିବାକୁ ଲାଗିଲେ—ବାଃ, ଖୁବ୍ ବଡ଼ଟିଏ ତ ହୋଇଗଲଣି ମା । ମୁଁ କହେଁ, ଆହେ ବାପା ଜୟକୃଷ୍ଣ ! ତମେ ତ ଭାଗ୍ୟକୁ ଆସି ଯାଇଛ । ମାଆଟିର ମୋର କିଛି ଗୋଟାଏ ଭଲକିନାରା କରିଯାଅ ଭଲା । ଅଉ କେତେକାଳ ଅନେଇ ବସିଥିବ । କହନ୍ତି ପରା—"ହିଅ ଘରେ ରହିଲେ ଅଡ଼ୁଆ, ଝିଅ ଘରେ ରହିଲେ କଡ଼ୁଆ ।"

ସୁଷି ଶମ୍ଭୁନାଥଙ୍କ ପାଦତଳେ ଗୋଟାଏ ମୁଣ୍ଡିଆ ମାରି ଚଞ୍ଚଳ ଚଞ୍ଚଳ ପଳାଇଗଲା । କଥାଗୁଡ଼ାକ ତାକୁ କର୍ଣ୍ଣକଣ୍ଟକରେ ପିଟିବା ଭଳି ଲାଗିଲା । ତା ପରେ ସେ ଅଳ୍ପ, କିପରି ଅନ୍ୟମନସ୍କର ଅଡ଼ୁଆ ହେଲା ତାହା ସେ ବୁଝି ପାରିଲା ନାହିଁ ।

ଶମ୍ଭୁନାଥ ଏହାପରେ ସ୍ୱରଟା ଝୀଣକରି କହିଲେ, ବାପା, ଏଇଠାରୁ ଲାଗି ପଡ଼ିବ । ଯଉ, ତମେମାନେ ତ ଜେ ମୂରବି, ଅଉ ଯଯଣାର କଏ ଅଛି ? କିଏ ଏସବୁ କଥ କରିବ ? ହିଁଅଟା ଦଳକୁ ଦଳ ଯେପରି ବଢ଼ି ଉଠୁଛି କେତେ କଣ ? ଆଜି କାଲି ଯୁଗର କଥା କଣ ବୁଝିନାହିଁ ? ସାକ୍ଷାତ ମୂର୍ତ୍ତିଟି ପରି ଦେଖାଗଲଣି ପରା ! ବଡ଼ ବିପଦ ବାପା, ଦଉ ବର୍ଷ ନା, କଣ କହୁଛ ?

ଶମ୍ଭୁନାଥ ପ୍ରଶ୍ନର ଉତ୍ତରକୁ ଅପେକ୍ଷା ନ ରଖି, ଆହୁରି ଟିକି ପାଖକୁ ଘୁଞ୍ଚିଆସି, ବାଡ଼ଖଣ୍ଡି ଘୁଞ୍ଚାଇଆଣି, ଅତି ଗୋପନରେ କାନେ କାନେ କହିବାକୁ ଆରମ୍ଭ କଲେ—ବାପା, ଗୋଟାଏ ଲାଏକ ପାତ୍ର ବ ହାତରେ ଅଛି । ଧରି ବସିଲେ ଟଙ୍କା ଗୁରୁଣରୁ କାନ୍ତିଟାଏ ଊଣା ହେବ ନାହିଁ । ଲୋକଟାବି ସେ ପକ୍ଷରେ ଦରଆଲୁ । ଧନ ଅମାପ । ଅମାର ଅମାର ଧାନ ଠେସି ଦେଇଛି । ମହାଜନ କାରବାର । ନାତ ନାତ ଗୋଡ଼ତଳେ ଟଙ୍କା ପଇସା ଆସି ଟଂ ଟଂ ହୋଇ ପଡ଼ୁଛି । ତେବେ କଅଣ କି ଦୋହଲଟେଇ । ହେଲେ, ବୟସ ବେଶି ନୁହେଁ, ପଚାଶ ପୁରି ନାହିଁ । ପୁରୁଷ ପୁଅର ବୟସ କି ଧରାଯାଏ ବାପା ? ମୋ ଦେଖାନ୍ତାରେ ଲୋକେ ବାଷଠି ବର୍ଷରେ କାର୍ତ୍ତିକେୟ ପରି ପୁଅର ବାପ ହୋଇଚନ୍ତି,—ଚତୁର୍ଥ ପକ୍ଷର ସ୍ତ୍ରୀ ପ୍ରସବ କରି ଥୋଇ ଦେଇଛି । ଆଉ ଏ ବା କେତେ ? ତେବେ, କଣ ବାପା, ଚେଷ୍ଟାଚରିତ୍ର କରି ଦେଖିବା ? ମୁଁ କହି ରଖୁଛି—କାନମୋଡ଼ ଗୋଟିଗଣାନ୍ତା ଗୁଣେଶହ ଟଙ୍କାଟି ଆଦାୟ କରିଦେବି । ଏ ଶମ୍ଭୁନାଥ ଶତପଥୀ, ଯାହା କଥାର ଏପାଖ ସେ ପାଖ ନାହିଁ ।

ଏହା କହି ଶମ୍ଭୁନାଥ ବାଡ଼ଧରି ଉଠିବାକୁ ଉଦ୍ୟତ ହେଲେ ଏବଂ ଛିଡ଼ା ହୋଇପଡ଼ି କହିଲେ—ଏହିକ୍ଷଣି ଜବାବଟା ଦେବାକୁ

ଦାଦା । ଏସବୁ କଥା ଭାବଚିନ୍ତା ଦେଖିବାକୁ ସମୟ
ଲ କର ଭାବ । କାଲି ସାର କର ମୋତେ କହିବ । ଆଉ
କ ସହିତ ତ ପରାମର୍ଶ କରିବାର ନାହିଁ । ମୁଁ ଯା କହୁଛି
ଦ ବୋଲି ଏକମାତ୍ର ତମେ । ତମେ ଯାହା ସ୍ଥିର କରିବ ତା
। ଅଚ୍ଛା, ମୁଁ ଆସେଁ ବାପା, ଭାବ ଚିନ୍ତା କହିବ । କାଲି ଦେଖା
ତ ?

ଜୟକୃଷ୍ଣ କହିଲେ—ହିଁ କକା, କାଲି ଏତିକି ବେଳକୁ
ଆସିଲେ ହବ ।

"ଅଚ୍ଛା, ଅଚ୍ଛା" ବୋଲି କହି ଶତପଥୀଏ ବିଦା ହେଲେ ।
ଜୟକୃଷ୍ଣ ଉଠି, ପାଟିକରି କହିବାକୁ ଲାଗିଲେ—କି ଅକଲ ଏତେ ବଡ଼
ହିଁଅଟାର ଦାଦା ! ଆଖିରେ ଦେଖିଗଲେ—ଶତପଥୀଏ ଆସି କଥାଭାଷା
ହେଉଛନ୍ତି । ଟିକିଏ ପାନବି ଆଣି ଦେବାକୁ ବୁଦ୍ଧି ହେଲା ନାହିଁ ।
ଧିକ୍ ସେ ବୁଦ୍ଧିକି ।

ଏସବୁ କଥାଗୁଡ଼ାକ ଶୁଣି, ନ ଶୁଣିଲା ପରି ଚୁପ୍ ରହିଲା ।

ସେ ଦିନ ରାତିରେ ଜୟକୃଷ୍ଣଙ୍କୁ ଆଉ ନିଦ ହେଲା ନାହିଁ ।
କେବଳ ମନେ ପଡ଼ିଲା—ଶମ୍ଭୁନାଥଙ୍କ ଆଶାମୟୀ ବାଣୀ । ଆଖି
ଆଗରେ ନାଚି ଉଠିଲା—ଗୋଟି ଗୋଟି ହୋଇ ଗୁଣିଗୁଣି ଟଙ୍କା ।
କି ସୁନ୍ଦର ପ୍ରସ୍ତାବ ! ଏକାଥରକେ ଗୁଣିଗଣି ଟଙ୍କା ତାର ହାତ ମୁଠା
ଭିତରକୁ ଆସିଯିବ । ଅଉ ବସିଲେ, ଗୁଣିଗଣିକା ବଢ଼ି ବଢ଼ି ପାଞ୍ଚ
ଶହରେ ଯେ ନ ଉଠିବ ତା ବା କିଏ କହିବ ? ଶମ୍ଭୁନାଥ ଶତପଥୀ
ଯେଉଁଠି ମଧ୍ୟସ୍ଥ, ସେଭଳି ଜାଗାରେ ତା ହେବା ବିଚିତ୍ର ନୁହେଁ ।
ଲୋକଟାକୁ ସେ ସବୁ କାଇଦା କଟକଣା ଭଲରୂପେ ଜଣା । କିପରି
ଲହରୀରେ କି ଭଳି ପାଣି ବହିଯାଏ, ତା ସେ ଜାଣେ । ଏପରି
ଗୋଟାଏ ଦାଗ ଛାଡ଼ିଦେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ ।

ଜମ୍ବୁକସ୍ତ ଭାବିଲା—ଏହିଟା ଠିକ୍ ଉପାୟ । ସେ ଧନ ସେ ଯୋଉଁ ପ୍ରସ୍ତାବଟା କରିଥିଲା ଅର୍ଥାତ୍ ଯୁଷିର କଲିକତା ଦିବା ପ୍ରସ୍ତାବ, ସେଇଟା ଠିକ୍ ଜାଗାରେ ବଡ଼ା ହୋଇ ନ ଥିଲା,—ଯୁକ୍ତି ସେପରି ସାମ୍ପରାଣୀ ନୁହେଁ,—ବେଧଡ଼କ ନିଆଁକୁ ଡେଇଁ ପଡ଼ିବାର ସାହସ ତାର ନାହିଁ । କଲିକତା ନାଁଟା ଶୁଣି ତାର ମୁଣ୍ଡରେ ତେନ୍ତୁଳିଆ ବଗ୍ଲି ବାନ୍ଧିଦେଲା,—ସେ ଗୁଡ଼ିଏଟି ହୋଇ ପଳାଇଲା । ତାର କଲିଜା ବଡ଼ ନରମ୍ । ଖାଲି ରୂପ ସିନା ଅଛି, ଗୁଣ ତ ନାହିଁ । ସେ ସେହି ପୁରୁଣା କାଳର ସାବିତ୍ରୀ ଠାକୁରାଣୀ,—ଏ ଯୁଗର ଦମ୍ଭବାଲି ନୁହେଁ । ଫଟ୍ କରି ଗୋଡ଼ କାଢ଼ି କଲିକତା ରେଙ୍ଗୁନକୁ ଠେଲିଦିବା, ଆଉ ଆପଣାର କପିଲକୁ ତା ସନ୍ତାରେ ଗୁଡ଼ିଦେବା ହୋଇଲେ ଯେଉଁ କଥା ତା ପୂଟେ ନଳି ଲୋକଦ୍ୱାରା ହେବାର ନୁହେଁ । ଏହି ସମୟଟା ଜମ୍ବୁକସ୍ତ ଉପଲବ୍ଧି କରିଗଲା । ଆଉ ଦେଖିଲା—ଏଥିରେ ପୁରୁଷମାନଙ୍କର ନିଜର ଲାଭ ରହିଛି । ସେ ହେଉଛି ସର୍ବବାଦୀସମ୍ମତ ମୁରବି । ଟଙ୍କାଟା ତାହାର ହାତରେ ପଡ଼ିଲେ କେତେ କାମ ଦେଖେଇବ । ଅବଶ୍ୟ, ଦଶ୍ଚିରିଟାରେ ଗୃହୀଣ ପଟ୍ଟୁଣ ଉଡ଼ିଯିବ । ଗଲେ ଯାଉ, ବାକିଟା ତ ହାତ ମୁଠାରେ ରହିଲା । ସେଇଟିକୁ ଧରି କଲିକତା ସହରରେ ଯାଇ ଦାଳିଏ ଦବାଇ କୁଣ୍ଡେଇଲରେ ବସିଗଲେ ତେଣିକି ନେଉଥା' । ଏହି ବାଟରେ ଯାଇ ତ ପୁଣି ଲୋକେ ବଡ଼ ଲୋକ ହୋଇ ବସିଛନ୍ତି, ସେ ବା ନ ହେବ କାହିଁକି ? ଏହା ଭାବି, ଟଙ୍କାଟା ହାତକୁ ଆସିଗଲେ ଦୈନିକ ଅନୁପାନ ସେବନର ମାତ୍ରା ଆଉ ଟିକିଏ ବଢ଼େଇଦେଇ, ଜମ୍ବୁକସ୍ତ ଦେହରେ ଟିକିଏ ତାକତ୍ ଆଣିବାକୁ ମଧ୍ୟ ସଙ୍କଳ୍ପ କରିଦେଲା ।

ଏକଦମ ଗୁ ଯାନ କରିସାରି ସେ ଖୁସି ମନରେ ବାଇଲିମାକୁ ତାକି କହିଲା—ବୁଝିଲୁ ନା ବାଇଲିମା, କଲିକତା ଛାଡ଼ ଆଉ

ବେଶିଦିନ ଏଠି ରହିବାକୁ ମନ ହେଉ ନାହିଁ । ଖାଲି ପଳେଇ ଯିବାକୁ ଆତ୍ମା ଡାକୁଛି । ଢେରଦିନର ମାୟା କି ନା । ଗୋଟାଏ ଲୋକର ମାୟା ଯେମିତି, ଗୋଟାଏ ସ୍ଥାନର ମାୟା ସେମିତି ଜାଣିବୁ । କହିବାକୁ ଗଲେ, ଏଇଚୁକାର ଦିଲାଦିନରୁ ଯାଇ ସେ ସ୍ଥାନରେ ମୁକାମ କରି ହୋଇଛି ତ ! ଅଜ୍ଞ ଆଉ ତାର ମାୟା ଛୁଟିଲେ ହେଉଛି କେତେଦିନକ ?

ବାଉଳିମା ମନେ ମନେ ଟିପିହସି କହିଲା---ହଁ ଭାଇ, ସେ କଥା ଠିକ୍ । ଯେ ଦିନୋଦିନ ଧରି ଅନ୍ନ ଖାଇଆସିଛି, ତା ଭୂମିକୁ ଆଦର ଯେମିତି, ସେ ଏତେକାଳ କଲିକତାରେ ରହିଆସିଲା ତା ପରେ ଏ ମଫସଲ ଗାଁରେ ରହିବା ସେମିତି । ମୁଁ ଯିବା କଲିକତା ଯାଇନାହିଁ, ହେଲେ ବାପ-ଦାଦାଙ୍କଠୁ ତ ଶୁଣିଛି । ବାପାମାଆଙ୍କୁ ଆମର ସବୁଦିନେ କହନ୍ତି—ଯେ ଥରେ କଲିକତା ଯାଇଛି, ତାର ସରଗକୁ ଯିବା ଆଉ ଦରକାର ନାହିଁ । ତମେ କେତେ କଥା କହୁଛ ? ତେବେ କଣ ଦିନ ଯିବା କଥା ଯାଉ ଜାଣୁଛ ଭାଇ ?

ଜୟକୃଷ୍ଣ ଗୋଟାଏ ହାଇମାରି ଚୁଟକି ଫୁଟାଇଲା । ତା ପରେ ଜବାବ ଦେଲା—ହେଲେ, ଯେତେ ଶୀଘ୍ର ଯିବାର ଇଚ୍ଛା ସେତେ ଶୀଘ୍ର ଯାଇହେଉନି କାହିଁ ଭଉଣୀ ? ହିସାବ କେଁ ଅଛି ପରା । ଏତେଦିନ ପରେ ଆସିଛି, ଗୋଟାଏ ସତ୍ପାତ୍ର ଦେଖି ଘୁଡ଼ିଟାକୁ ସମର୍ପଣ କରି ଦେଇ ନଗଲେ ଲୋକେ ବଡ଼ ନିନ୍ଦା କରିବେ । ଅମିଳା ଧନରୁ ମୁଁ ସେଥିକଥା ଭାବୁଛି,—ହେଲେ କାହାରିକୁ କିଛି କହିପାରୁ ନାହିଁ । କଅଣ କରିବି ? ଗୋଟାଏ କିଛି ଯୋଗାଡ଼ଯନ୍ତ୍ର ହେଲେ ତ କହିବି ? ନୋହିଲେ ସମସ୍ତେ ବୋଲିବେ [illegible] ମୁଣ୍ଡଖୋର, ଖାଲି ନିଅଣ୍ଟିଆ [illegible] ଜାତିଆ । ନା [illegible]

ବାଉଳୀମା ମନରେ 'ମେଘ ଅନ୍ଧକାରରୁ ରେଖାଟିଏ ସଦ୍ୟ ଦେଖା ଦେଇଥିଲା ତା ମଉଳିଯିବାର ଉପକ୍ରମ ହେଲା । କିନ୍ତୁ ସେ ତାର କୌଣସି ସୂଚନା ପ୍ରକାଶ ନକରି କହିଲା—ତେବେ କିଛି ଚେଷ୍ଟା-ଚରିତ୍ର କରୁଛ ନା କଣ ? ଏତେ ଚଞ୍ଚଳ ସେପରି କିଛି ହେବାର ଆଶା ଅଛି ନା ?

"ଅଛି, ଅଛି, ବାଉଳୀମା । ଦେଖାଯାଉ ପିଲାଟାର ଭାଗ୍ୟରେ କଣ ଅଛି ।" —ଏହା କହି ଜୟକୃଷ୍ଣ ବାହାରକୁ ଯିବାର ଉଦ୍‌ଯୋଗ ଆରମ୍ଭ କରିଦେଲେ । ଅଳ୍ପ ସମୟରେ ମଧ୍ୟ ଛତାଖଣ୍ଡ ଧରି, ପାଦରେ ଚଟି ଦୁଇଟି ଚଟ୍ ଚଟ୍ କରି ବାହାରିଗଲେ ।

ଠିକ୍ ସେତିକିବେଳେ କାହିଁକି 'କେଜାଣି ବାଉଳୀମାର ଅନ୍ତଃସ୍ଥଳ ଆନ୍ଦୋଳିତ କରି ଯୋଡ଼ାଏ ଦୀର୍ଘଶ୍ୱାସ ବାହାରି ପଡ଼ିଲା । ତାର କେତେ କଥା ମନେ ପଡ଼ିବାକୁ ଲାଗିଲା । ବିଶେଷ କରି ମନେ ପଡ଼ିଲା—ସେହି ଦିନର କଥା । ଯେଉଁଦିନ ମୁକ୍ତି ସହିତ ତାକୁ ହରିଶଙ୍କର ବାବୁଙ୍କ ଘରୁ ବିଦା ହୋଇ ଆସିବାକୁ ହେଲା । ଏହି ମୁକ୍ତିର ବିବାହ-ବ୍ୟାପାର ନେଇ ସେଦିନ ଏତେ ଗୋଳମାଳ । ଏହି ମୁକ୍ତିକୁ ବିବାହ କରିବା ପାଇଁ ହରିଶଙ୍କରଙ୍କର ଏତେ ସ୍ପୃହା, ଏତେ ଅପୂର୍ବ ଅଭିନବ ଘଟଣା ! ଶୂଦ୍ର କନ୍ୟାକୁ ଗ୍ରହଣ କରିବାକୁ ବ୍ରାହ୍ମଣ-ସନ୍ତାନର କି ଅଭିଳାଷ ! ସେଥିପାଇଁ କି ହଟହଟା ! କିନ୍ତୁ ଯେ ଏହି ହଟହଟାର ମୂଳ ସେ ଆଜି କୁଆଡ଼େ ? ଏତେ ଆଗ୍ରହ କରି ଯେ ବିବାହ କରିବାକୁ ଉଦ୍ୟତ ଥିଲା, ସେ ଆଜି ଟିକାଏ ଦେଖାଦର୍ଶନ ନ ଦେଇ ଚାଲିଗଲା । କେତେଥର ଚିଠି ପଠେଇଦେଇ, ଘର ଭିତରକୁ ନ ଆସି ସେହି ଦିନରୁ ସେ ଯାଇଛି,—ଯାଇଛି । କିଏ [illegible] ତାର ଟିକାଏ ଖବର ନେଉ ନାହିଁ । ହାୟରେ, [illegible] ସେ ପୁଣି [illegible] ସଂସାର ଆଶ୍ରୟ ହେବାକୁ ଆସିଥିଲା,—[illegible] ଥିଲା,—

ନିଜକୁ ଅନାଥର ଭରସା ବୋଲି ତାହାରକୁ ପରିଚୟ ଦେଉଥିଲି ! ଧିକ୍, ଧିକ୍, ତାକୁ—ଶତ ଧିକ୍ ତାର ସେ ମୃଗ୍ଧା-ଚିନ୍ତା ମୁହଁଖଣ୍ଡିକୁ !

ବାଉଳିମାର ଅସ୍ଥି ମଜ୍ଜା ପର୍ଯ୍ୟନ୍ତ ଘୃଣାରେ ଜର୍ଜର ହୋଇ ଉଠିଲା । ମନଭିତରେ ଏକ କ୍ରୋଧ ଜାତ ହେଲା । ସୁଷମା ଉପରେ ବି ତାର ଭୟଙ୍କର ରାଗ ଚଢ଼ିଲା । କାହିଁକି ସେହି ଠକ୍‌କୁ କେତେଥର ସେ ହାତ ପତେଇ ସେ ଦାନ ନେବାକୁ ଗଲା ? କାହିଁକି ସେ ତା ପିଣ୍ଡି ନ ଦେଲା ? ଗୋଡ଼ରେ ଦାଳି ଦେଇ, ମଳି, ଦେଇ, ଯେମିତି ଦାତାଙ୍କର୍ ଉପରକୁ ଫୋପାଡ଼ି ନ ଦେଲା ? ବାଉଳିମା ଆଉ ସମ୍ଭାଳି ପାରିଲା ନାହିଁ । ଡାକିଲା—ସୁଣି !

ସୁଷମା ତାର କଣ୍ଠସ୍ୱରରେ ଗୋଟାଏ ଅସ୍ୱାଭାବିକତାର ଆଭାସ ପାଇଲା । ଜୟକୃଷ୍ଣ ସହିତ ତାର ଯେଉଁ କଥାବାର୍ତ୍ତା ଏହି ଘରେ ହୋଇଗଲା ତାହା ସେ ଅନ୍ୟ ଜାଗାରେ ଥାଇ ସବୁ ଶୁଣିଥିଲା । ବଡ଼ ବିଚଳିତ ହୋଇ ଶୁଣିଥିଲା । ଭାବୁଥିଲା—ଏ ପୁଣି ଭାଗ୍ୟର କି ନୂତନ ପରିହାସ ! ଭାଗ୍ୟଦେବତା ତାକୁ ନେଇ କି ଖେଳଟା ଖେଳୁଛନ୍ତି ! କେତେ ହଇରାଣ କରୁଛନ୍ତି । ସେ ହଇହାଣର ଯେପରି ସୀମା ନାହିଁ, ଶେଷ ନାହିଁ, ଆଦି ନାହିଁ, ଅନ୍ତ ନାହିଁ । କିଏ ଭାବିଥିଲା—ଏତେଦିନ ହେଲା ଯେ ଗୃହତ୍ୟାଗ କରି ଯାଇଛନ୍ତି, ଯାହାର ମୁଖର ଅକୃତଟା ପର୍ଯ୍ୟନ୍ତ କେବଳ ଭୁଲିଯାଇଛନ୍ତି—ସେ ପୁଣି ଫେରିଆସିବ, ଅତ୍ୟାଚାରରେ ବ୍ୟାପାର କରି ବସିବ । ସୁଷିର ସେହି ଶମ୍ଭୁନାଥ ଶତପର୍ଥୀଙ୍କ ଉପରେ ଘୋର ବିରକ୍ତି ଜାତ ହେଲା । ଏତେଦିନ ଯାଏଁ ସେ କୁଆଡ଼େ ଥିଲା ? ହଠାତ୍ ତାକୁ କାହିଁକି ତାର ବିବାହର ଚିନ୍ତା ପାରିବସିଲା ? ସୁଷିର ଯେତେବେଳେ ଘୋର ଦୁଃଖର ସମୟ, ମା'ର ମୃତ୍ୟୁପରେ ସେ ଯେତେବେଳେ ଅକୂଳ ସମୁଦ୍ରରେ ଭାସମାନ, ସେତେବେଳେ ତ ସେ ମୁହୂର୍ତ୍ତିକ ପାଇଁ ଆସି ଦେଖାଦେଇ ନ ଥିଲା । ଆଜି ତାର ସହାନୁଭୂତି

କାହିଁକି ଉଚ୍ଛୁଳି ଉଠିଲା ? ହାୟ ! ଆଜି ବାରୁଦ ସହିତ ଅଗ୍ନିର ସଂଯୋଗ କାହିଁକି ଘଟିଲା ? ସେ ଏକା ନସ୍ୟକୁନ୍ତ ସଙ୍ଗରେ ତା ବିଷୟ ନେଇ ଚର୍ଚ୍ଚା କରିବସିଲା, ଦୁହେଁ ମିଳି ତାର ଭକ୍ତ ଜୀବନରେ ଅଧିକ ଭକ୍ତତା ଭରିଦେବାକୁ ଷଡ଼ଯନ୍ତ୍ର କଲେ । ଏମାନେ କେଉଁ ଅପଦେବତାର ଚର ? କି ଉପାୟରେ ସେ ଏମାନଙ୍କ ହସ୍ତରୁ ମୁକ୍ତି ପାଇବ ? ସୁଷିକୁ ବୁଦ୍ଧି ବାଟ ଦେଖାଗଲା ନାହିଁ । ତାର ପ୍ରାଣ ଭିତରେ ଘୋର ଅଶାନ୍ତି କୁହୁଳିବାକୁ ଲାଗିଲା ।

ଏହି ସମୟରେ ବାଉଳିମାର ଡାକ ଶୁଭିଲା । ସୁଷି କ୍ଷୀଣ କଣ୍ଠରେ ଜବାବ୍ ଦେଲା । ବାଉଳିମା ସମ୍ମୁଖରେ ଆସି ଉପସ୍ଥିତ ହୋଇ କହିଲା—ରାଣି ! ଗୋଟାଏ କଥା ଶୁଣିଗଲି ।

ସୁଷମାର ଅନ୍ତସ୍ଥଳ ଦୁଲୁକି ଉଠିଲା । କି କଥା ? କୁହ ଗୁରୁତର କିଛି ନୁହେଁ ତ ? ସେ ସନ୍ଦେହ ସ୍ୱରରେ ପଚାରିଲା—କଣ ବାଉଳିମା ?

ବାଉଳିମା କହିଲା—ଅଚ୍ଛା ରାଣି, ତମେ ତ ପୋଥିପତ୍ର ପଢ଼ିଛ । 'ରାମାୟଣ' 'ମହାଭାରତ' ଗଛ ଶିଖିଛ, ତମକୁ ତ ଜଣା ଥିବ—ମୂଳଙ୍କରୁ ମୂଳକ କେମିତି ତୁଳସୀ ହୁଏ ଜାଣିଲ ?

ଶାସ୍ତ୍ରଆଗ୍ରହୀ ସୁଷିର ମୁହଁରେ ଈଷତ୍ ହାସ୍ୟରେଖା ଫୁଟି ଉଠିଲା । ସେ ବିଦ୍ରୂପ କରି କହିପକେଇଲା—ହଁ, ରାମାୟଣ ମହାଭାରତରେ ତ ସେ ସବୁ କଥା ଢେର ଢେର ଲେଖାହୋଇଛି, କାହିଁକି ?

"ତେବେ କହିଲ ରାଣି, କେମିତି ଚେଷ୍ଟା କରିବାକୁ ହୁଏ, କେଉଁଠି ଯାଇ କରିବାକୁ ହୁଏ ?"

ସୁଷି କୌତୂହଳୀ ହୋଇ ପଚାରିଲା—ତୁଳସୀ ଜାରଟାଏ ଦରକାର ନା କଣ ?

ବାଉଳିମା—ହଁ, ରାଣି ।

କାହା ନାଁରେ ଲୋ ?

ସେଇ ଭୁଲମନ ବାବୁଙ୍କ ନାଁରେ ।

ଦୂର ପୋଡ଼ାମୁହିଁ, ସବୁବେଳେ ସେଇ ବାବୁ, ବାବୁ । ତୋ ମୁହଁରେ ସେ ନାଅଁ ଦେବେ ନା କଣ ଲୋ ?

ବାଉଳୀମା କହିଲା—ସେଇଟା ତ ଦେଲେ ଭଲ ହୁଅନ୍ତା ରାଣୀ ! ହବୁ କର ସେତକ ଦାକି ରଖିଲା କିଆଁ ଶୁଣେ ! ଦିନକ ପାଇଁ ଆସି ତମ ମୁହଁରେ ଆଉ ମୋ ମୁହଁରେ ସେତକ ଦେଇଗଲେ ତ ସାଅନ୍ତା, ତେଣିକି ସେ ବି ଝଲସ୍, ଅମେ ବି ଖାଲସ୍ । କେହି କାହାରିକୁ କହିବାକୁ ନ ଥାନ୍ତା !

ଏହା କହି ବାଉଳୀମା ଗମ୍ଭୀର ହୋଇ ରହିଲା ।

ଅବୋଧା ନାରୀର ଅକୃତ୍ରିମ ସମ୍ମାନ ବୃତ୍ତି ଲକ୍ଷ୍ୟ କରି ସୁଷମାର ଅନ୍ତଃକରଣ ଆର୍ଦ୍ର ହୋଇଉଠିଲା । ସେ ମୁହଁ ନଇଁକି ତଳକୁ ପୋତି ଉତ୍ତର ଦେଲା—ଛି, ବାଉଳୀମା ! ତାଙ୍କର କି ଦୋଷ ? ନିଜର କପାଳକୁ ନିନ୍ଦା ନ କରି ଅନ୍ୟଲୋକଙ୍କୁ ଦୋଷ ଦେବାଟା କି ସାଜେ ?

ବାଉଳୀମା ଦୃଢ଼ସ୍ୱରରେ କହିଲା—ସାଜେ, ରାଣୀ ! ସାଜେ ! ତମକୁ କେବେ କହିନାହିଁ, ଆଜି କହୁଛି—ଯେଉଁ ଦିନ ସେ ମୋତେ ଆଣି ଏଇ ଘରେ ରଖିଗଲେ, ସେ ଦିନ କଣ କହିଥିଲେ ଜାଣ ? କହିଥିଲେ—"ବାଉଳୀମା, ସୁଷିର ମା ତ ସର୍ଗରେ । ଆଜି ତୋତେ ତାର ମାଆ ହୋଇ ବସିବାକୁ ହେବ । ତାର ସମସ୍ତ ଭାର ତୋ ଉପରେ, ଆଉ ମୋ ଉପରେ ରହିଲା । ତାକୁ ନିଜ ଝିଅଟି ପରି ଦେଖିବୁ । ମାଆର ଅଭାବ ତାକୁ ଯେପରି ନ ବାଧେ ।" ସେ ଦିନେ ଏତେ କଥା କହି ନିଜର ମଣିଷ ହୋଇ ବସିଥିଲ,—ପୁଣି, ନିଲଠା ପାଲଟି ବଡ଼ା ହେବ ବୋଲି ମନ କରିଥିଲ, ସେ ଆଜି ଏତେ ନିଦୟା ପାଲଟି ପାରେ ! ଅଚ୍ଛା, ମୁଁ ପଚାରେଁ ତାର କଣ ବା ଅସାଧ୍ୟ ଥିଲା ?

ଜାତେ ବଡ଼ ହେବା କଥା ଯଦି ନୋହିଲା,—ଆଉ, ତା ବା କେମିତି ହୁଅନ୍ତା ?—ବ୍ରାହ୍ମଣ ଘରକୁ ଶୂଦ୍ର କରାଯାଏ ! ତେବେ ପଇସା ଖର୍ଚ୍ଚ କରି ସେ ତ ଭଲ ପାଞ୍ଚଟିଏ ଦେଖି ତାହାର ହାତରେ ସମର୍ପି ଦେଇ ପାରିଥାନ୍ତା । ତା ନ କଲା କାହିଁକି ? ପୁଣି ଏଠି ଆଣି ରଖେଇ ଏମିତି ହଇରାଣ କରିବାର ମତଲବ୍ କଣ ? ସେଥିଲାଗି କହୁଥିଲି—ଗୋଟାଏ ଝୁଲିଆ କରି ଆଣିବାକୁ । ଘରେ ମୋ ଆଗକୁ ଆସିଲେ ଜମିଦାର ପୁଅଟିର ଅକଲ ଗୁଡ଼ୁମ୍ କରି ଦଅନ୍ତି । ସେଠା କଣ ହୋଇପାରନ୍ତା ନାହିଁ ଶୁଣି ?

ସୁକ୍ଷି ହଠାତ୍ 'ନା' ବୋଲି କହି ବାଉଳିମାର ମୁହଁକୁ ଅନାଇ ରହିଲା । ସତେ ଯେପରି ସେହି ବୃଦ୍ଧାବରଦ୍ଧମୂର୍ତ୍ତି ମୁହିଁ ଖଣ୍ଡିକରେ ତାର ମାତୃମୂର୍ତ୍ତି ପ୍ରତିବିମ୍ବିତ ଦେଖିପାରିଲା । କ୍ଷଣକ ଅନ୍ତେ ସେ ଗଦ୍‌ଗଦ ସ୍ୱରରେ କହିଲା—ଆଜିଠାରୁ ତୋତେ ମା ବୋଲି ଡାକିବି ବାଉଳିମା', ତୁ ମୋର ମା ।

ବାଉଳିମା ତାକୁ କୋଳକୁ ଟାଣି ନେଇ କହିଲା—ମୁଁ କ ସତେ ଏଡ଼େ ଭାଗ୍ୟବତୀ ରେ ଶୁଣି !

ସୁକ୍ଷି ଉତ୍ତର ଦେଲା—ହଁ ହଁ । ଏହା କହି ସେ ତାର ବକ୍ଷ ଉପରେ ମୁହଁଟି ଯାକି ଦେଇ ନିମୀଳିତ ନେତ୍ରରେ ତାକୁ ଅଙ୍କେଇ ରହିଲା ।

---

## ଦ୍ୱାବିଂଶ ପରିଚ୍ଛେଦ

ସ୍ୱଧାପ୍ରିୟାଙ୍କ ପାଦତଳେ ନୀରବ ପ୍ରଣତିଟି ଉପହାର ଦେଇ ଯେଉଁଦିନ ସୁଷମା ହରଶଙ୍କରଙ୍କ ସାଙ୍ଗରେ ବନା ଅଟଳିରୁ ବାହାରି ଆସିଲା, ସେହିଦିନଠାରୁ ସ୍ୱଧାପ୍ରିୟାଙ୍କ ମନରେ ତିଳାର୍ଦ୍ଧେ ଶାନ୍ତି ନ ଥିଲା । ଦୈନନ୍ଦିନ କାର୍ଯ୍ୟକଳାପରୁ ତାର ବିଶେଷ କିଛି ସୂଚନା ମିଳୁ ନ

ପ୍ରଥମେ ମିଳୁ ନ ଥିଲା । ତାର କାରଣ, ସେ ନିଜକୁ ସଂଯତ କରି ରଖିବାକୁ ପ୍ରାଣପଣେ ଚେଷ୍ଟା କରୁଥିଲେ । କିନ୍ତୁ ପ୍ରାଣର ଅଶାନ୍ତି ଅଧିକ ଦିନ ସଂଯମ ମାନି ଚଳେ ନାହିଁ । କ୍ରମେ କ୍ରମେ ତାହା ପ୍ରକାଶିତ ହେବାକୁ ଆରମ୍ଭ କଲା । ସୁବିଧା ପାଇଲେ ରାଧାପ୍ରିୟାଙ୍କ ଅଜ୍ଞାତସାରରେ ତାହା କଥାରେ ପ୍ରକାଶିତ ହୋଇପଡ଼େ । ସେଥିରେ ବାଧାପଡ଼ିଲେ ତାହା କାର୍ଯ୍ୟରେ ଫୁଟିଉଠେ । କାର୍ଯ୍ୟରେ ଓ କଥାରେ ସତର୍କତାର ବେଷ୍ଟନୀ ଯଥାସମ୍ଭବ ସୃଷ୍ଟି କରି ଘେରିଦେଲେ, ତାହା ଫାଙ୍କି ଦେଇ ନୀରବତାରେ ଆତ୍ମପ୍ରକାଶ କରିବ ସେ । ରାଧାପ୍ରିୟା ବଡ଼ ମୁସ୍କିଲରେ ପଡ଼ିଲେ । ଏହିପରି କିଛିଦିନ ଗଲାପରେ ରାଧାପ୍ରିୟା କ୍ରମେ କ୍ରମେ ହଟିବାକୁ ଆରମ୍ଭ କଲେ । ନିଜ ପାଖରେ ତାଙ୍କର ପରାଜୟ ସ୍ପଷ୍ଟରୁ ସ୍ପଷ୍ଟତର ହେବାକୁ ଲାଗିଲା । କେତେବେଳେ ଔଦାସୀନ୍ୟ ଆକାରରେ କେତେବେଳେ ବା କ୍ରୋଧର ମୂର୍ତ୍ତି ଧରି ତାହା ଦେଖାଦେଲା । ସମୟ ସମୟରେ ଅକାରଣ ବିରକ୍ତିର ଲକ୍ଷଣ ସ୍ୱରୂପ ତାହା ପ୍ରକାଶ ପାଇଲା । ସୁନ୍ଦରୀର ଉତ୍ଥାନ ପରେ ରାଧାପ୍ରିୟାଙ୍କ ପାଇଁ ପାନଭାଙ୍ଗି ଯଥାସମୟରେ ଯୋଗାଇବାର ଭାର ପଡ଼ିଲା ପୂର୍ବ ପରିଚାରିକା ସେବତୀ ଉପରେ । ପୂର୍ବରୁ ଏହି ବିଶିଷ୍ଟ କାର୍ଯ୍ୟଟାର ଭାର ତାହାରି ଉପରେ ଥିଲା । ତାମ୍ବୁଲ ପରିବେଷଣ କିପରି କରିବାକୁ ହୁଏ, ତାହାର କୌଶଳ ତାକୁ ଯଥେଷ୍ଟ ବିଦିତ ଥିଲା । ଦିନେ ସେ ସ୍ୱୟଂ ମା-ଠାକୁରାଣୀଙ୍କଠାରୁ ଏ କାର୍ଯ୍ୟ ପାଇଁ ପ୍ରଶଂସା ଦାବି କରୁଥିଲା । ମା-ଠାକୁରାଣୀ ମଧ୍ୟ ତା-ଉପରେ ପ୍ରଶଂସା ବର୍ଷଣ କରିବାକୁ ଦିନେ ପଶ୍ଚାତ୍ପଦ ହୋଇ ନ ଥିଲେ । କିନ୍ତୁ ଆଜି ଆଉ ସେ ପ୍ରଶଂସା ସେବତୀ ଲାଭ କରିବାକୁ ସମର୍ଥ ହୁଏ ନାହିଁ । ପୂର୍ବ ଗୌରବରେ ପୁନଃ ପ୍ରତିଷ୍ଠିତ ହେବାପାଇଁ ପ୍ରାଣପଣେ ଚେଷ୍ଟାକରେ, ଯଥାସମ୍ଭବ ମନୋନିବେଶ କରି ପାନଭାଙ୍ଗି ରାଧାପ୍ରିୟାଙ୍କ ମନୋରଞ୍ଜନ କରିବାକୁ ଯତ୍ନକରେ । ମାତ୍ର ସେ ଯତ୍ନ କେବଳ

ଯନ୍ତ୍ରରେ ପର୍ଯ୍ୟବସିତ ହୁଏ, ସିଦ୍ଧିଲାଭ ଘଟେ ନାହିଁ । ଅନେକ ସମୟରେ ସ୍ୱଧାପ୍ରିୟା ପାନମଣ୍ଡି ପାଟିରେ ଗୁଞ୍ଜିଦେଇ, ଥରେ ଦୁଇଥର ଚୋବାଇ ପକାଇ, ଥୁ ଥୁ କରି କାଢ଼ି ପକାନ୍ତି । ସେବକଟା ହତବୁଦ୍ଧି ହୋଇଯାଏ । ହାୟ ହାୟ ! ତାର ଏତେ ଶ୍ରମସ୍ୱୀକାରର ପରିଣତି ହେଲା ଥୁ ଥୁ ! ବ୍ରାହ୍ମଣୀ ନାନୀ ଅତିଯତ୍ନ କରି ବିବିଧସୁନ୍ଦର ଅନ୍ନବ୍ୟଞ୍ଜନ ପ୍ରସ୍ତୁତ କରେ । ସ୍ୱଧାପ୍ରିୟାଙ୍କ ରୁଚିକୁ ଯାହା ଯାହା ରୁଚେ ତାହା ଖୁବ୍ ପରିପାଟି କରି ରାନ୍ଧି ଆଣେ । ପାଖରେ ବସି ଭୁଞ୍ଜାଇବାକୁ ଚେଷ୍ଟାକରେ । ମାତ୍ର ଭୁଞ୍ଜିବାଆଡ଼ରୁ ତାହା ସ୍ୱଧାପ୍ରିୟାଙ୍କ ରୁଚିକୁ ଛୁଇଁକରି ହେଲା ବୋଲି ଜଣା ପଡ଼େ ନାହିଁ । ନାନୀ କହେ—ମା-ଠାକୁରାଣୀ ବଡ଼ନବସରଣା କଣ ଭଲ ହୋଇ ନାହିଁ ? ଛେନା ଝୋଳଟାରେ ଲୁଣ ତ ହାତ ବାଜୁ ନାହିଁ ? ସ୍ୱଧାପ୍ରିୟା କହନ୍ତି—'ହଁ ଗୋ, ବାଛିବ ନାହିଁ କାହିଁକି ? ଆଉ କେତେ ଖାଇବି ?' କିନ୍ତୁ ଏ କଥାରେ ବ୍ରାହ୍ମଣୀ ନାନୀର ମନବୋଧ ହୁଏ ନାହିଁ । ସେ ମୁହଁ ବଙ୍କା କରି ବସେ । ଗୃହଦେବତା ମଦନମୋହନଙ୍କ ପୂଜାରୀ ଦୀକ୍ଷିତ ପୁଅ ଚନ୍ଦନ ତୁଳସୀ ଓ ନିର୍ମାଲ୍ୟ ଆଣି ମା-ଠାକୁରାଣୀଙ୍କ ହାତରେ ଦେଇ କହେ—ମା, ଆଜି ସନ୍ଧ୍ୟା ଆରତିବେଳେ ବିଜେ ହେବାକୁ ଭୁଲିବେ ନାହିଁଟି । କିନ୍ତୁ ସ୍ୱଧାପ୍ରିୟା ଭୁଲିଯାନ୍ତି । ସନ୍ଧ୍ୟା ଆରତି ଶେଷହୁଏ, ଅଥଚ ମା ଠାକୁରାଣୀ ବିଜେ ହୁଅନ୍ତି ନାହିଁ । ପର୍ବପର୍ବାଣିବେଳେ ଘରେ କିପରି ଉତ୍ସବର ଅନୁଷ୍ଠାନ କରିବାକୁ ହେବ ସେ ବିଷୟରେ ପରାମର୍ଶ କରିବାପାଇଁ ଦାସ ଦାସୀମାନେ ଆସି ତାଙ୍କୁ ବ୍ୟସ୍ତ କରନ୍ତି, ସ୍ୱଧାପ୍ରିୟା ସେମାନଙ୍କ ଉପରେ ବିରକ୍ତି ପ୍ରକାଶ କରି କହନ୍ତି—"ତମର ବୁଦ୍ଧିଶୁଦ୍ଧି କଣ ଲୋପପାଇଛି ? ଥରକୁ ଥର ଆସି ମୋତେ ପଚାରୁଛ ? ଏତେ ଦିନହେଲା ଏ ଘରେ ରହିଲ, କେତେବେଳେ କଣ ହୁଏ ତା କଣ ଜାଣନାହିଁ ? ଦାସଦାସୀମାନେ ସ୍ୱଧାପ୍ରିୟାଙ୍କର

ଏ ଅସ୍ୱାଭାବିକ ବଉଳ ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ସେଠିଘରବୋହୂ ଆଠଦିନରେ ଥରେ ଆସି ମା-ସାଆନ୍ତାଣୀଙ୍କର ମଳିନବେଶ ଲକ୍ଷ୍ୟକରି କହେ—ପଛରଣ ଖଣ୍ଡି ପାଲଟିଦେବାକୁ ହୁକୁମ ଦିଅ ମା । ରାଧାପ୍ରିୟା ଉଦାସ କଣ୍ଠରେ କହନ୍ତି—"ଆଉ ମୋ ନାକଫୋଡ଼ିମା, ଆଉ ଦିନେ ନେବୁ, ଅଜା କାଏ ଦଉଚ ।' ଜାଗିରଖିଆ ବନ୍ଧୁବାଣଙ୍କର କଅଁଳ କନ୍ଧୀ ଘରଣୀ ଆସି ଗୋଡ଼ପାଖରେ ଜାଢ଼ିକରି ବସେ—ଆସ ମା, ଆସ, ମୋ ରାଣୀଟି, ମୋ ମୁଣ୍ଡ ଖାଇବ, ନଖଗୁଡ଼ାକ ବଢ଼ିଗଲାଣି, ଥରେ ନହୁରୁଣୀଟା ବୁଲେଇ ଦିଏଁ । ରାଧାପ୍ରିୟା କହନ୍ତି—ନା ଲୋ ବାଟକଘର ବୋହୂ, ତୁ ଅଜ ଯା ।

ଦିନକୁ ଦିନ ଏହିପରି କାର୍ଯ୍ୟରେ, ବାକ୍ୟରେ, ଆଚରଣରେ ରାଧାପ୍ରିୟାଙ୍କର ଉଦାସୀନ୍ୟ ଫୁଟି ଉଠୁଥିଲା । ସବୁ ବିଷୟରେ ଗୋଟାଏ ନିର୍ଲିପ୍ତଭାବ ପରିଲକ୍ଷିତ ହେଉଥିଲା । ଯେ ପ୍ରକାରେ ହେଉ ଦିନକେତେଟା କଟିଗଲେ ଗଲା । ଜୀବନର ସ୍ରୋତଟା ଯେପରି ଶୁଖିଗଲେ ଗଲା, ଏହିପରି ଗୋଟାଏ ବୈରାଗ୍ୟର ଲକ୍ଷଣ ଦେଖା-ଯାଉଥିଲା । ସମସ୍ତେ ଏହା ସ୍ପଷ୍ଟଭାବରେ ଲକ୍ଷ୍ୟ କରୁଥିଲେ । ଏହି ବିଷୟଟା ନେଇ ନାନାପ୍ରକାର ଆଲୋଚନା ଚାଲିଥିଲା । ଦାସ ଦାସୀମାନେ ନାନା ଟୀକା ଟିପ୍ପଣୀ ପ୍ରକାଶ କରୁଥିଲେ । କେହି କୃଷ୍ଣମାଧବଙ୍କୁ ଦୋଷ ଦେଉଥିଲା, କେହିବା ହରଶଙ୍କରଙ୍କୁ, ଆଉ କେହିବା ସୁରମାକୁ ଦୋଷୀ ସାବ୍ୟସ୍ତ କରୁଥିଲା । ଦିବଦାସ ବୁଢ଼ା ମୁଣ୍ଡ ହଲେଇ କହୁଥିଲା—ସାଆନ୍ତେ ଭାରି ଗୁଣବନ୍ତ ଲୋକ ହିଁ, ହେଲେ କଣ ହେବ, ଟିକିଏ ଅଳ୍ପ ଚଞ୍ଚଳ । ଯାହା କର୍ଣ୍ଣକାଳେ ଦେଖାନାହିଁ କି ଶୁଣା ନାହିଁ, ତା କରିବାକୁ ଯିବାଟା ପିଲାଳିଆ କଥା । ରାଧୁ ଗୁମାସ୍ତାଏ କହନ୍ତି—"ଦେଉ ଖଣ୍ଡପ କଥାଟା ହେଲା । ମାମୁ ସାଆନ୍ତେ ଟିକିଏ ସମ୍ଭାଳିଯାଇ ଭଲ କଥାରେ ବାବୁ ସାହେବଙ୍କୁ

ବୁଝାଇ ଦେଇଥିଲେ ହୋଇଥାନ୍ତା,—ହଠାତ୍ ପଞ୍ଚମ ହୋଇଗଲେ । ତାଙ୍କୁ ଅଭିମାଣୀ ଲୋକ, ଅଭିମାନ ଧରି ବସିଲେ । ସେହି କଥାଣ୍ଡ ଝିଅଟିର କପାଳ ଫାଟିଲା । ଆହା ବଡ଼ ଗୁଣବତୀ ଝିଅଟି, ଯାହାକୁ କହନ୍ତି ଅନ୍ନପୂର୍ଣ୍ଣା । କାଉଁନିଆ କହେ—"ପେଟପାଟଣା କଥା ବୁଝିବାକୁ ଲୋକଟା ଥିଲା ଏକା ! ଏଘରୁ ଲକ୍ଷ୍ମୀପ୍ରତିମା ଚାଲିଗଲା ? କେତେଟା ଦାନରେ ସେ ଲୋକଙ୍କୁ କି ଅପକାର କରି ପକେଇଥିଲା । ଯେ ଦାନ ଦେବାକୁ ମୁଁ ନ ଥିଲି, ନୋହିଲେ କି ସହଜରେ ଛାଡ଼ି ଦେଇଥାନ୍ତି ? ବାବୁଙ୍କ ଗୋଡ଼ ଭିଡ଼ିଧରି ଲମ୍ବହୋଇ ପଡ଼ିଯାଇଥାନ୍ତି —କହିଥାନ୍ତି,—ଯିବ ଯଦି ଏହି କାଉଁନିଆ ଉପରେ ଚଢ଼ିକରି ଯାଅ । ସେତିକି ବୁଦ୍ଧି ତ କାହାରିକୁ ଦିଶିଲା ନାହିଁ ।" ହରିଆମା ପୋଇଲୀ ଭୁନି ଭୁନି କହେ—"ଝିଅଟାର ସବୁଗୁଣ ଭଲ ଯେ, ହେଲେ ଆଗପଛ ଦେଖିପାରେ ନାହିଁ । ମୁଁ କହେଁ—ଯେ ତ ଜମିଦାର ପୁଅ, ତୁ ତ ଗରିବ ଘର ଝିଅ, ବଡ଼ଲୋକ ପୁଅ ସାଙ୍ଗରେ ପାରିବୁ କିଆଁ ? ସବୁ କଥା ସେଇଠି ରହିଯାନ୍ତା ନା ! ମୂଳରୁ ସେତିକି ଜିଦ ନ କରି ଥାନ୍ତୁ, ପାଣି ପଶିବାକୁ ଦେଇ ନ ଥାନ୍ତୁ, ତେବେ ଏତେ କଥା କିଆଁ ହୋଇଥାନ୍ତା ।"

କେହି କେହି ବିଶେଷ ବିଜ୍ଞତା ପ୍ରକଟ କରି ମନ୍ତବ୍ୟ ଦିଅନ୍ତି, —'ମା-ଠାକୁରାଣୀଙ୍କର ଠିକିଏ ଭୁଲ ହେଲା । ସେ ଧରାଜୁଆଁ ଦେଲେ ନାହିଁ, ସାପକୁ ମର ବୋଲି କହିଲେ ନାହିଁ କି ବାଡ଼ିକୁ ଭାଙ୍ଗ ବୋଲି କହିଲେ ନାହିଁ । ସବୁ କଥାରେ ଚୁପ୍ ମାରିଗଲେ । ଆଗୁ ସମସ୍ତଙ୍କୁ ବୁଝାଇ ସମଝାଇ ଝିଅଟିକୁ ଗୋଟିଏ ପାତ୍ର ଦେଖି ଛଟେଇ ଦେଇଥିଲେ ତ କଥା ସରିଥାନ୍ତା ।' କେହି ଏହା ଶୁଣି ଯୁକ୍ତି କରି ବସନ୍ତି—ଏତେ କଥାକୁ ସମୟ ହେଲା କାହିଁ ? ଅନ୍ୟ ଲୋକ ତାର ଜବାବ ଦିଅନ୍ତି—ସମୟର କଥା ତ ନୁହେଁ, ସେ ଦିଗରେ ତାଙ୍କର ଚେଷ୍ଟା ହିଁ ହେଲା ନାହିଁ ।

ମିଛଟାରେ ଘରଲୋକ ଗୁଡ଼ାକ ଯେତେବେଳେ ଏହିପରି ଚକ୍ରାନ୍ତରେ ଲାଗିଥିଲେ ସେତେବେଳେ କୃଷ୍ଣମାଧବଙ୍କର ଦୁଶ୍ଚିନ୍ତା ଦିନକୁ ଦିନ ବଢ଼ିବାକୁ ଲାଗୁଥିଲା । ରାଗଗୃହରେ ସେ ସ୍ନେହର ଭାଗିନେୟ ହରିଶଙ୍କରଙ୍କୁ ଅନେକ ଗୁଡାଏ ମର୍ମନ୍ତୁଦ କଥା କହି ପଠାଇଥିଲେ ଏବଂ ତାହାର ଫଳ ଯେ ଏତେ ଗୁରୁତର ହେବ, ତାହା ଭାବି ନ ଥିଲେ । କୃଷ୍ଣମାଧବ ବାସ୍ତବରେ ହରିଶଙ୍କରଙ୍କୁ ବଡ଼ ସ୍ନେହ କରୁଥିଲେ । ନିଜେ ପୁତ୍ରହୀନ ଥିବାରୁ ଭଗିନୀର ଏକମାତ୍ର ପୁତ୍ରଙ୍କୁ ସେ ନିଜର ପୁତ୍ରପରି ମନେ କରୁଥିଲେ । ଠିକ୍ ବୁଝିବାକୁ ଗଲେ ଦେବଶଙ୍କର ଥିଲେ ହରିଶଙ୍କରଙ୍କର ଜନ୍ମଦାତା ପିତା, କିନ୍ତୁ ପିତାର କାର୍ଯ୍ୟ କରୁଥିଲେ କୃଷ୍ଣମାଧବ । ପିଲାଟି ଦିନରୁ ହରିଶଙ୍କରଙ୍କୁ ମଣିଷ କରି ଆଣିଥିଲେ ସେହି । ତାଙ୍କର ସମସ୍ତ ସୁଖ ସୁବିଧା ପ୍ରତି ଲକ୍ଷ୍ୟରଖି ତଦନୁଯାୟୀ ବ୍ୟବସ୍ଥା କରୁଥିଲେ ସେହି । ହରିଶଙ୍କରଙ୍କର ମାତୁଳ କୃଷ୍ଣମାଧବଙ୍କଠାରେ ଯେତେବେଳେ ଯେଉଁ ପ୍ରାର୍ଥନା କରୁଥିଲେ ତାହା ତତ୍‌କ୍ଷଣାତ୍ ପୂର୍ଣ୍ଣ ହେଉଥିଲା । ଉଭୟଙ୍କ ମଧ୍ୟରେ ଯେଉଁ ସ୍ନେହ ପ୍ରୀତିର ମଧୁମୟ ବନ୍ଧନଟି ଥିଲା, ତାହା କେବେ ଛିନ୍ନ ହେବବୋଲି କେହି କଳ୍ପନା କରୁ ନ ଥିଲେ । ଆଜି ତାହା ଆଉ ପୂର୍ବପରି ମଧୁମୟ ରହିପାରିନ ନାହିଁ । ଏଥି ଅନ୍ୟଲୋକ ଅପେକ୍ଷା କୃଷ୍ଣମାଧବଙ୍କୁହିଁ ଅଧିକ ବାଧୁଥିଲା । ସେ ଦିନ ଏପରି ଗୋଟାଏ କଥା କୃଷ୍ଣମାଧବଙ୍କ ତୁଣ୍ଡରୁ ଖସି ଯାଇଥିଲା ଯାହାପାଇଁ ସେ ପରେ ବଡ଼ ଅନୁତପ୍ତ ହୋଇଥିଲେ । ପ୍ରକାରାନ୍ତରେ ସେ କହିଥିଲେ, ହରିଶଙ୍କର ଜମିଦାରୀର କେହି ନୁହନ୍ତି,—କୃଷ୍ଣମାଧବହିଁ ସବୁ । କଥାଟା ଠିକ୍ ଏହିଭାବରେ କୁହା ହୋଇ ନ ଥିଲା ସତ୍ୟ, କିନ୍ତୁ ଭାବଟା ଭିନ୍ନ ନ ଥିଲା । ଏତେବଡ଼ ରୂଢ଼ କଥାଟା କହିଦେବା କୃଷ୍ଣମାଧବଙ୍କର ଉଚିତ ନ ଥିଲା । କି ଜାଣି ବା ଏହି କଥାଟା ପାଇଁ ଆଜି ହରିଶଙ୍କର ଜମିଦାରୀ ସହିତ ପ୍ରାୟ ସମସ୍ତ

ସମ୍ପର୍କ ତୁଟାଇ ଦେଇଛନ୍ତି । ଆଜକୁ ବର୍ଷାଧିକ କାଳ ହୋଇଗଲା ସେ ଘରକୁ ଫେରିଲେ ନାହିଁ, କେଉଁଠି ଅଛନ୍ତି ତାର ବି କୌଣସି ସ୍ଥିରତା ନାହିଁ । ଚିଠି ନାହିଁ, ପତ୍ର ନାହିଁ । ନିଜର ଖରଚ ପାଇଁ ଟଙ୍କା ବି ଗୃହନ୍ତି ନାହାନ୍ତି । କି ଉପାୟରେ ଚଳୁଛନ୍ତି ତା ମଧ୍ୟ ଜଣାନାହିଁ । ଗୃହତ୍ୟାଗର ମାସକ ପରେ କୃଷ୍ଣମାଧବ ସ୍ୱୟଂ ଗୁମାସ୍ତାଙ୍କୁ ପଚାରିଲେ —ହରିଶଙ୍କର ପାଖକୁ ଟଙ୍କା ପଠେଇଛ ? ଗୁମାସ୍ତା ଜବାବ୍ ଦେଲେ —ବାବୁ ସାହେବ କୌଣସି ଠିକଣା ଦେଇଯାଇନାହାନ୍ତି ଯେ ।' ପର ମାସ ମଧ୍ୟ ଠିକ୍ ସେହି ଜବାବ ମିଳିଲା । ଆଉ କିଛିଦିନ ପରେ କୃଷ୍ଣମାଧବ ଆଦେଶ ଦେଲେ—କଟକ ଠିକଣାରେ ହଜାରେ ଟଙ୍କା ପଠେଇଦିଅ । ମାତ୍ର ଟଙ୍କା ଫେରିଆସିଲା । ଗୁମାସ୍ତା ସେ ଖବର କୃଷ୍ଣମାଧବଙ୍କୁ ଦେବାରୁ କୃଷ୍ଣମାଧବ ଚିଡ଼ିଉଠି କହିଲେ—ଆହା ! ଯେଉଁ ଗୁମାସ୍ତାଟି ମିଳିଛ ନା ! ସିବାସମୟରେ ଆଉ ଠିକଣାଟା ବୁଝି ରଖି ପାରିଲ ନାହିଁ । ସ୍ୱୟଂକ ପାଣି ଅପା ଆପା ମାରିଗଲା । କି ଅଶୋଭୂଆ କଥା ! କୃଷ୍ଣମାଧବ ମିଛଟାରେ ଏହିପରି ଦୋଷ ଦିଅନ୍ତି । କିନ୍ତୁ କୃଷ୍ଣମାଧବ ରାଗିଲେ ସ୍ୱୟଂ ଜବାବ ଦେବାକୁ ସାହସ କରନ୍ତି ନାହିଁ, ସୁତରାଂ କିଛି କହିଲେ ନାହିଁ, ଦୋଷଟା ନୀରବରେ ମୁଣ୍ଡେଇ ନେଲେ ।

କୃଷ୍ଣମାଧବଙ୍କ ଦୁର୍ଭାବନା ଦିନକୁ ଦିନ ବଢ଼ିଲା । ଜମିଦାରୀ ପରିଚାଳନା ତାଙ୍କୁ ବିଷବତ୍ ବୋଧ ହେବାକୁ ଲାଗିଲା । ଯେଉଁ କାର୍ଯ୍ୟଟା ତାଙ୍କୁ ଅସୀମ ଆନନ୍ଦ ଦେଉଥିଲା, ସେଇଟା ଆଜି ଗୋଟାଏ ଦଣ୍ଡଭୋଗ ପରି ଜଣାଗଲା । କିନ୍ତୁ ସେ ଦଣ୍ଡଭୋଗ ନ କରି ଉପାୟ ନାହିଁ । ଗୋଟାଏ ପଦାର୍ଥ ଯେତେବେଳେ ଲୋକ ରଖି ନ ପାରେ, ପୁଣି ଛାଡ଼ି ମଧ୍ୟ ନ ପାରେ, ସେତେବେଳେ ତାହାର ମନର ଅବସ୍ଥା ଯାହା ହୁଏ, କୃଷ୍ଣମାଧବଙ୍କର ତାହାହିଁ ହେଲା । ସେ ବିବ୍ରତ ହୋଇ ପଡ଼ିଲେ ।

ଗୃହଆଡ଼କୁ, ଅନେକ ପରିଚିତ ଲୋକଙ୍କ ନିକଟକୁ ପତ୍ର ଲେଖିଲେ—ହରଶଙ୍କର କେଉଁଠି ଅଛନ୍ତି ତାର ସନ୍ଧାନ ନେଇ କହିବାକୁ ଚେଷ୍ଟା କଲେ, ମାତ୍ର ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ଦିନେ କୃଷ୍ଣମାଧବ ରାଧାପ୍ରିୟାଙ୍କ ନିକଟରେ ଆସି ଉପସ୍ଥିତ ହେଲେ । କହିଲେ—ନାନି ! ହର ତୋ ପାଖକୁ କିଛି ଚିଠିପତ୍ର ଲେଖୁନାହିଁ ? ରାଧାପ୍ରିୟା ସଂକ୍ଷେପରେ 'ନା' ବୋଲି କହି ଚୁପ୍ ରହିଲେ । କୃଷ୍ଣମାଧବ ଆଉ କଣ ପଚାରିବେ କିଛି ଭାବି ପାରିଲେ ନାହିଁ । ରାଧାପ୍ରିୟା ମଧ୍ୟ କୌଣସି ଆଗ୍ରହ ପ୍ରକାଶ କଲେ ନାହିଁ । ଉଦାସୀନ ହୋଇ ବସି ରହିଲେ । କୃଷ୍ଣମାଧବ ଥରେ ତାଙ୍କ ମୁହଁକୁ ଲକ୍ଷ୍ୟ କରି ଦେଖିଲେ । ମନେ ହେଲା ଯେପରି ଅନ୍ୟ କୌଣସି ଲୋକର ମୁହଁ,—ଭଉଣୀ ରାଧାପ୍ରିୟାଙ୍କର ନୁହେଁ । କୃଷ୍ଣମାଧବଙ୍କର ଛାତିଟା ଧଡ଼ କରି ଉଠି ଧଡ଼ ପଡ଼ି ପଡ଼ିଲା । ସେ ନୀରବରେ ସ୍ଥାନ ଛାଡ଼ି ଉଠିଆସିଲେ । ଅପରାଧୀ ପରି ଏକ ନିଶ୍ୱାସରେ ପଳେଇଯାଇ ଉଆସ ବାହାରେ ଥିବା ନିଜର ବୈଠକଖାନାରେ ଆସି ବସିପଡ଼ିଲେ ।

---

## ତ୍ରୟୋବିଂଶ ପରିଚ୍ଛେଦ

ବୈଠକଖାନାରେ ବସିଥିବା ସମୟରେ କୃଷ୍ଣମାଧବ ଖବର ପାଇଲେ ଯେ ଟେଲିଗ୍ରାମ ପିଅନ କି ଗୋଟାଏ ତାର ଖବର ଆଣି ଉପସ୍ଥିତ । କୃଷ୍ଣମାଧବ ଉଠିପଡ଼ି ଭାବିଲେ—ନିଶ୍ଚୟ ହରଶଙ୍କରଠାରୁ ଟେଲିଗ୍ରାମ ଆସିଛି । ଜରୁରି ଟଙ୍କାର ଦରକାର ପଡ଼ିଲେ, ହରଶଙ୍କର ଅନେକ ସମୟରେ ବିଦେଶରୁ ଏହିପରି ଟେଲିଗ୍ରାମ କରିଥାନ୍ତି । ନିଶ୍ଚୟ ଟଙ୍କାର ଦରକାର ପଡ଼ିଛି । ଦିନେ ଏହିପରି ଘଟିବ ସେ ଜାଣିଥିଲେ । ଏବେ ତ ଦିନେ ତାହା ଘଟିଛି । କୃଷ୍ଣମାଧବ ମନେ ମନେ

ଖୁସି ହେଲେ । ସ୍ଥିର କଲେ, ଏଥର ଟଙ୍କା ଡାକରେ ପଠାଇବେ ନାହିଁ ? ଟେଲିଗ୍ରାମର କୌଣସି ଉତ୍ତର ମଧ୍ୟ ଦେବେ ନାହିଁ । ନିଜ ହାତରେ ପାଞ୍ଚ ହଜାର ଟଙ୍କା ନେଇ ସ୍ୱୟଂ ହରିଶଙ୍କର ନିକଟରେ ଉପସ୍ଥିତ ହେବେ । ଏକ ହାତରେ ଟଙ୍କା ଦେବେ । ଅନ୍ୟ ହାତରେ ହରିଶଙ୍କରକୁ ଟାଣି ଘରକୁ ନେଇ ଆସିବେ । କହିବେ—"ହରି, ଏତେ ଅଭିମାନ ତୋର ! ସାମାନ୍ୟ କଥାରେ ଏତେ ରାଗ ! କେବେ ଏତେ ଅଭିମାନ କରୁ ଶିଖିଲୁ ? ହଁ, ତୁ ଅନ୍ୟର ସନ୍ତାନ ହୋଇପାରୁ, କିନ୍ତୁ ଗଢ଼ିଛି ତୋତେ କୃଷ୍ଣମାଧବ । ଆଜି ତାହାର ଆଦେଶ, ଚାଲ୍, ଫେରିଚାଲ୍, ଅବିଳମ୍ବେ ଘରକୁ ଫେରିଚାଲ । ଆଗରେ ମା ସୁଆଗ୍ରିସ୍ଥାର ଚେହେରା ଦେଖି ତା ପରେ ଯାହା କର୍ତ୍ତବ୍ୟ କର ।"

ଅଳ୍ପ ସମୟ ମଧ୍ୟରେ କୃଷ୍ଣମାଧବ ଅନେକ କଥା ଭାବିଗଲେ । ଭାବୁଁ ଭାବୁଁ ସେ ଦାଣ୍ଡାରକୁ ଆସିଲେ । ପିଅନ ହାତରୁ ଟେଲିଗ୍ରାମଟା ଗ୍ରହଣ କରି ଓ ଡାକ ବହିରେ ସ୍ୱାକ୍ଷର କରି ତାକୁ ଫେରାଇ ଦେଲେ । ଖୋଲିଟା ଚିରି ପକାଇ ଟେଲିଗ୍ରାମଟା ପଢ଼ିବାକୁ ଆରମ୍ଭ କଲେ । ପଢୁ ପଢୁ ମୁଖର କାନ୍ତି ମଳିନ ହୋଇ ଆସିଲା । ମୁଖ ଉପରେ ଆଶଙ୍କାର ଘନଘଟା ହେଲା । ଟେଲିଗ୍ରାମ କାଗଜ ଖଣ୍ଡ ହାତରେ ଧରି ସେ ବିଷଣ୍ଣ ବଦନରେ ପୁଣି ବୈଠକଖାନା ଭିତରକୁ ପ୍ରବେଶ କଲେ ।

ଟେଲିଗ୍ରାମଟା ହରିଶଙ୍କରଙ୍କଠାରୁ ଆସି ନ ଥିଲା । ପ୍ରତ୍ୟାଶିତ ଶୁଭ ସମ୍ବାଦ ମଧ୍ୟ ଆଣି ନ ଥିଲା । ତାହା ବହନ କରି ଆଣିଥିଲା— ଏକ ଦୁଃସମ୍ବାଦ । କୃଷ୍ଣମାଧବଙ୍କ ଜାମାତା ଏକ ମୋଟର ଦୁର୍ଘଟଣାରେ ସାଂଘାତିକ ଭାବରେ ଆହତ ହୋଇ ବାରିପଦା ହାସପାତାଳରେ ମୁମୂର୍ଷୁ ଅବସ୍ଥାରେ ପଡ଼ିରହିଛନ୍ତି । ସେମାନେ ବାରିପଦା ଟାଉନରେ ସପରିବାର ରହି ସେ କୌଣସି ଏକ ଅଫିସରେ କାର୍ଯ୍ୟ କରୁଥିଲେ । ଆଜି ଅକସ୍ମାତ ସେଠାରେ ଏ ବିପଦ । କୃଷ୍ଣମାଧବଙ୍କୁ ତୁରନ୍ତ ଆସିବା ପାଇଁ ତାର କରା ହୋଇଛି ।

କୃଷ୍ଣମାଧବ ସ୍ୱାମୀପ୍ରିୟାଙ୍କୁ ଏ ଆକସ୍ମିକ ବିପଦର ଖବର ଦେଇ ଯଥାସମୟରେ ଦାରପଦା ଅଭିମୁଖୀରେ ଚାଲିଲେ । କିନ୍ତୁ ଦାରପଦାରେ ପହଞ୍ଚିବାବେଳକୁ ସମସ୍ତ ଶେଷ ହୋଇଯାଇଥିଲା । ହାସପାତାଲରେ ଜାମାତାଙ୍କର ଜୀବନବର୍ତ୍ତିକା ଅଳ୍ପ କେତେ ଘଣ୍ଟା ମଧ୍ୟରେ ଚିରଦିନ ପାଇଁ ନିର୍ବାପିତ ହୋଇଥିଲା । କୃଷ୍ଣମାଧବଙ୍କ ଏକମାତ୍ର ସନ୍ତାନ ପ୍ରାଣଠାରୁ ବଳି ପ୍ରିୟ ଷୋଡ଼ଶ ବର୍ଷୀୟା କନ୍ୟା ମାଳତୀର ସୀମନ୍ତରୁ ସୌମ୍ୟ ସିନ୍ଦୂର ରେଖାଟି ବିଧାତା କ୍ରୂରହସ୍ତରେ ପୋଛିଦେଇ ସାରିଥିଲା ।

କୃଷ୍ଣମାଧବ ସେହି ସଦ୍ୟ ବିଷାଦବୋଲା ପ୍ରବାସ ଭବନରେ ପାଦ ଦେଇ ହୃଦୟର ଉଚ୍ଛ୍ୱସିତ ଶୋକାବେଗ ସମ୍ଭାଳି ରଖି ପାରିଲେ ନାହିଁ,—ଝରଝର ହୋଇ ନୟନାଶ୍ରୁ ଝରିବାକୁ ଲାଗିଲା । ସଦ୍ୟ-ବୈଧବ୍ୟ ବଧୁରା କନ୍ୟା ମାଳତୀ ତାଙ୍କର ପାଦ-ଲୁଣ୍ଠିତାହୋଇ ହୃଦୟଫଟା କରୁଣ ଆର୍ତ୍ତନାଦରେ ଗଗନ ବିଦୀର୍ଣ୍ଣ କରିବାକୁ ଆରମ୍ଭ କଲା । କୃଷ୍ଣମାଧବ ସେ ଶୋକାକୁଳ ମୂର୍ତ୍ତିଆଡ଼କୁ ଚାହିଁ ପାରିଲେ ନାହିଁ,—ଜନ୍ମଦାତା ପିତା ହୋଇ କେହି ଚାହିଁପାରେନାହିଁ । ତାଙ୍କର ମର୍ମସ୍ଥଳ ଛଳ ଛଳ ହୋଇ ଦଗ୍ଧୀଭୂତ ହେବାକୁ ଲାଗିଲା ।

ମାଳତୀ ଯୁବତୀ । ଯେଉଁ ବୟସରେ ରମଣୀ ଗୃହ-ସଂସାର ଆଲୋକିତ କରି ସୁଖର ସୁବର୍ଣ୍ଣ ରଶ୍ମି ବିଚ୍ଛୁରିତ କରେ, ସେହି ବୟସରେ ତାର ବୈଧବ୍ୟ । ଯେତେବେଳେ ଆଶାର ଅବାରିତ ଅନ୍ତଃକରଣ ନେଇ ସେ ମଧୁଚକ୍ର ନିର୍ମାଣ କରିବାରେ ବ୍ୟସ୍ତଥିଲା, ସେତିକିବେଳେ ଝଞ୍ଜାର ଆବିର୍ଭାବ । ନିୟତିର କି କଠୋର କୁଠାରାଘାତ ! କିଏ ଭାବିଥିଲା—ମାଳତୀର କପାଳରେ ଏଦୁର୍ଦ୍ଦଶାର ବଜ୍ରପାତ ହେବ ? କେତେ ସ୍ନେହରେ, କେତେ ଯତ୍ନରେ, କେତେ ଆଦରରେ କୃଷ୍ଣମାଧବ ଏହି-ଏକମାତ୍ର ସନ୍ତାନକୁ ବଢ଼େଇ ଅଣିଥିଲେ । ମାଳତୀ ମାତୃହୀନା

ହୋଉଥିଲା ସତ, କିନ୍ତୁ ପିତା ସେ ସ୍ଥାନ ପୂରଣ କରି ଥିଲେ । ମାତାର ଅଭାବ ମାଳତୀ ପ୍ରାୟ ବୋଧକରି ନାଃଥିଲା । କୃଷ୍ଣମାଧବ ଯେତେବେଳେ ସ୍ୱଗୃହ ତ୍ୟାଗ କରି ଭଗ୍ନୀପତିର ଭବନରେ ଯାଇ ବାସ କଲେ, ସେତେବେଳେ ମାଳତୀ ଶିଶୁ । ଭଗ୍ନୀପତିଙ୍କ ବିଶାଳ ହର୍ମ୍ୟପୁଞ୍ଜରେ ବାଳଲୀଳା ଅଭିନୟ କରିବାକୁ ଅନ୍ୟ କେହି ନ ଥିଲେ । ତାହା ଯାହା କରୁଥିଲା ଏକମାତ୍ର ବାଳିକା ମାଳତୀ । ମାତ୍ର ସେ ଅଭିନୟର ରସାସ୍ୱାଦ ଉପଭୋଗ କରିବାକୁ ଲାଳାୟିତ ଥିଲେ ସମସ୍ତେ । ସୁତରାଂ ମାଳତୀ ହୋଇଥିଲା ସମସ୍ତଙ୍କର ଆଦରିଣୀ । କୃଷ୍ଣମାଧବଙ୍କର ସେ ପ୍ରାଣ, ଭଗ୍ନୀପତିଙ୍କର ସେ ଆନନ୍ଦର ଉତ୍ସ; ଶିବଶଙ୍କରଙ୍କର ସେ କ୍ରୀଡ଼ାର ସଙ୍ଗିନୀ । ଜମିଦାର ଗୃହର ଅସଂଖ୍ୟ ପରିଚାରକ-ପରିଚାରିକାଙ୍କ କୋଳରେ ବା କାଖରେ ତାର ଦିନଗୁଡ଼ିକ ଆନନ୍ଦରେ କଟିଥିଲା । ସମସ୍ତେ ତାକୁ ଡାକୁଥିଲେ—ମାଳି । ଯୌବନାଗମରେ ପିତା ସୁନ୍ଦର ସତ୍ପାତ୍ର ଦେଖି ମହାସମାରୋହରେ ମାଳତୀର ବିବାହ ସମ୍ପନ୍ନ କରାଇ-ଥିଲେ । ଜାମାତା ଥିଲେ ଯୋଗ୍ୟ ଉପାର୍ଜ୍ଜନଶୀଳ ଯୁବକ । ମୋଟା ଦରମାରେ ସେ ମୟୂରଭଞ୍ଜରେ ଚାକିରି କରୁଥିଲେ । ଦିନକୁ ଦିନ ଯୁବକ ଯୁବତୀ ଦୁଇଟିଙ୍କର ସୁଖର ସୌଧ ସୁନ୍ଦରଭାବରେ ଗଢ଼ା ହୋଇଥିଲା । କିନ୍ତୁ କାଳ ତାହା ପରିପୂର୍ଣ୍ଣ କରି ଦେଲା ନାହିଁ । ଅକାଳରେ ସୁଖର ସ୍ୱପ୍ନ ଭାଙ୍ଗିଦେଲା ।

ଯେଉଁ ମାଳତୀ ନାନା ସ୍ୱର୍ଣ୍ଣାଲଙ୍କାରରେ ଭୂଷିତା ହୋଇ ଦିନାଙ୍କ ପୂର୍ବରୁ ଗୃହ ଉଜ୍ଜ୍ୱଳ କରି ରଖିଥିଲା ଆଜି ସେ ନିରାଭରଣା । କୃଷ୍ଣମାଧବଙ୍କ ଚକ୍ଷୁରେ ଏହି ନିରାଭରଣା ଯୁବତୀମୂର୍ତ୍ତି ଏକ ଅନାବଶ୍ୟକ ବିଭୀଷିକାର ସୃଷ୍ଟି କଲା । ବିଧାତାର କଠୋର ବଜ୍ରମୁ ପରି ତାହା ପ୍ରତିଭାତ ହୋଇଉଠିଲା । ଭିତରେ ଭିତରେ କୃଷ୍ଣମାଧବ ଚମକି ଉଠିଲେ । ହଠାତ୍ ଯେପରି କିଏ ଅନ୍ଧାରରୁ ତୋଳି ଆଣି ଏହି

ନିରାଭରଣା ସଦ୍ୟ ବିଧବାର ସ୍ଥାନରେ ବସାଇ ଦେଲା ଆଉ ଏକ ଯୁବତୀମୂର୍ତ୍ତି । ମାତ୍ର ସେ ବିଧବା ନୁହେଁ,—ସଧବା ମଧ୍ୟ ନୁହେଁ । କିନ୍ତୁ କୃଷ୍ଣମାଧବ ତାକୁ ପ୍ରଥମ ଦୃଷ୍ଟିରେ ଦେଖି ଅନାଦର କରି, ଘୃଣା କରି, ନା, ନା, ବିଦ୍ରୂପ କରି ଭାବିଥିଲେ ବିଧବା । ଆଜି ହୁଏତ ବିଧାତା ତାଙ୍କ ଉପରେ ଦାଉ ସାଧିଲା,—ତାଙ୍କର ଅନ୍ତରରେ ତାଙ୍କର ହୃଦୟକୁ ଚିରକାଳ ପାଇଁ ଆହତ କରି ରଖିଲା । କୃଷ୍ଣମାଧବଙ୍କ ବିଦୀର୍ଣ୍ଣବକ୍ଷରୁ ତପ୍ତ ନିଃଶ୍ୱାସ ମୁହୁର୍ମୁହୁ ନିର୍ଗତ ହେଲା ।

କନ୍ୟାର ଶ୍ୱଶୁର-ଶାଶୁ କେହୁ ଜୀବିତ ନ ଥିଲେ । ଶ୍ୱଶୁରକୁଳର ଅନ୍ୟାନ୍ୟ ଅନେକ ଲୋକ ଥିଲେ ସତ, ମାତ୍ର ସେମାନଙ୍କର ଥିବା ନ ଥିବା ସମାନ । ସମସ୍ତେ ଭିନ୍ନ ଭିନ୍ନ, କାହାର ସଙ୍ଗରେ କାହାର ବିଶେଷ କିଛି ସମ୍ପର୍କ ନ ଥାଏ, କେହୁ କାହାର ଦୁଃଖସୁଖରେ ବିଶେଷ ଭାଗୀ ହୁଅନ୍ତି ନାହିଁ । ନିଜେ ନିଜର ସଂସାରଟି ନେଇ ବ୍ୟସ୍ତ ଥାନ୍ତି । କୃଷ୍ଣମାଧବ ସେମାନଙ୍କୁ କେବଳ ଦୁଃସମ୍ବାଦଟା ଅନ୍ୟଦ୍ୱାରା ଜଣାଇଦେଇ ମାଳତୀକୁ ସଙ୍ଗରେ ନେଇ ଫେରିଆସିଲେ ।

କିନ୍ତୁ ଘରେ ଗୋଡ଼ ଦେବାପୂର୍ବରୁ କୃଷ୍ଣମାଧବ ଅନ୍ୟ ଏକ ଦୁଃସମ୍ବାଦ ଶ୍ରବଣ କଲେ । ଆଠ ଦିନ ହେଲା ସ୍ୱାଧିପ୍ରିୟାଙ୍କର ଭୟଙ୍କର ଜ୍ୱର । ମୁହୂର୍ତ୍ତେ ହେଲେ ଜ୍ୱରର ବିରାମ ନାହିଁ । ଡାକ୍ତରବାବୁଙ୍କ ମତରେ ଜ୍ୱରଟା ଟାଇଫଏଡ଼ । ଯଥେଷ୍ଟ ଚିକିତ୍ସା ହେଉଛି । ସହରର ଖ୍ୟାତନାମା ଡାକ୍ତର ସୁରେନ୍ଦ୍ରବାବୁ ଦିନରେ ତିନି ଥର ଯାଇଆସି ରୋଗୀର ତତ୍ତ୍ୱ ନେଉଛନ୍ତି । ସାଧୁ ଗୁମାସ୍ତାଙ୍କୁ ଖାଇବା ପିଇବାକୁ ଫୁରସତ ନାହିଁ । ଘରର ସମସ୍ତେ ପ୍ରାଣପଣରେ ଶୁଶ୍ରୂଷାରେ ଲାଗିଛନ୍ତି । ମାତ୍ର ସମସ୍ତେ ଆତଙ୍କିତ । କାହାର ମନରେ ସୁଖ ନାହିଁ, ଶାନ୍ତି ନାହିଁ । ସମସ୍ତ ଚିକିତ୍ସା, ସମସ୍ତ ଶୁଶ୍ରୂଷା ସତ୍ତ୍ୱେ ରୋଗର ଉପଶମ ଦେଖାଯାଉ ନାହିଁ ।

ବରଂ ଦୁଇ ଦନ ହେଲା ଅତଲିକ୍ତ ହୋଇ ଉଠିଛି । ରୋଗିଣୀର ଚେତା ରହୁ ନାହିଁ,—ମଧ୍ୟେ ମଧ୍ୟେ ପ୍ରଳାପ ହେଉଛି ।

ଗୋଟାଏ ଗୁଳ୍ମାନ୍ତର ବପଦ ପରେ ଆଉ ଗୋଟାଏ ଗୁଳ୍ମାନ୍ତର ବପଦ । ଖବରଟା ଶୁଣି କୃଷ୍ଣମାଧବ କିଛି ସମୟ ଗୁମ୍ ହୋଇ ରହିଗଲେ । ପରେ ଦୀର୍ଘ ନିଃଶ୍ୱାସ ପକାଇ କହିଲେ—"ହେଉ, ବାବା ମଦନମୋହନ, ଯାହା ଇଚ୍ଛା ତୁମର ।" ଏହା କହି ସେ ଧୀରେ ଧୀରେ ମାଳତୀକୁ ନେଇ ଉଆସ ଭିତରକୁ ପ୍ରବେଶ କଲେ । ସିଧ-ସଳଖ ଗଲେ ସ୍ୱଧାପ୍ରିୟାଙ୍କ କକ୍ଷ ଅଭିମୁଖରେ । ସେତେବେଳେ ସ୍ୱଧାପ୍ରିୟା ଅଚେତ । ମୁହଁରୁ ପ୍ରଳାପ ଛୁଟୁଛି—"ସୁଷମା, ସୁଷମା, ତୋତେ କେତେ କହିବ ମ । ପାନ ଖଣ୍ଡେ ଖା ।" ସେ ପ୍ରଳାପ-ଉକ୍ତି ଶୁଣି କୃଷ୍ଣମାଧବଙ୍କ ହୃତପିଣ୍ଡଟା ଛନ୍ ଛନ୍ ହୋଇ ତେଇଁ ଉଠିଲା ।

ହତଭମ୍ବ ହୋଇ କୃଷ୍ଣମାଧବ ସମସ୍ତ ଅବସ୍ଥା ଲକ୍ଷ୍ୟ କଲେ । ଅନତିବିଳମ୍ବେ ଡାକ୍ତର ବାବୁଙ୍କୁ ଡକେଇ ତାଙ୍କଠାରୁ ସମସ୍ତ କଥା ବୁଝିଲେ । ସୁରେନ୍ଦ୍ର ବାବୁଙ୍କର ଗୋଟାଏ ମହାନ୍ ଗୁଣ ଏହି ଯେ ସେ ନିଜର ସୁନ୍ଦର ବ୍ୟବହାର ଓ ସୁମିଷ୍ଟ କଥାବାର୍ତ୍ତା ଦ୍ୱାରା ରୋଗୀ ବା ରୋଗୀର ଆତ୍ମୀୟ ସ୍ୱଜନଙ୍କ ଉଦ୍‌ବେଗ ଏକ ମୁହୂର୍ତ୍ତରେ ଦୂର କରି ପାରନ୍ତି । ଅନ୍ୟାନ୍ୟ ଅନେକ ଡାକ୍ତର ତା ପାରନ୍ତି ନାହିଁ । ଖୁବ୍ ବଡ଼ ବଡ଼ ଡାକ୍ତରଙ୍କଠାରେ ମଧ୍ୟ ଏ ଗୁଣର ଅଭାବ ଦେଖାଯାଏ । ରୋଗତତ୍ତ୍ୱ ସଙ୍ଗେ ସଙ୍ଗେ ସେ ମନସ୍ତତ୍ତ୍ୱଟା ପ୍ରତି ସମାନ ଦୃଷ୍ଟିଦେଇ ଚାଲନ୍ତି । ଫଳତଃ ତାଙ୍କ ଚିକିତ୍ସାରେ ରୋଗୀ ବା ରୋଗୀର କୁଟୁମ୍ବଙ୍କ ଲୋକ ହତାଶ ହୁଏ ନାହିଁ । ସୁରେନ୍ଦ୍ର ବାବୁଙ୍କ ସହିତ କଥାବାର୍ତ୍ତା କରି କୃଷ୍ଣମାଧବ ଆଶ୍ୱସ୍ତ ହେଲେ ।

ରୋଗିଣୀର ଚିକିତ୍ସା ଅତିଶୀଘ୍ରଗତିରେ ଚାଲିଲା । କୃଷ୍ଣମାଧବ ସ୍ୱଧାପ୍ରିୟାଙ୍କ ଶଯ୍ୟାପାର୍ଶ୍ୱରେ ଦିନରାତି ଜଗି ବସି ଶୁଶ୍ରୂଷାର ତତ୍ତ୍ୱାବଧାନ

କଲେ,—ନିଜେ ମଧ୍ୟ ଶୁଶ୍ରୂଷା କରିବାକୁ ଲାଗିଲେ । କନ୍ୟା ମାଳତୀ ମଧ୍ୟ କଠୋର କଠୋର ଭାଗ୍ୟକୁ ଆଦରି, ନିଜର ବର୍ଣ୍ଣନୀୟ ଦୁଃଖ-ଯାତନାର ଭାର ଧୈର୍ଯ୍ୟସହକାରେ ବହନ କରି, ପିତୃସେବାର ପରିଚର୍ଯ୍ୟାରେ ଲାଗିଲା । ଭଗବାନ୍ ଯେ ଶରଦନ ପାଇଁ ଏ ଦୁଃଖ ଯାତନାର ଭାର ତା ଉପରେ ଲଦିଦେଇଛନ୍ତି ! ତାହା ନୀରବରେ ନିର୍ଦ୍ୱନ୍ଦ୍ୱରେ ବହନ କରି ଏ ଜନ୍ମଟା ପାଇଁ କାଳାତିପାତ କରିବା ଛଡ଼ା ହିନ୍ଦୁରମଣୀର ଆଉ ଉପାୟାନ୍ତର କଣ ଅଛି ? ପତିହୀନା ସାଧ୍ୱୀ ପତିକୁ ସାରା ଜୀବନରେ ଭୁଲି ପାରେ ନାହିଁ । ମାତ୍ର ଦାରୁଣ ସ୍ମୃତିର ଚିତାଗ୍ନି ହୃଦୟରେ ଜାଳିରଖି ତାକୁ ସଂସାର ମରୁରେ ବୁଲିବାକୁ ପଡ଼େ ।

ସାଧ୍ୱୀପ୍ରିୟାଙ୍କ ଶୁଶ୍ରୂଷାରେ ନିଯୁକ୍ତ ରହି ମାଳତୀ ଅନେକ ସମୟରେ ରୋଗିଣୀର ପ୍ରଳାପ ଶୁଣେ । ସେ ପ୍ରଳାପ ମୁଖ୍ୟତଃ ସୁଷମାକୁ ଲକ୍ଷ୍ୟ କରି । ମାତ୍ର ସୁଷମା କିଏ, ମାଳତୀ ବୁଝିପାରେ ନାହିଁ । ତାହା ଜାଣିବାକୁ ତାର ଅନ୍ତରାତ୍ମା କୌତୂହଳୀ ହୁଏ । ହେଲେ ମଧ୍ୟ, କୌତୂହଳ ନିବୃତ୍ତିର ସେ ଚେଷ୍ଟା କରେ ନାହିଁ; କରିବାର ସମୟ ନୁହେଁ । ସାଧ୍ୱୀପ୍ରିୟାଙ୍କ ଲାଗି କାହାରି ମନରେ ସୁଖ ନ ଥାଏ । ସୁତରାଂ ସେ କଥା କାହାରିକୁ ପଚାରିବାକୁ ସେ ସାହସ କରେ ନାହିଁ ।

କିଛିଦିନ ପରେ ସାଧ୍ୱୀପ୍ରିୟାଙ୍କ ଶରୀରର ଅବସ୍ଥା ଟିକିଏ ଭଲ ଆଡ଼କୁ ଗତି କଲା । ପ୍ରଳାପଟା କମି ଆସିଲା । ଜ୍ୱରର ପ୍ରକୋପ ଲୋପ ପାଇବା ସଙ୍ଗେ ସଙ୍ଗେ ପ୍ରଳାପ ମଧ୍ୟ ଲୋପ ପାଇଲା । ସଂଜ୍ଞାହୀନତା ଆଉ ଦେଖା ଗଲା ନାହିଁ । ସାଧ୍ୱୀପ୍ରିୟା ଟିକିଏ ଟିକିଏ କଥାବାର୍ତ୍ତା କହିବାକୁ ଆରମ୍ଭ କଲେ । ଦିନେ ସାଧ୍ୱୀପ୍ରିୟା କୃଷ୍ଣମାଧବଙ୍କୁ ପଚାରିଲେ —ହରି କିଛି ଚିଠିପତ୍ର ଦେଇ ନାହିଁ କୃଷ୍ଣ ? କୃଷ୍ଣମାଧବ ରୋଗିଣୀଙ୍କୁ ପ୍ରବୋଧ ଦେବାପାଇଁ କହିଲେ—ହଁ, ଦେଇଛି ।

ରାଧାପ୍ରିୟା ପଚାରିଲେ—ଭଲ ଅଛୁ ?

କୃଷ୍ଣମାଧବ—ହଁ ।

ରାଧାପ୍ରିୟା—ମୋ ଦେହ ପା କଥା ଶୁଣି ନାହଁ ?

କୃଷ୍ଣମାଧବ—ନା ।

ରାଧାପ୍ରିୟା—ତୁ ବୋଧହୁଏ ଲେଖି ନାହୁଁ ?

କୃଷ୍ଣମାଧବ—ନା, ତୁର ମନରେ କଷ୍ଟ ହେବ ବୋଲି ସାବ ଲେଖି ନାହିଁ । କାଲିଆଉଙ୍କୁ ଲେଖିବି ।

ରାଧାପ୍ରିୟା ମୃଣ୍ଡ ହଲେଇ କହିଲେ—ନା, ନା, କାହିଁକି ଲେଖିବୁ । ମୁଁ ତ ଭଲ ହୋଇ ଆସିଲଣି । ଆଉ ଲେଖିବାର କି ଦରକାର । ତା ପରେ ସେ ଟିକିଏ ଚୁପ୍ ରହି ପୁନର୍ବାର ପଚାରିଲେ —ତୁର ଆଉ କିଛି କଥା ଲେଖି ନାହିଁ କୃଷ୍ଣ ?

କୃଷ୍ଣମାଧବ ଏହି "ଆଉ କିଛି"ର ଅର୍ଥ ସ୍ପଷ୍ଟ ବୁଝିପାରିଲେ । ମୁହଁ ତଳକୁ କରି କହିଲେ—ନା ।

ରାଧାପ୍ରିୟା ଦୀର୍ଘ ନିଃଶ୍ୱାସଟିଏ ମୋଚନକରି କଡ଼ ଲେଉଟାଇ ଶୋଇବାକୁ ଚେଷ୍ଟାକଲେ । ଏହି ସମୟରେ କୃଷ୍ଣମାଧବ ମାଳତୀର ଦୁର୍ଭାଗ୍ୟର କଥା ରାଧାପ୍ରିୟାଙ୍କୁ ଶୁଣାଇଲେ । ସେ ତାହା ଶୁଣି କୋହ ସମ୍ଭାଳି ପାରିଲେ ନାହିଁ, ଅଜସ୍ର ଲୋତକଧାରାରେ ବେଗଶଯ୍ୟା ଭିଜାଇଦେଲେ । ଏଥିରେ ରୋଗିଣୀର ଅନିଷ୍ଟ ହେବାର ଆଶଙ୍କା କରି କୃଷ୍ଣମାଧବ ତାଙ୍କୁ ବହୁତ ପ୍ରବୋଧ ଦେଇ ସ୍ଥିରକଲେ । ରାଧାପ୍ରିୟା ମାଳତୀକୁ ପାଖକୁ ଡାକିଲେ । ଦୁଇ ହାତରେ ତାକୁ କୁଣ୍ଢାଇଧରି କହିଲେ—ହଉ ମା, ଭଗବାନଙ୍କର ଯାହା ଇଚ୍ଛା । ମୋ କୋଳକୁ ଯଦି ଫେରେଇ ଦେଲେ, ଦେଉନ୍ତୁ ।

ସେହିଦିନ କୃଷ୍ଣମାଧବ ମଯୂଆ କରି ରଖିଲେ ଯେ, ଯେତେ ବଡ଼ ବଡ଼ ନାମଜାଦା ଇଂରେଜୀ କାଗଜ ଭାରତରେ ଚଳୁଛି ସବୁଥିରେ

ସେ ନିଜ ନାମରେ ଏହି ମର୍ମରେ ଗୋଟାଏ ନୋଟିସ ଦେଇଦେବେ; ଯଥା:—"ଚୌଧୁରୀ ଶ୍ରୀ ହରଶଙ୍କର ପ୍ରହରାଜ, ବାଲେଶ୍ୱରର ବିଶ୍ୱାତ ପ୍ରହରାଜଇଷ୍ଟେଟର ଖ୍ୟାତନାମା ଉଚ୍ଚଶିକ୍ଷିତ ତରୁଣ ଜମିଦାର— ବୟସ ୨୮ ବର୍ଷ, ଉଜ୍ଜ୍ୱଳ ଗୌରବର୍ଣ୍ଣ ( ସବୁବେଳେ ସ୍ୱଦେଶୀ ବସ୍ତ୍ର ପରିଧାନ କରନ୍ତି )—ବର୍ଷାଧିକ କାଳ ହେଲା ଗୃହ ତ୍ୟାଗକରି ଯାଇଛନ୍ତି । ତାଙ୍କର ଅବସ୍ଥିତି ସମ୍ବନ୍ଧରେ କେହି ସଠିକ ସମ୍ବାଦ ଦେଇପାରିଲେ ହଜାରେ ଏକଟଙ୍କା ପୁରସ୍କାର ପାଇବେ ।"

ଏହିପରି ନୋଟିସଟା ଲେଖି କୃଷ୍ଣମାଧବ ତାର ଅନେକଗୁଡ଼ାଏ ନକଲ ଟାଇପ କରିବାକୁ ଆଦେଶ ଦେଲେ । ଟାଇପ୍ ହୋଇ ଆସିଲା ପରେ କୃଷ୍ଣମାଧବ ସେ ଗୁଡ଼ାକ ଆଗରେ ଥୋଇ ଅନେକ କ୍ଷଣ ଧ୍ୟାନମଗ୍ନ ହୋଇ ଭଲ କେତେ କଣ ଭାବିଲେ । ତା ପରେ ସେ ହଠାତ୍ ସେ ଗୁଡ଼ାକ ଗୋଟାଏ ଅଲଗା ପାଣ୍ଡୁଆରେ ପକାଇଦେଇ କହିଲେ—ନା, ଥାଉ, ଏ ମସୁଧାଟା ଭଲ ନୁହେଁ । ପରଦିନ ସେ ଆଉ ଏକ ମସୁଧା କଲେ । ସେଟା ତାଙ୍କୁ ଖୁବ୍ ଭଲ ବୋଧହେଲା । ତଦନୁଯାୟୀ ସେ ଆଉ ଗୋଟାଏ ନୋଟିସ ସମ୍ବାଦ ଆକାରରେ ଖବରକାଗଜମାନଙ୍କରେ ଛପିବାପାଇଁ ପଠାଇଦେଲେ । ତାହାର ମର୍ମ ଏହିପରି—"ଖ୍ୟାତନାମା ଜମିଦାର ଚୌଧୁରୀ ଶ୍ରୀ ହରଶଙ୍କର ପ୍ରହରାଜଙ୍କର ଧର୍ମପତ୍ନୀ କନକା ଶ୍ରୀମତୀ ସୁଧାଶ୍ରି ଦେବୀ ବହୁଦିନାବଧି କଠିନ ଟାଇଫଏଡ଼ ରୋଗରେ ଶଯ୍ୟାଗତା । ଦୁଇଦିନ ତଳେ ତାଙ୍କର ଅବସ୍ଥା ଆଶଙ୍କାଜନକ ହୋଇ ଉଠିଥିଲା । ବର୍ତ୍ତମାନ ଅପେକ୍ଷାକୃତ ଭଲ । ତଥାପି ଆଶଙ୍କାର କାରଣ ରହିଛି ।"

ପଇସା ଖର୍ଚ୍ଚକରି, ବଡ଼ ବଡ଼ ଅକ୍ଷରରେ ଚମକପ୍ରଦ ଶିରୋନାମା ଦେଇ, କୃଷ୍ଣମାଧବ ଏ ସମ୍ବାଦଟା ଖବରକାଗଜମାନଙ୍କରେ ଛପାଇ ଦେଲେ ।

---

# ଚତୁର୍ବିଂଶ ପରିଚ୍ଛେଦ

ସୁଧାପ୍ରିୟା ଅନେକ ପରିମାଣରେ ସୁସ୍ଥ ହୋଇ ଆସିଲେଣି, କିନ୍ତୁ ଏ ପର୍ଯ୍ୟନ୍ତ ସାଧାରଣ ପଥ୍ୟ ଧର ନାହାନ୍ତି । ବାଡ଼ିଘର ସାମାନ୍ୟ ଟିକିଏ ବୁଲିବୁଲି ପାରୁଛନ୍ତି । ବେଶି ଚଲାବୁଲା କରିବାକୁ ଡାକ୍ତର ବାବୁଙ୍କର ମନା । ଘରର ସମସ୍ତେ ଟିକିଏ ଆଶ୍ୱସ୍ତି ବୋଧ କରିବାକୁ ଆରମ୍ଭ କଲେଣି । ଆଉ ରାତଦିନ ଶୁଶ୍ରୂଷା କରିବାକୁ ପଡ଼ୁ ନାହିଁ । ଅଥାପି ଦୁଇ ତିନିଜଣ ପୋଇଲି ପରିବାରି ବରାବର ଜଗି ରହିଥାନ୍ତି । ମାଳତୀ ଅଧିକାଂଶ ସମୟରେ ସୁଧାପ୍ରିୟାଙ୍କ ନିକଟରେ ଥାଏ, ରାତିରେ ମଧ୍ୟ ତାଙ୍କରି ଘରେ ଶୁଏ । କୃଷ୍ଣମାଧବ ଦିନରେ ପ୍ରାୟ ଦୁଇ ତିନିଥର ଆସି ଭଗିନୀର ତତ୍ତ୍ୱ ନିଅନ୍ତି । ସୁଧାପ୍ରିୟା କହନ୍ତି କାହିଁକି ଅତି ବ୍ୟସ୍ତ ହେଉଛୁ କୃଷ୍ଣ ? ବଞ୍ଚିବାର କଥା ତ ହେଲା । ତୁମ୍ଭେମାନେ ତ ମୋତେ ମରିବାକୁ ଦେଲ ନାହିଁ । ହେଲେ, ମରିଥିଲେ ତରି ଯାଇଥାନ୍ତି ଭାଇ ! କୃଷ୍ଣମାଧବ ଏ କଥାର ଉତ୍ତର ଦିଅନ୍ତି ନାହିଁ ।

ସେ ଦିନ କୃଷ୍ଣମାଧବ ନିଜର ବୈଠକଖାନାରେ ବସି ଗୁଡ଼ୁଗୁଡ଼ୁ କରି ଗୁଡ଼ାଖୁ ଖାଉଛନ୍ତି ଏବଂ ଧୂଆଁ ଛାଡ଼ୁଛନ୍ତି । ମନେ ମନେ ହରି-ଶଙ୍କରଙ୍କ କଥା ଭାବୁଛନ୍ତି । ଖବରକାଗଜରେ ଯେଉଁ ସମ୍ବାଦଟା ସେ ଛାପି ଦେଇଛନ୍ତି ସେଟା କଣ ହରିର ଦୃଷ୍ଟିରେ ପଡ଼ ନାହିଁ ? କିଏ ଜାଣେ ? କିନ୍ତୁ ନ ପଡ଼ିବ ବା କାହିଁକି ? ହରି ତ ପ୍ରତିଦିନ ଖବର କାଗଜ ପଢ଼େ,— ନ ପଢ଼ିଲେ ବାୟା ହୋଇଯାଏ,—ସେଟା ତାର ଗୋଟାଏ ନିଶା । ନିଶ୍ଚୟ ପଢ଼ିଥିବ । କିନ୍ତୁ ଆଜଯାଏ ସେତ ଆସିଲା ନାହିଁ ! ମାଆର ସାଙ୍ଘାତିକ ଅସୁସ୍ଥତାର ଖବରଟାକୁ କଣ ସେ ଲଘୁ ଦୃଷ୍ଟିରେ ଦେଖିଲା ? ନା, ତା ତ ବିଶ୍ୱାସ ହେଉ ନାହିଁ ।

ନିର୍ଜନରେ ବସି ଏହାପର ଭାବୁଥିବା ସମୟରେ ମାଳତୀ ବହିଖଣ୍ଡିଏ ହାତରେ ଧରି ଧୀରେ ଧୀରେ ଆସି ଉପସ୍ଥିତ ହେଲା । କନ୍ୟାକୁ ଦେଖି କୃଷ୍ଣମାଧବ ପଚାରିଲେ—କି ଖବର ମା ?

ମାଳତୀ କହିଲା— କିଛି ନା ଦାଦା, ସବୁ ଭଲ, ତେବେ ଗୋଟାଏ କଥା ପଚାରିବାକୁ ଆସିଲି ।

କୃଷ୍ଣମାଧବ—କଣ ପଚାରିବୁ ପଚାରୁ ନାହୁଁ ମା ?

ମାଳତୀ—ପଚାରିଲେ କିଛି ମନେ କରିବ ନାହିଁ ଦାଦା ?

କୃଷ୍ଣମାଧବ ମାଳତୀର କଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ପିଲାଦିନରୁ ମାଳତୀକୁ ସେ ଯେତେ ଭଲ ପାଉଥିଲେ ଆଜି ତାର ଅକାଳ ବୈଧବ୍ୟରେ ତାହା ଶତଗୁଣିତ ହୋଇ ଉଠିଛି । ବିଧବା କନ୍ୟାଟିକୁ ଦେଖିଲେ ତାଙ୍କର ହୃଦୟରେ ସ୍ନେହର ବନ୍ୟା ଉଚ୍ଛୁଳି ଉଠେ । ହତଭାଗିନୀ ପ୍ରତି ଗଭୀର ସମବେଦନା ସେ ସ୍ନେହର ପ୍ଲାବନକୁ ପ୍ରବଳ କରିଦିଏ । ସେ ପୁଣି ତା'ର କଥା ଶୁଣି କଣ ଗୋଟାଏ ମନେ କରିବେ ! କୃଷ୍ଣମାଧବଙ୍କର ଏହା କଳ୍ପନାର ଅତୀତ । ସେ ସସ୍ନେହ ନୟନରେ କନ୍ୟାର ମୁହଁଟିକୁ ଚାହିଁ କହିଲେ,—କି କଥା ମା ? କାହିଁକି କଣ ମନେ କରିବ ?

ମାଳତୀ ହସି ହସି ପଚାରିଲା—ଦାଦା, ସତ କହୁଛ ? ମୋ ମୁଣ୍ଡ ଛୁଇଁ କହିଲ ।

କୃତ୍ରିମ କୋପର ଅଭିନୟ କରି କହିଲେ—ହୁର ପାଗଳୀ, ଝିଅ ଦିନେ ସେଇ ପିଲାଳିଆ କଥା, କଣ କହୁଛୁ କହ ତୋ କଥାଟା ନ ରହିଲେ ସିନା ଦୋଷ ଦବୁ ।

ମାଳତୀ—ତେବେ କହିବ ଦାଦା ?

କୃଷ୍ଣମାଧବ—ହଁ କହ ରେ ।

ମାଳତୀ ଧୀରେ ଧୀରେ କହିବାକୁ ଲଗିଲେ—ବାବା ମୁଁ ଯଦି ମନଇଚ୍ଛା ଖରଚ କରିବାକୁ ମାସରେ ପଚିଶଟା ଟଙ୍କା ମାଗେ ତମେ କଣ ଦବ ନାହିଁ ?

କୃଷ୍ଣମାଧବ ହସି ହସି ଉତ୍ତର ଦେଲେ—ଏଇ ସାମାନ୍ୟ କଥାଟା ପାଇଁ ଏତେ ଭୂମିକା । ଯା, ସେହି ହାତବାକ୍ସଟା ଫିଟେଇ ତୋର ଯେତେ ଦରକାର ନେଇ ଆ । ଆଉ ଏ ଗୁଡ଼ାକ ବି ଶୁଣି ରଖ୍ । ପଚିଶ ଟଙ୍କା ଛଡ଼ା ହରଶଙ୍କରର ତହବିଲରୁ ୫୦୦ ଟଙ୍କା ମାସରେ ନେଲେ ବି କେହି ପାଟି ଫିଟାଇବ ନାହିଁ,—ହରି ସେ ଭଲ ପିଲା ନୁହେଁ । ତାର ଗୋଟାଏ ବ୍ୟବସ୍ଥା ମୁଁ ସମସ୍ତ ଦେଖି କରିଦେବି ।

ଏହା କହି ସେ ଗୁଡ଼ାକ ଗୋଛାଏ ମାଳତୀ ଆଡ଼କୁ ଫୋପାଡ଼ି ଦେଲେ । ମାଳତୀ ତାହା ଫେରାଇ ଦେଇ କହିଲା—ନା ବାବା, ଗୁଡ଼ା ମୋର ଦରକାର ନାହିଁ । ମୁଁ ଖାଲି ସେତିକି ଜାଣିବାକୁ ଚାହିଁଥିଲି, ହେଲେ ଆଉ ଗୋଟାଏ କଥା ଅଛି ବାବା ।

କୃଷ୍ଣମାଧବ—ଆଉ କଣ ମା ?

ମାଳତୀ—ମୋର ଗୋଟାଏ ଭଉଣୀ ଅଛି ବାବା, ସେ ବି ବଡ଼ ଦୁଃଖିନୀ । ସେହି ଟଙ୍କାଟା ତାହାଙ୍କ ପାଖକୁ ମାସକୁ ମାସ ପଠାଇ ଦେବାକୁ ତମ ଗୋଡ଼ଧରି ଅନୁରୋଧ କରୁଛି । ମୋ ଅନୁରୋଧ କି ରଖିବ ନାହିଁ ବାବା ?

ଏହା କହି ମାଳତୀ କୃଷ୍ଣମାଧବଙ୍କ ପାଦ ଦୁଇଟି ଭିଡ଼ି ଧରିଲା । କୃଷ୍ଣମାଧବ କହିଲେ—ପାଗଳୀଟା, ପାଗଳୀଟା, ଛାଡ଼ ମା । ତୋ କଥା କୃଷ୍ଣମାଧବ କେବେ କାଟି ଦେଇଛି, ମାଳ ?

ମାଳତୀ—ନା, ବାବା, କେବେ କାଟି ଦେଇନାହଁ । ସେଥି-ପାଇଁ ତ ସାହସ କରି କହୁଛି, ତେବେ ଅଜଣାଙ୍କୁ ପଠେଇବ ?

କୃଷ୍ଣମାଧବ—ତୋ ନାମରେ ପଠେଇ ଦେ ମା । ମୁଁ ପଠେଇଲେ—

ମାଲତୀ ବାଧାଦେଇ କହିଲା—ନା, ବାବା, ମୋତେ ଯେ ସେ ଚହ୍ନେ ନାହିଁ ।

କୃଷ୍ଣମାଧବ ପରିହାସ ଛଳରେ କହିଲେ—ଭଉଣୀ ପୁଣି ଭଉଣୀକୁ ଚହ୍ନେ ନାହିଁ ? ଏଥା କେହି ବିଶ୍ୱାସ କରିପାରେ ମାଲ ?

ମାଲତୀ ଉତ୍ତର ଦେଲା—ଅଛା ନୁହେଁ ବାବା । ମୁଁ ଯେ ସୁଷମାକୁ କେବେ ଦେଖି ନାହିଁ ।

କୃଷ୍ଣମାଧବ ଗମ୍ଭୀର ହୋଇ ଉଠିଲେ । କହିଲେ—ମୁଁ ଯେ ତାର ଠିକଣା ଜାଣେ ନାହିଁ ମା । ତେବେ ସ୍ୱାମୀକୁ ପଚାରିବି—ସେ କାଳେ ଜାଣିଥିବ ।

ମାଲତୀ ତତ୍‌କ୍ଷଣାତ୍ ଜବାବ ଦେଲା—ନା, ବାବା, ଠିକଣା ମୁଁ ଜାଣେ । ଏହା କହି ସେ ହାତରେ ଧରିଥିବା ବହିଖଣ୍ଡି ଖୋଲି ପ୍ରଥମ ପୃଷ୍ଠାରେ ଲେଖା ହୋଇଥିବା ସୁଷମାର ନାମ ଓ ଠିକଣା ଦେଖାଇଦେଲା ।

କୃଷ୍ଣମାଧବ ବହି ଖଣ୍ଡି ନିଜ ହାତକୁ ନେଇ ଦେଖିଲେ । ଅତି ସୁନ୍ଦରାକ୍ଷରରେ, ବୋଧହୁଏ ସୁଷମାର ନିଜ ହସ୍ତରେ, ସୁଗୋଲ ଅକ୍ଷରରେ, ନାମ, ଗ୍ରାମ, ପୋଷ୍ଟଅଫିସ ଓ ଜିଲା ସମସ୍ତହିଁ ଲେଖା ଅଛି । କୃଷ୍ଣ-ମାଧବଙ୍କର ମନେ ପଡ଼ିଲା—ବୋଧହୁଏ ଦିନେ ସେହି ଠିକଣାରେ ସେ ହରିଶଙ୍କରଙ୍କ ନିକଟକୁ ଟଙ୍କା ପଠାଇ ଥିଲେ । ସିରସ୍ତାର କାଗଜ-ପତ୍ର ମଧ୍ୟରେ ତାହା ଅଦ୍ୟାବଧି ଥାଇପାରେ । ମାଲତୀର ମୁହଁକୁ ଅନାଇ ସେ ପଚାରିଲେ—ଏ ବହି ଖଣ୍ଡ ତୁ କେଉଁଠୁ ପାଇଲୁ ମାଲ ?

ମାଲତୀ ଉତ୍ତର ଦେଲା ଯେ, ସ୍ୱାମୀପ୍ରିୟାଙ୍କ ଘରେ ଯେଉଁ ଆଲମାରିଟା ଅଛି ତାହାର ଉପରେ ସେ ବହି ଖଣ୍ଡ ପଡ଼ିଥିଲା, ଆଲମାରି ଉପରଟା ଝାଡ଼ୁ ଝାଡ଼ୁ ସେ ଖଣ୍ଡ ସେ ପାଇଛି ।

କୃଷ୍ଣମାଧବ କହିଲେ—ଭଲ କଥା । ଟଙ୍କାଟା ଏହି ଠିକଣାରେ ପଠାଇ ଦେଇପାରୁ । କିନ୍ତୁ ମୋ ନାମରେ ପଠେଇବାଟା ଉଚିତ ହେବ ନାହିଁ ମା । ଗୋଟାଏ କାମ କର, ତୋହର ନାଁରେ ପଠେଇ ଦେ, ଆଉ ତୋର ହରଶଙ୍କର ଭାଇର ଅଦେଶ କ୍ରମେ ପଠେଇଲି, ବୋଲି ଲେଖି ଦେ ।

ମାଳତୀ ଉତ୍ତର ଦେଲା—ସେଇଟା କଣ ଭଲ ହେବ ବାବା ? ବରଂ ଅପରିଚିତ ହେଲେ ବି ନିଜ ନାମରେ ପଠାଯାଇ ପାରେ, କିନ୍ତୁ ହରିଭାଇଙ୍କ ନାଁରେ ପଠେଇବାକୁ ମନ ବଳୁ ନାହିଁ । ସେଥିରେ ସେ ହୁଏ ତ ଅଧିକ ଅପମାନିତ ବୋଧ କରିପାରେ ।

କୃଷ୍ଣମାଧବ କହିଲେ—ଆଉ ତ କିଛି ଉପାୟ ଦେଖୁ ନାହିଁ ମା । ତେବେ ଠିକଣାଟା ଲିଖି ଦେଇ ଥା ।

ମାଳତୀ ଠିକଣାଟା ଖଣ୍ଡିଏ କାଗଜରେ ଲିଖି କୃଷ୍ଣମାଧବଙ୍କ ହାତରେ ଦେଇ ଆସିଲା । କୃଷ୍ଣମାଧବ ତାହା ଖୁବ୍ ସାବଧାନରେ ରଖିଲେ ।

କଣ ଭାବି କି ଜାଣି କୃଷ୍ଣମାଧବ ସେଦିନ ମାଳତୀ ନାମରେ ଶଏ ଟଙ୍କା ସୁଷମା ନିକଟକୁ ମନିଅର୍ଡ଼ର କରି ପଠାଇ ଦେଲେ ଏବଂ ମାଳତୀକୁ ଡାକି କହିଲେ—ମା, ଶେଷରେ ତୋହର ନାଁରେ ପଠେଇ ଦେଲି ରେ । ମାଳତୀ ଅବାକ୍ ହୋଇ ରହିଲା । କୃଷ୍ଣମାଧବ କହିଲେ—ଯା'ଲୋ, କିଛି କ୍ଷତି ନାହିଁ ।

ହେଲେ, ମାଳତୀର କଥାଗୁଡ଼ାକ ତାଙ୍କ ମନରେ ଗୋଟାଏ ଗଭୀର ଦାଗ ରଖିଦେଇଗଲା । ଏଇ କେତେଟା ଦିନଭିତରେ ମାଳତୀ ସମସ୍ତ ଘଟଣାଟା ବୁଝିସାରିଛି । ସୁଷମା ପ୍ରତି ତାର ସହାନୁଭୂତି ଜାତ ହୋଇଛି । ନିଜର ଭଉଣୀ ପରି ସେ ତାକୁ ଜ୍ଞାନ କରିଛି । ନ ଦେଖିଥିଲେ ବି ସୁଷମାପ୍ରତି ତାର ସ୍ନେହମମତାର ସୁଧା ନିର୍ଝର ସ୍ୱତଃ

ପ୍ରଧାବତ ହୋଇ ପାରନ୍ତି । ତେବେ ଏହ ପରିବାର ମଧ୍ୟରେ ଧୂର୍ତ୍ତମାର ଶତ୍ରୁ କଏ ? ବୋଧହୁଏ ଜଣେ । ହୁଏ ସେ ଜଣକ ବ ତାର ଶତ୍ରୁ ନୁହେଁ । ଠିକ୍ ବୁଝିବାକୁ ଗଲେ, ତାର ଶତ୍ରୁ ମନୁଷ୍ୟ ରୂପଧାରୀ କେହି ନୁହେଁ । ତାହା ଏକ ଅତ ପ୍ରାଚୀନ ଜରାଜୀର୍ଣ୍ଣ ଅନୁଷ୍ଠାନ, କମ୍ବା ଅନୁଷ୍ଠାନ-ପ୍ରୀତ ପ୍ରାଚୀନତାର ମୋହ ବା ମୋହଜ ଭ୍ରାନ୍ତି ବୋଲି ମଧ୍ୟ ତାର ନାମ ଦଅଯାଇ ପାରେ । ଅନ୍ୟ କଥାରେ ତାହା ଦୁର୍ବଳତା ।

ହୃଷ୍ଟମାଧବ ଧଡ଼ଫଡ଼ି ଉଠିଲେ । ଡାକଲେ—ଗ୍ଧୁ । ଅଳ୍ପକ୍ଷଣରେ ଛାମୁରେ କଚେରୀଘର ଦାଣ୍ଡରେ ସନ୍ଧୁଙ୍କର ଶାଷ୍ଟାଙ୍ଗ ଅବସ୍ଥାନ । ହୃଷ୍ଟମାଧବ ହୁକୁମ ଦେଲେ—ଦଲଦାର ମିଆଁ ଦରବନ୍ଦାଜ, ପିଅଦା ହନୁମନ୍ତ ସିଂହ, ଗୁଜର ସର୍ଦ୍ଦାର ଦାରିକ, ସେପେୟା ନବଘନ ପଣ୍ଡା, ପାଇ ନୁତନ୍ତ୍ର ସଦାର୍ ଦେହେରୀଙ୍କୁ ଖବର ଦଅ ।

ମୋଫସଲ ଗସ୍ତକୁ ଗଲେ ହୃଷ୍ଟମାଧବଙ୍କର ଏହିପରି ସାଜସଜ୍ଜାର ଅୟୋଜନ ହୁଏ । ସୁତରାଂ ସଧୁନୁମାନ୍ତ୍ରା ଅନୁମାନ କରିନେଲେ—ମାମୁଁ ସାଆନ୍ତେ ମୋଫସଲ ଗସ୍ତରେ ବାହାରିବେ । ତଦନୁସାରେ ସେ ସମସ୍ତ ଆୟୋଜନ କରିବାରେ ଲାଗିଲେ ।

ଯିବା ପୂର୍ବରୁ ହୃଷ୍ଟମାଧବ ସୁଆଣିଙ୍କ ସଙ୍ଗେ ସାକ୍ଷାତ କରି ଦୁଇ ଗୁରିଦନ ଭିତରେ ଫେରି ଆସିବେ ବୋଲି କହିଗଲେ । ମାଳତୀ ଓ ସଧୁନୁମାନ୍ତ୍ରାଙ୍କୁ ମଧ୍ୟ ତାଙ୍କର ବିଶେଷ ତତ୍ତ୍ୱ ନେବାକୁ ଉପଦେଶ ଦେଇଗଲେ ।

କିଛି ସମୟ ପରେ ଦେହେରୀମାନେ ଫେରଆସି ଖବର ଦେଲେ ସାଆନ୍ତେ ରେଳଗାଡ଼ିରେ ବସି ହୋଇ ଦକ୍ଷିଣକୁ ଯାତ୍ରା କଲେ ।

---

# ପଞ୍ଚବିଂଶ ପରିଚ୍ଛେଦ

ଭଦ୍ରକ ଷ୍ଟେସନ । ଟ୍ରେନ ଛାଡ଼ିବାକୁ କିଛି ବିଳମ୍ବ ଅଛି, ମାତ୍ର ବେଶି ବିଳମ୍ବ ନାହିଁ । ଲୋକ ପ୍ଲାଟଫର୍ମରେ ଛିଡ଼ା ହୋଇଛି । ଛୋଟ ଷ୍ଟେସନ । ସେ ଦିନ ଅନେକ ଯାତ୍ରୀ । କିଏ ଟିକଟ କରିବାକୁ ବ୍ୟସ୍ତ, କିଏ ବା ଗାଡ଼ିରେ ଚଢ଼ିବାକୁ ବ୍ୟସ୍ତ । ଗୋଟିଏ କାମ ସମସ୍ତଙ୍କ ଷ୍ଟେସନରେ ଛିଡ଼ା ହୁଏ, ସେଥିପାଇଁ ବ୍ୟସ୍ତତା । କୃଷ୍ଣମାଧବ ସଦଳବଳେ ଅବତରଣ କଲେ ଏବଂ ଲୋକଗହଳି ଭିତର ଦେଇ ପ୍ଲାଟଫର୍ମ ଫାଟକ ପାଖକୁ ଗୁଞ୍ଜିଲେ । ଫାଟକ ପାଖରେ ଛିଡ଼ା ହୋଇ କିଏଜଣେ ଧଳା ଡ୍ରେସ ପିନ୍ଧା ବାବୁଟିଏ ଟିକଟ୍ ନେଉଥିଲେ । ଲୋକ ଦେଖି କାରବାର କରୁଥିଲେ । ମଧ୍ୟ ମଧ୍ୟ ଜଣେ ଅଧେ ଲୋକଙ୍କୁ ଅଟକାଇ ରଖି କିଛି ଅଣ୍ଟାଗୁଞ୍ଜା ନେଇ ଛାଡ଼ି ଦେଉଥିଲେ । କୃଷ୍ଣମାଧବ ଯେତେବେଳେ ଗେଟ୍ ପାଖରେ ପହଞ୍ଚିଲେ, ସେତେବେଳେ ଚେକିଙ୍ଗ ବାବୁଟି ଶଶୁଡ଼ବସ୍ତ୍ରଧାରୀ ମୁଣ୍ଡକେଶ ନମ୍ର କୌଶଳୀ ତରୁଣ ଭଦ୍ର-ସନ୍ତାନଠାରୁ ଟିକଟ ନେଉଥିଲେ । ପଛଆଡ଼ୁ କୃଷ୍ଣମାଧବ ଯାଇ ହାବୁଡ଼ି ଗଲେ । "ଏ କିଏ ରେ ! ହରି !" ବୋଲି ଚିତ୍କାର କରି କୃଷ୍ଣମାଧବ ଯୁବକଟିକୁ କୁଣ୍ଢାଇ ପକାଇଲେ । ଯୁବକ ତଟସ୍ଥ ହୋଇଗଲେ । ଏ ଯେ ମାଉଲ କୃଷ୍ଣମାଧବ ! ହରିଶଙ୍କର ପାଦତଳେ ମୁଣ୍ଡ ଲଗାଇ କରି ପ୍ରଣାମ ଅସ୍ତବ୍ୟସ୍ତ ହୋଇ ଉଠିଲେ । କିନ୍ତୁ ଗଳଦଶ୍ରୁନେତ୍ର ମାଉଲ କୃଷ୍ଣମାଧବଙ୍କ ଆଲିଙ୍ଗନ ପାଶରୁ ନିଜକୁ ମୁକ୍ତ କରିପାରିଲେ ନାହିଁ । କୃଷ୍ଣମାଧବ ଭଗିନେୟଙ୍କୁ ବାହୁପାଶରେ ଭିଡ଼ିଧରି ଛିଡ଼ା ହୋଇ ରହିଲେ । ନେତ୍ରଯୁଗଳରୁ ଝର ଝର ହୋଇ ଅଶ୍ରୁବିନ୍ଦୁ ଝରିବାକୁ ଲାଗିଲା । ଟିକଟ୍‌କଲେକ୍ଟର ଆଁ କରି ଅନେଇ ରହିଲେ । ଫାଟକ ପାଖରେ ଛିଡ଼ା ହୋଇଥିବା ଯାତ୍ରୀମାନେ କୌତୂହଳୀ ହୋଇ ଦୃଶ୍ୟଟା

ଦେଖିବାକୁ ଲଗିଲେ । ପ୍ରାୟ ପାଞ୍ଚ ମିନଟ୍ ଏହିପରି କଟିଗଲା । ଶେଷରେ ଟିକଟ୍‌କଲେକ୍ଟର ଅଯଥା ବିଳମ୍ବ ହେଉଥିବାର ଦେଖି ହାତଟା ପ୍ରସାରିତ କରି ଚିତ୍କାର କରି ଉଠିଲା—'ଟିକଟ୍ ଆପ୍ନା । ପହିଲେ ଟିକଟ୍ ଦେନା ଚାହି, ପିଛେ ଓ ସବ୍‌ବାତ ।' କୃଷ୍ଣମାଧବ ଶୁଣିଲେ ନାହିଁ । ପୂର୍ବପରି ସ୍ଥିର ଅଚଞ୍ଚଳ କରି ରହିଲେ । ଟିକଟ୍‌ବାବୁ ଅତ୍ୟୁଚ୍ଚ ସ୍ୱରରେ ଚିତ୍କାର କଲା—'ଟିକଟ୍ ଦେ ଦୋ ବାବୁ ଟିକଟ୍ ଦେ ଦୋ ।' କୃଷ୍ଣମାଧବ ବିରକ୍ତ ହୋଇ କହିଲେ—'ଅରେ ଠାଏର୍ ହୋ, ଟିକଟ୍ ଟିକଟ୍ ମତ ଚିଲାଓ, ଅଭି ଟିକଟ୍ ନେହି ଦେଗା ।' ଟିକଟ୍‌ବାବୁଟି ହାବା ହୋଇ ରହିଗଲା । ପରେ କୃଷ୍ଣମାଧବ ପ୍ରକୃତିସ୍ଥ ହୋଇ ଅନେକଗୁଡ଼ାଏ ଟିକଟ୍ ପକେଟରୁ ବାହାର କରି ତା ହାତକୁ ବଢ଼େଇ ଦେଲେ । ତା ପରେ ହରିଶଙ୍କରକୁ ଟାଣି ନେଇ ସେ ଫାଟକ ପାର ହେଲେ । କୃଷ୍ଣମାଧବ ଅନ୍ତର୍ହିତ ହେଲ ପରେ ଫାଟକବାବୁଟି ମୁରୁକି ମୁରୁକି ହସି ସମ୍ମୁଖସ୍ଥ ଯାତ୍ରୀମାନଙ୍କୁ ଲକ୍ଷ୍ୟ କରି ଦକ୍ଷିଣୀ ମନ୍ତବ୍ୟ ବାଢ଼ିଲା—ବାବୁ 'ନିଶା' ପଡ଼ିଗଲା ପରି ! ଓହୋ ! ଓକଡେ ନିଶା !

ଅକସ୍ମାତ ଅପ୍ରତ୍ୟାଶିତଭାବରେ କୃଷ୍ଣମାଧବଙ୍କ ସହିତ ହରିଶଙ୍କରଙ୍କର ସାକ୍ଷାତ ଘଟିଗଲା । ହରିଶଙ୍କର କୀମ୍ବା କୃଷ୍ଣମାଧବ କେହି ଏହା ସ୍ୱପ୍ନରେ ଭାବି ନ ଥିଲେ । ହରିଶଙ୍କର ସୁଷମାକୁ ସଙ୍ଗରେ ନେଇ ଯେଉଁ ଦିନ ଘରୁ ବିଦାହୋଇ ଚାଲି ଆସିଥିଲେ ଏବଂ ସୁଷମାକୁ ସ୍ୱଗୃହରେ ପୁନଃ ସଂସ୍ଥାପିତ କରି ଫେରିଯାଇଥିଲେ, ସେହି ଦିନରୁ ତାଙ୍କର କୌଣସି ଖବର କେହି ପାଇ ନ ଥିଲେ । ଅଭିମାନୀ ଯୁବକ ଆଉ ଘରକୁ ଫେରିବେ ନାହିଁ, ସମ୍ପତ୍ତି ଦାବି କରିବେ ନାହିଁ, ନିଜେ ଉପାର୍ଜ୍ଜନ କରି ଚଳିବେ ଇତ୍ୟାଦି ନାନାପ୍ରକାର କଳ୍ପନା ସେ ଦିନ ମନରେ ସ୍ଥାନ ପାଇଥିଲା । ଭୁବନେଶ୍ୱରରୁ କଟକକୁ ଫେରି ଆସି ସେ ଦିନଟା ସେ ନିତାନ୍ତ ଅବ୍ୟବସ୍ଥିତଭାବରେ କଟାଇଥିଲେ ।

ପରଦିନ ସେ ଭାରତଲକ୍ଷ୍ମୀ କମ୍ପାନୀଠାରୁ ପ୍ରେରିତ ଏକହଜାର ଟଙ୍କା ଲଭ୍ୟାଂଶର ଚେକ୍ ପାଇଥିଲେ ଏବଂ ସେ ଟଙ୍କାଟା କଣ କରିବେ ତାହାହିଁ ଭାବୁଥିଲେ । ମନେ ମନେ ଯୁକ୍ତି କରୁଥିଲେ—ଏ ଟଙ୍କାଟା ବି ତ ନିଜର ଉପାର୍ଜିତ ସମ୍ପତ୍ତି ନୁହେଁ । ଏଟା ସେହି ପିତୃପିତାମହଙ୍କ ଉପାର୍ଜିତ ଜମିଦାରୀର ଟଙ୍କା । ତେବେ ସେହି ଜମିଦାରୀ ତହବିଲକୁ ଫେରିଯିବା ଉଚିତ । ମାତୁଳ କୃଷ୍ଣମାଧବଙ୍କ ନାମରେ ଚେକ୍‌ଟା ପଠାଇଦେଲେ ହେବ । କିନ୍ତୁ ସେଟା କି ଭଲ କଥା ହେବ ? କୃଷ୍ଣମାଧବଙ୍କୁ ଗୋଟାଏ ମାଡ଼ ମାରିଲା ପରି ନ ହେବ କି ? ନା, ଥାଉ । ତେବେ ଚେକ୍‌ଟା ଭଙ୍ଗେଇ ସୁଷ୍ମି ନାମରେ ବେଙ୍କରେ ଜମା ରଖିଦେଲେ ତ ମନ୍ଦ ହୁଅନ୍ତା ନାହିଁ ।

ଏହିପରି ନିର୍ଜନରେ ବସି ଭାବୁଥିବା ସମୟରେ ହରଶଙ୍କରଙ୍କର ଜଣେ ବନ୍ଧୁ ଆସି ଉପସ୍ଥିତ ହେଲେ । କହିଲେ—ଏତେ ଧ୍ୟାନମଗ୍ନ ହୋଇ ସତ୍ୟଯୁଗର ମହର୍ଷି ପରି କଣ ଭାବୁଛ ହେ ! ଥରେ ସମାଧିଟା ଭାଙ୍ଗି ଏ ବାସ୍ତବ ଜଗତ୍‌ଟା ଉପରେ ଦୃଷ୍ଟି ପକାଅ । ବନ୍ଧୁ ଏହା କହି ଦୋ ଦୋ ହୋଇ ହସିବାକୁ ଲାଗିଲେ । ସେ ହାସ୍ୟରୋଳରେ ବାସ୍ତବିକ ହରଶଙ୍କରଙ୍କର ଧ୍ୟାନ ଭାଙ୍ଗିଗଲା । ସେ ଉତ୍ତର ଦେଲେ—ଆରେ ! ବ୍ରଜମୋହନ ବାବୁ ଯେ ! ଆଜି କଣ ଖବର ?

ବ୍ରଜମୋହନ କହିଲେ—ଖବର ସାଙ୍ଘାତିକ । ଏକାବେଳେକେ ଶ୍ରୀ ମମତାଜ୍‌ମହଲଙ୍କ ସମାଧି ମନ୍ଦିର ଅଭିମୁଖେ ଯାତ୍ରା ।

"ସତେ ? ତାଜ୍‌ମହଲ ଦେଖିବାକୁ ବାହାରିଛ ନା କଣ ?"

'ନିଶ୍ଚୟ ।' ଯାହାଜାହାନ ମିଞାଁଙ୍କର ଏତେ ବଡ଼ କୀର୍ତ୍ତିଟା ଯଦି ବ୍ରଜମୋହନ ମଙ୍ଗରାଜ ନ ଦେଖନ୍ତି, ତେବେ କାହା ଲାଗି ସେଟାର ସୃଷ୍ଟି ଶୁଣେ ?

ହରିଶଙ୍କର ପଚାରିଲେ—ନା, ଥଟ୍ଟା ନୁହେଁ । ତେବେ ଅଗ୍ରା ଯାଉଛ ?

ବ୍ରଜମୋହନ କହିଲେ—ଥରେ ତ କହିଲି । ସେଥିରେ ପୁଣି ସନ୍ଦେହ କାହିଁକି ? ହଁ ହେ,—ଚାଲ ନା—ଟ୍ରିପ୍‌ଟାଏ ମାରିଦେଇ ଆସିବା । ତମ ପରି ମୋର ଯଦି ଟଙ୍କାର ଗଛ ଥାନ୍ତା, ଭାଇ, ପ୍ରତି ମାସରେ ଥରେ ପୃଥିବୀଟା ପ୍ରଦକ୍ଷିଣ ନ କରି ଛାଡ଼ନ୍ତି ନାହିଁ । କଣ କହୁଛ—ଯିବାକୁ ? ଯିବ ? ଯିବାକୁ ହିଁ ହେବ ହେ । ଉଠ ।

ଏହା କହି ବ୍ରଜମୋହନ ଏକାବେଳେକେ ଟାଣିବାକୁ ଆରମ୍ଭ କଲେ । ହରିଶଙ୍କର କହିଲେ—ଆରେ ଧୈର୍ଯ୍ୟ ଧର । ଯିବା ବୋଇଲେ କଣ ଏଇ ମୁହୂର୍ତ୍ତରେ ?

ବ୍ରଜମୋହନ ଉତ୍ତର ଦେଲେ—ହଁ, ଏହି ମୁହୂର୍ତ୍ତରେ । ରେଡ଼ି ହୋଇପଡ଼ । ଖାଇବା ପିଇବା ଆଜି ଆମ ଘରେ, ଉଠ ।

ବ୍ରଜମୋହନ ଅସ୍ଥିର କରି ପକାଇଲେ । ହରିଶଙ୍କର ଭାବିଲେ—ପ୍ରସ୍ତାବଟା ମନ୍ଦ ନୁହେଁ । ଥରେ ବୁଲି ଆସିଲେ ଭଲ ହୁଅନ୍ତା । ଏହା ଭାବି ଆଉ ଆପତ୍ତି ନ କରି ଉଠିଲେ । ବ୍ରଜମୋହନ ଖୁସି ହୋଇ କହିଲେ—ବ୍ରେଭୋ ! ବ୍ରେଭୋ !

ସେହି ଦିନ ହରିଶଙ୍କର ଆଗ୍ରାଯାତ୍ରୀ ହୋଇ ବାହାରି ପଡ଼ିଲେ । ମୁକ୍ତି ନାମରେ ଟଙ୍କାଟା ଉପାର୍ଜିତ୍ ହେବା ପ୍ରସ୍ତାବ ଶୂନ୍ୟେ ଶୂନ୍ୟେ ଉଡ଼ିଗଲା । ଚେକ୍‌ଟା ବେଙ୍କରେ ଭଙ୍ଗାଇ ନେଇ ସେ ଚାଲିଲେ ।

ବର୍ଷାଧିକ କାଳ ହରିଶଙ୍କର ଅନେକ ସ୍ଥାନରେ ବୁଲି ଅନେକ ଜିନିଷ ଦେଖିଲେ । ସମସ୍ତ ଉତ୍ତର-ଭାରତଟା ତନ୍ନ ତନ୍ନ କରି ବୁଲି ଆସିଲେ । ବିଦେଶ ଭ୍ରମଣ ସାଙ୍ଗ ହେଲା । ଅବଶେଷରେ ବ୍ରଜମୋହନଙ୍କ ସହିତ ଫେରିଲେ । କିନ୍ତୁ ବ୍ରଜମୋହନ ବାଟରେ ଅଟକି

ଗଲେ । ବନ୍ଧୁବିଶେଷଙ୍କ ସନ୍ନିବନ୍ଧ ଅନୁରୋଧ ଏଡ଼ି ନ ପାରି ସେ ହାବଡ଼ାରେ ରହିଗଲେ । ବ୍ରଜମୋହନ ମଧ୍ୟ ଧନୀ ସନ୍ତାନ । ହରଶଙ୍କରଙ୍କ ପରି ବଡ଼ଲୋକ ନ ହେଲେ ମଧ୍ୟ ଘରେ ଯଥେଷ୍ଟ ଟଙ୍କା ଅଛି । ପୁଣି ଧନବାନ୍ ଶ୍ୱଶୁରଙ୍କର ଏକମାତ୍ର କୁଳନନ୍ଦନୀଙ୍କୁ ବିବାହ କରି ମନ ଇଚ୍ଛା ଖର୍ଚ୍ଚ କରିବାକୁ ଟଙ୍କା ପାଇଥାନ୍ତି । ସୁତରାଂ ଚିନ୍ତା କଣ ?

ଯାହାହେଉ ବ୍ରଜମୋହନ ହାବଡ଼ାରେ ରହିଗଲେ । ହରଶଙ୍କର ଏକାକୀ ଫେରିଲେ । ଗାଡ଼ି ବାଲେଶ୍ୱର ଷ୍ଟେସନରେ ପହଞ୍ଚିଲା ପରେ ଟିକିଏ ଓହ୍ଲାଇପଡ଼ି ମାଆଙ୍କ ଶ୍ରୀଚରଣ ଦର୍ଶନ କରି ଯିବାକୁ ଇଚ୍ଛା ହେଲା । ସଙ୍ଗେ ସଙ୍ଗେ ମନେ ପଡ଼ିଗଲା ସୁଷମାର କଥା । ସୁଷମାକୁ ଘରେ ପହଞ୍ଚାଇ ଦେଇ, ମନିବେଗ୍‌ଟାରୁ ପାଞ୍ଚଟି ମାତ୍ର ଟଙ୍କା କାଢ଼ି ନେଇ, ସମଗ୍ର ବେଗ୍‌ଟା ତାହାର ହାତରେ ଦେଇ ଯାଇଥିଲେ । ସେଥିରେ କେତେ ଟଙ୍କା ଥିଲା, ତାହା ଗଣି ଦେଖି ନାହାନ୍ତି । ବୋଧହୁଏ ତିନି ଶହ, ସାଢ଼େ ତିନି ଶହ ଭିତରେ ହେବ । କିନ୍ତୁ ବର୍ଷେ କେତେ ମାସ ହୋଇଗଲା । ଯାଉ ଟଙ୍କା ପଇସା କିଛି ପଠା ହୋଇ ନାହିଁ । ହରଶଙ୍କର ଭାବିଲେ—ସୁଷମାର ହାତରୁ ଯଦି ପଇସା କଉଡ଼ି ସରି ଯାଇଥାଏ ? ତାର ଅବସ୍ଥା ଅଜି କଣ ହୋଇ ନ ଥିବ ! ଭିକାରୁଣୀ ହୋଇ ସୁଢ଼ି ଯଜ ଦ୍ୱାରେ ଦ୍ୱାରେ ବୁଲି ନ ଥିବ କି ? ଭାବୁ ନ ଥିବ କି—ପ୍ରେମାସ୍ପଦ ବୋଲି ଯେ ଦିନେ ଅନିର୍ବଚନୀୟ ଆସ୍ଫାଳନ କରି ଛିନ୍ନମୂଳ ଦୁନ୍ଦୁଭି ବଜେଇ ବୁଲୁଥିଲା, ସେ ଏତେ ନିଷ୍ଠୁରଣି, ଏତେ ପାଷାଣ ! ଦୟାମାୟା ବୋଲି କୌଣସି ବାଷ୍ପର ସେ ଧାର ଧାରେ ନାହିଁ । ହାୟ ରେ ଛଳନାମୟୀ ନିଷ୍ଠୁର କପଟ !

ହରଶଙ୍କରଙ୍କ ଅନ୍ତରାତ୍ମା ନିଜ କୃତ ଘୃଣାରେ ପରିପୂର୍ଣ୍ଣ ହୋଇ ଉଠିଲା । ବାହାରେ ବୃଷ୍ଟିର ଅନ୍ଧକାର ତାଙ୍କୁ କଟମଟ କରି ଚାହିଁ ଥାନ୍ତ

ଉପହାପ କରିବାକୁ ଲଗିଲ । ହରଶଙ୍କର ଲୁମ୍ ହୋଇ ବସି ରହିଲେ, ଗାଡ଼ିରୁ ଓହ୍ଲାଇ ପାରିଲେ ନାହିଁ । ପ୍ରସ୍ଥାନ ଘଣ୍ଟା ବାଜିଲା—ଗାଡ଼ି ସିଟି ଦେଲା—ଶେଷରେ ଝମ୍ ଝମ୍ ଦମ୍ ଦମ୍ ହୋଇ ଚାଲିବାକୁ ଆରମ୍ଭ କଲା । ହରଶଙ୍କର ସେହିପରି ବସିରହିଲେ । କିଛିକ୍ଷଣ ପରେ ପୁଣି ଭାବିଲେ—ବୋଧହୁଏ ସୁଷିର ଅବସ୍ଥା ଏତେ ଗୁରୁତର ହୋଇ ନ ଥିବ । ଦୁଇଟା ପେଟ ତ ? ମାସରେ କେତେ ଖରଚ କି ? ବୋଧହୁଏ ହାତରେ କିଛି ଥିବ । କିନ୍ତୁ ନିଶ୍ଚୟ ଶେଷ ହେବା ଉପରେ ହେବଣି ତା ପରେ ସୁଷିର ଉପାୟ ?

ହରଶଙ୍କର ଧଡ଼ପଡ଼ି ଉଠିଲେ । ସୁଟ୍‌କେସଟା ଖୋଲି ଦେଖିଲେ, ଟଙ୍କା ଶହେ ପାଞ୍ଚ ପା ଭିତରେ ଅଛି । ଇଚ୍ଛା ହେଲା—ଖୁବ୍ ଜୋରରେ ପିଙ୍ଗି ଦିଅନ୍ତେ,—ଠିକ୍ ସୁଷିର କୋଳରେ ଯାଇ ଝଣ୍‌ଝାଣ୍ ହୋଇ ପଡ଼ନ୍ତା । ହାୟ ହାୟ, ସୁଷି ଏତେ ନିକଟରେ ନୁହେଁ । ହରିଶଙ୍କର ଭାବିଲେ—ନା, କଟକରେ ପହଞ୍ଚି ତାଙ୍କର ପ୍ରଥମ କାର୍ଯ୍ୟ ହେବ, ସମସ୍ତ ଟଙ୍କା ସୁଷି ନାମରେ ଟେଲିଗ୍ରାମ ମଣିଅର୍ଡ଼ରରେ ପଠେଇ ଦେବା ।

ଗାଡ଼ି ଚାଲିବାକୁ ଲାଗିଲା । ଷ୍ଟେସନ ପରେ ଷ୍ଟେସନ ଗଲା । ମହାନଦୀର ପୋଲ ପଡ଼ିଲା । ବି, ଏନ୍, ଆର ଗାଡ଼ି ବୀରଦର୍ପରେ ସିଂହନାଦ କରି ଚାଲିଲା,—ଝମ୍ ଝମ୍—ଝମାଝମ୍, ଝମ୍ ଝମ୍—ଝମାଝମ୍, ଶେଷରେ କଟକ ଷ୍ଟେସନ ହାବୁଡ଼ିଲା । "କଟକ୍—କଟକ୍",—"ଗୁ—ଗରମ ଗୁ—ଗରମ୍", "ପାନ୍ ବିଡ଼ି ସିଗ୍ରେଟ୍"—ନାନା ଶ୍ରାବ୍ୟ ଅଶ୍ରାବ୍ୟ ଆବାଜ୍ ହେଲା । ହରିଶଙ୍କର ଉଠିଲେ; କିନ୍ତୁ କଣ ମନକୁ ଆସିଲା କି ଜାଣି, ପୁଣି ବସିପଡ଼ିଲେ । ଓହ୍ଲାଇବି ବି ହଲିଲେ ନାହିଁ । ଗାଡ଼ି ଚାଲିଲା, କଟକ ଷ୍ଟେସନରେ ଓହ୍ଲାଇବା ହେଲା ନାହିଁ, କିମ୍ବା "ପ୍ରଥମ କାର୍ଯ୍ୟ"ଟା ମଧ୍ୟ କରାଗଲା ନାହିଁ ।

ଶେଷରେ ଗାଡ଼ି ଆସି ଭୁବନେଶ୍ୱର ଷ୍ଟେସନରେ ଠିଆ ହେଲା। ହରିଶଙ୍କର ସୁଟ୍‌କେସ୍ ଖଣ୍ଡି ହାତରେ ଧରି ବାହାରି ପଡ଼ିଲେ। ତା ପରେ ଯାହା ଯାହା ହେଲା, ସବୁ କହୁଛି।

ପ୍ଲାଟ୍‌ଫର୍ମର ବାହାରକୁ ଆସି କୃଷ୍ଣମାଧବ ଡାକିଲେ—ଦଲ୍‌ଦାର ମିଆଁ!

ଦାଲ୍‌ଦାର ଜବାବ୍ ଦେଲା—ହଜୁର୍।

କୃଷ୍ଣମାଧବ—କାକଟପୁର ଯାନେକାଲିୟେ ଏକ୍ ଅଚ୍ଛା ଗୋରୁକା ଗାଡ଼ି ଲ୍ୟାଓ ତ। ହନୁମନ୍ତ ସିଂ କୋ ବି ଲେ ଯାଓ।

ଜିଆଦା ଓ ବରକନ୍ଦାଜ ଧାଇଁଲେ। ସିନ୍ଦୁର ଫାଟିଆସିଲା। କ୍ରମେ କ୍ରମେ ଆକାଶ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହେବାକୁ ଲାଗିଲା। ଷ୍ଟେସନ ଆଗରେ ଯେଉଁ ଗଛଗୁଡ଼ାକ ଅନ୍ଧାରରେ ଭୂତ ଭଳି ଛିଡ଼ା ହୋଇଥିଲେ, ସେଗୁଡ଼ାକ ଦିବାଲୋକରେ ଦେହ ମାଜି ସୁନ୍ଦର ଚେହେରା ଫୁଟାଇବାକୁ ଚେଷ୍ଟା କଲେ। ବୃକ୍ଷାଶ୍ରୟୀ ପକ୍ଷୀଗୁଡ଼ାକ ଖାଦ୍ୟାନ୍ୱେଷଣରେ ଏଣେ ତେଣେ ଉଡ଼ିଯିବାର ଉଦ୍‌ଯୋଗ କଲେ। ଦଲ୍‌ଦାର ମିଆଁ ଓ ହନୁମନ୍ତ ସିଂ ଗାଡ଼ି ଗୋଟାଏ ଯୋଗାଡ଼ କରି ଆଣିଲେ। କୃଷ୍ଣମାଧବ ସମସ୍ତଙ୍କୁ କହିଲେ—ଚାଲ। ହରିଶଙ୍କର ଛିଡ଼ା ହୋଇ ରହିଲେ। କୃଷ୍ଣମାଧବ ହାତ ଧରି ଟାଣି ଆଣିଲେ, କହିଲେ— "ଗାଡ଼ିରେ ବସ, କାକଟପୁର ଯିବାକୁ ହେବ।" ହରିଶଙ୍କର ବାଧ୍ୟ ହୋଇ ବସିଲେ; କୃଷ୍ଣମାଧବ ମଧ୍ୟ ବସିଲେ। ଗାଡ଼ି ଚାଲିଲା।

ଏହି କାକଟପୁରହିଁ ଗୁପ୍ତମାର ଗ୍ରାମ।

---

# ଷଡ଼୍‌ବିଂଶ ପରିଚ୍ଛେଦ

ବର୍ତ୍ତମାନ ସୁଷମାର ବିଚିତ୍ର ଜୀବନ ଇତିହାସର ଆଉ ଗୋଟିଏ ଅଧ୍ୟାୟର କଥା କହିବି । ଜୟକୃଷ୍ଣ ସାଙ୍ଗରେ କଥାବାର୍ତ୍ତା କରି ସେଦିନ ଶମ୍ଭୁନାଥ ଶତପଥୀ ସ୍ୱଗୃହକୁ ଗଲେ । ପରଦିନ ତାଙ୍କୁ ଆଉ ଜୟକୃଷ୍ଣ ସହିତ ପୁନରାଲାପ କରିବାପାଇଁ ଆସିବାକୁ ପଡ଼ିଲା ନାହିଁ । ଜୟକୃଷ୍ଣ ନିଜେ ଯାଇ ଶମ୍ଭୁନାଥଙ୍କୁ ନିଜର ସିଦ୍ଧାନ୍ତଟା ଜଣାଇ ଆସିଲା । ଶମ୍ଭୁ ମନେ ମନେ ବଡ଼ ଅହ୍ଲାଦିତ ହେଲେ । ସେହି ମୁହୂର୍ତ୍ତରୁ ସେ କାମରେ ଲାଗିପଡ଼ିଲେ । ଯେଉଁ "ଲାଏକୀପାତ୍ର"ଟିର ସୂଚନା ସେ ପୂର୍ବରୁ ଦେଇଥିଲେ, ଅନତିବିଳମ୍ବେ ଯାଇ ତାର ଦ୍ୱାରସ୍ଥ ହେଲେ ଏବଂ କେତେ କଷ୍ଟରେ ଯେ ସେ ଏକ ପରମସୁନ୍ଦରୀ ସର୍ବସୁଲକ୍ଷଣବତୀ ସତ୍ପାତ୍ରୀର ଯୋଗାଡ଼ କରିଛନ୍ତି ତାହା ବିଶଦଭାବରେ ବଖାଣି ଗଲେ । ପାତ୍ରୀର ଏକମାତ୍ର ସ୍ଥବିର ସେହି ଭ୍ରାତୃଶିରୋମଣିର ପ୍ରସଙ୍ଗ ମଧ୍ୟ ଉତ୍ଥାପନ କରି ଖୁବ୍ ଜୋରଦେଇ କହିଲେ—"କିନ୍ତୁ ଦେଖ ବାବା ! ଏ ସହଜ ପାତ୍ରୀ ନୁହେଁ, ଜଣେ ଲମ୍ପଟର ହାତରୁ ତାକୁ ଏକପ୍ରକାର ଝାମ୍ପ ମାରି ଛଡ଼ାଇ ଆଣିବାକୁ ହେଉଛି । ସେତିକ କରିବାକୁ ନାକେ-ଦମ୍ ହେବାକୁ ପଡ଼ୁଛି । ବହୁତ ଟଙ୍କାର ଲୋଭ ଦେଖାଇ ଭାଇଟାକୁ ବଶ କରି କାମ ହାସଲ କରା ହୋଇଛି । ପାଞ୍ଚଶହ ଟଙ୍କାରୁ କାନ୍ତିଟାଏ ବି ଛାଡ଼ିବାକୁ ସେ ନାରାଜ । ହେଲେ, ପାତ୍ରୀ ଭଳି ପାତ୍ରୀଟିଏ ଏଣ୍ଟା । ସାକ୍ଷାତ୍ ଅପ୍ସରୀ ! ରୂପ ଦେଖି ଲୋକ ଚମକି ପଡ଼ିବ, ରଜାଘର ରାଣୀ ହେବାର ଯୋଗ୍ୟ । ଯଦି ଚାହିଁ, ଦେଖେଇ ଦେଇପାରେଁ ।

ଶମ୍ଭୁନାଥଙ୍କର ଲାଏକୀ ପାତ୍ରଟିଏ କାମୁକ ଧରଣର । ସପତ୍ନୀନା ସ୍ତ୍ରୀଟିଏ ବି ବିଦ୍ୟମାନ । କିନ୍ତୁ ସେତିକରେ ତାଙ୍କର ମନଃପୂତ ନୁହେଁ । ବିଶେଷତଃ ସ୍ତ୍ରୀର ବୟସ ବେଶୀ ହେବା ସଙ୍ଗେ ସଙ୍ଗେ ରୂପକାନ୍ତି

ମଧ୍ୟ ଖସିପଡ଼ୁଛି । ଅନେକ ସମୟରେ ସ୍ୱାମୀ ସ୍ତ୍ରୀ ଦୁଇ ପ୍ରାଣୀଙ୍କର ଖଟ୍ ଖଟ୍ ଲାଗେ । ସୁତରାଂ ଆଉ ଗୋଟିଏ ସ୍ତ୍ରୀ ଲୋଡ଼ା । ସେଥିପାଇଁ ସୁନ୍ଦରୀ ଯୁବତୀ ହେବା ଦରକାର । ଶମ୍ଭୁପଥୀଙ୍କୁ ସେପରି ଗୋଟିଏ ପାତ୍ରୀ ଅନୁସନ୍ଧାନ କରି ଦେଖିବାକୁ ସେ ଥରେ ଅଧେ କହିଛନ୍ତି । ଉପଯୁକ୍ତ ପାତ୍ରୀ ହେଲେ ସେ ଟଙ୍କା ଦେବାକୁ ପ୍ରସ୍ତୁତ । ଟଙ୍କା ମଧ୍ୟ ମହାଜନପ୍ରସାଦରୁ ସିନ୍ଦୁକରେ ଯଥେଷ୍ଟ ଅଛି ।

ଶମ୍ଭୁନାଥଙ୍କ କଥା ଶୁଣି ମହାଜନେ ଆନନ୍ଦିତ ହେଲେ । ମାତ୍ର ତାଙ୍କର ଠିକଏ ପାତ୍ରୀ ଦେଖିବାକୁ ଇଚ୍ଛା । ଏତେ ଗୁଡ଼ାଏ ଟଙ୍କା ଖର୍ଚ୍ଚ କରି ବାହା ହେବେ, କାଲେ ପରେ ପସ୍ତେଇବାକୁ ପଡ଼ିବ, ସୁତରାଂ ଦେଖି ଶୁଣି ମନରୁ ସନ୍ଦେହଟା ପୋଛି ଦେଇଥିବା ଭଲ । ଶମ୍ଭୁନାଥ ତ ତାହାହିଁ ପ୍ରସ୍ତାବ କରିସାରିଥିଲେ । ସେ କହିଲେ— ବହୁତ ଆଚ୍ଛା । ପରଦିନ ଜୟକୃଷ୍ଣଙ୍କୁ ସମସ୍ତ କଥା ଜଣାଇ ବ୍ୟବସ୍ଥା କରି ଦେଲେ । ମହାଜନଙ୍କୁ ସଙ୍ଗରେ ନେଇ ଜୟକୃଷ୍ଣଙ୍କୁ ଖୋଜିବା ବାହାନାରେ ଗୃହ ମଧ୍ୟରେ ପ୍ରବେଶ କରି ଶମ୍ଭୁନାଥ ସରୁଗଳାରେ ଡାକିଲେ—"ମୋ ମା ସୁଷମା ରାଣୀ କୁଆଡ଼େ ରେ ?" ଜୟକୃଷ୍ଣ ପୂର୍ବ ଇଙ୍ଗିତ କ୍ରମେ ଘରେ ଅନୁପସ୍ଥିତ ଥିଲା । ସୁଷମା ତାହାର ଅସ୍ପ ଜବାବ୍ ଦେଲା—"ଜଇଭାଇ ନାହାନ୍ତି ।" ଶମ୍ଭୁନାଥ ପାର୍ଶ୍ୱବର୍ତ୍ତୀ ମହାଜନଙ୍କ ଦେହରେ ବଢ଼ିଆଙ୍ଗୁଳି ଚୁଳିଦେଲେ । ସଙ୍ଗେ ସଙ୍ଗେ ଦୁଇଟା ପିପାସିତ ଚକ୍ଷୁ ଯେପରି ସୁଷମାର ରୂପମାଧୁରୀ ଶୋଷିନେବାକୁ ଆରମ୍ଭ କରି ଦେଲା । ସୁଷମା ଗୋଟାଏ ନିତାନ୍ତ ଅପରିଚିତ ଲୋକକୁ ସମ୍ମୁଖରେ ଦେଖି କ୍ଷଣକେ ମଧ୍ୟରେ ପଳାଇଗଲା । ଲୋକଟାର ନିର୍ଲ୍ଲଜ୍ଜ ଚାହାଣି ତାକୁ ଭଲ ଲାଗିଲା ନାହିଁ । ମନେ ମନେ କହିଲା—ଏଟା କିଏ ମ, ନ କହି ନ ପୋଛି ଘରକୁ ପଶି ଆସୁଛି !

ମହାଜନେ ସୁଷମାର ରୂପଲାବଣ୍ୟ ଦେଖି ଭାରି ଖୁସିହୋଇ ହେଲେ । ସାକ୍ଷାତ୍ ଅପ୍‌ସରୀ ବୋଲି ଶମ୍ଭୁନାଥ ଯେ ବର୍ଣ୍ଣନା କରି-ଥିଲେ, ଠିକ୍ ଅକ୍ଷରେ ଅକ୍ଷରେ ମିଳିଗଲା । ଅତଶୀଘ୍ର ସେ ବିବାହ କରିବା ପାଇଁ ଅଭିଳାଷ ପ୍ରକାଶ କଲେ । "ଭଠା କନ୍ୟା" ସ୍ୱରୂପ ପାର୍ବତୀକୁ ନେଇ ନିଜ ଗୃହରେ ବିଭା ହେବାକୁ ମନସ୍ଥ କଲେ ଓ ଶମ୍ଭୁନାଥଙ୍କୁ ତାହାହିଁ ଜଣାଇ ଦେଲେ । କନ୍ୟାପକ୍ଷର ସେଥିରେ ଗୋଟାଏ କାଣି କଉଡ଼ି ପର୍ଯ୍ୟନ୍ତ ଖର୍ଚ୍ଚ ହେବ ନାହିଁ ବୋଲି ଲୋଭ ଦେଖାଇଲେ । ଶମ୍ଭୁନାଥଙ୍କ ମୁଖରୁ ଜୟକୃଷ୍ଣ ଏହା ଶୁଣି ପରମ ଆପ୍ୟାୟିତ ହେଲା । ଭାବିଲା—ଖେକଠୋକ ଚାରି ଶହ ଟଙ୍କାଟି ଏଥର ମୁଠା ଭିତରେ । ପାଠକ ପାଠିକା ଏହି ହିସାବରେ ଗୋଳମାଳ ହେଲା ବୋଲି ମନେ କରିବେ ନାହିଁ; ଏହି ଚାରି ଶହ ସଙ୍ଗେ ଶମ୍ଭୁନାଥଙ୍କର ଭିତରି ପାଞ୍ଚ ଶହେ ଟଙ୍କା ଯୋଗ କରି ଦେଖିଲେ ଠିକ୍ ପାଞ୍ଚଶ ଆସିଯିବ ।

ଜବାବ୍ ଦିଆ ହୋଇଗଲା । ଜୟକୃଷ୍ଣ ପରମ ଆନନ୍ଦରେ ଘରେ ଆସି ସେ ଖବର ଦେଲା । ଦାଉଜମାକୁ ଡାକି କହିଲା—ବୁଝିଲ ନା ଦାଉଜମା, କଥାବାର୍ତ୍ତା ଛିଣ୍ଡିଗଲା । ଓଃ, ଏତେ ଦିନେ ମୁଣ୍ଡରୁ ଗୋଟାଏ ବୋଝ ଓହ୍ଲାଇ ଗଲା ଯାଃ ! ଦିନ ରାତି ମୋତେ ଦୁଶ୍ଚି-ନ୍ତାସ ପରି ମାଡ଼ି ବସିଥିଲା । ଏଥର ଏକପ୍ରକାର ଖଲାସ । ବାପ୍ରାଘର ଦିନବାର ସବୁ ଧାର୍ଯ୍ୟ ହୋଇଗଲା । ଭଠା କନ୍ୟା, କିଛି ଦେବାଲି ଝିଙ୍ଗ୍‌ଟ ନାହିଁ । ଏ ପିଠିରୁ କିଛି ଖରଚ ନାହିଁ, ସବୁ ଖର୍ଚ୍ଚ ସେ ପକ୍ଷର । ହେଲେ, ଖର୍ଚ୍ଚ କରିବାକୁ ସେ ପକ୍ଷର ଡର ନାହିଁ । ବର ବଡ଼ଲୋକ, ନାମ ଗୋବର୍ଦ୍ଧନ ମହାନାଏକ । ଟଙ୍କା ପଇସା ଗଦ୍ ଗଦ୍ ହଉଛି, ମହାଜନି କାରବାର, ଲକ୍ଷ୍ମୀଠାକୁରାଣୀ ଘରେ ବନ୍ଧା । ସବୁ ଅଡ଼କୁ ଚାହିଁ ଦେଖିଲେ ସୁବିଧା । ସୁନ୍ଦେଇର ଭାଗ୍ୟ ଭଲ, ଫାଙ୍କାପଛ

ପ୍ରସନ୍ନ । ଉଜା ଘରେ ଯାଇ ରାଣୀ ହୋଇ ବସିଯିବ, ପୋଇଲ୍ଲି ପରିବାରୀ ଲାଗିବେ,—କେତେ ଲୋକ ଅଣ୍ଟାକୁ ଅବଧାନ ହେବେ । ଏତେ ବଡ଼ ଘର, ଏଡ଼େ ବଡ଼ ପାଟ ଭାଗ୍ୟକୁ ଜୁଟିଯିବ ବୋଲି ମୁଁ ଭାବି ନ ଥିଲି । ତେବେ କଣ କି, ବାଉଳୀମା, ଅସଲ ନସିବ୍ । ନସିବ୍ ଫିଟିଲେ ଫକୀର ବାଦସା । କହନ୍ତି ପରା—"ନସିବ୍ କ୍ୟା ନ କରେ କାମ୍, ଅ ବେ ଅନନ୍ତା, ଯା ବେ ଅନନ୍ତା, ବାବୁ ଅନନ୍ତ ରାମ । ତାର ଅର୍ଥ ବୁଝିଲୁ ନା ? ବୋଇଲା—ତୋତେ ଆଜ ଡାକୁଛନ୍ତି 'ଅନନ୍ତା', କହୁଛନ୍ତି—'ଅନନ୍ତା ଆବେ, ଅନନ୍ତା ଯା ବେ'; କାଲି ତୋ ନସିବ୍ ଖୋଲିଗଲା, ଲୋକେ ଆଉ ତୋତେ ସେପରି କହିବେ ? ଏତେ ଗୁଡ଼ ତାଙ୍କର ଆଉ ହବ ? ତୋ ପାଖରେ ନେଫିଡ଼ ହେବେ, ହାତ ସଲମ୍ ବଜେଇବେ, କହିବେ—ହୋ ଅନନ୍ତରାମ ବାବୁ ! ହେ ସାଆନ୍ତେ ! ହେ ମଣିମା ! ଶୁଣି ଅଣ୍ଟା ହେଉନ୍ତୁ, ଶୁଣି ଅଣ୍ଟା ହେଉନ୍ତୁ । ଏଣିକି କହି ପୋଷା କୁକୁର ପରି ତୋ ପଛେ ପଛେ ବୁଲିବେ । ଏ ସବୁ ନସିବ୍‌ର କାମ୍ । କହନ୍ତି—"ଶୁଣ ରେ ମାଲି, ଜଡ଼ କପାଳ ।" ଝିଅଟାର କପାଳରେ ଅଛି—ସେ ରାଣୀ ହବ । ତୁ ବନ୍ଦ କରି ପାରିବୁ, ନା ମୁଁ ପାରିବି । ହବଇ ହବ, ନ ହେଇ ଯିବ କୁଆଡ଼େ ? ବିଧାତା ପ୍ରସନ୍ନ ହେଲେ ସବୁ ହୁଏ । କହନ୍ତି—"ଖୋଦା ପରମ ଦୟାଲୁ, ଅଭି ଦେତା ନେହି, ଯବ୍ ଦେଗା, ଛପର ଫାଡ଼୍‌କେ ଦେଗା ।" ତେବେ ବୁଝିଲୁ ନା ବାଉଳୀମା ! ଗୋଟାଏ କଥା । ତୁମି ଯେତେ-ବେଳେ ରାଣୀ ହୋଇ ବସିଥିବ, ଗୁଡ଼ାଏ ପୋଇଲି ପରିବାରୀ ଲାଗିଥିବେ, ସେତେବେଳେ ତୋତେ ପଚାରିଲେ ସିନା ହୁଏ ! ତା ନ କରି ଯଦି ମୁଣ୍ଡ ଘୁଞ୍ଚାଣି ଛାଡ଼ି କହେ—"ଆଲୋ ଭିକାରୁଣୀ ଟା, ତୁ କିଆଁ ଏ ଦୁଆର ମାଡ଼ିଲୁ ଲୋ, ତୋତେ କିଏ ଏଠିକି ଆସିବାକୁ କହିଲା ଲୋ ? ନିକାଲ୍, ନିକାଲ୍, ଦୂର୍ ହ ।" ତା ହେଲେ,—

"ସବୁ ସୁଖ ସରିଗଲା ମୁରଲୀ—ଦଇବରେ!" ଏହା କହି ଜୟକୃଷ୍ଣ ଅଙ୍ଗ ଦୋହଲାଇ, ଗୀତ ଗାଇ, ହୋ ହୋ ହୋଇ ହସିବାକୁ ଲାଗିଲା।

ଜୟକୃଷ୍ଣ ଏକ ନିଃଶ୍ୱାସରେ କହିଯିବାକୁ ଲାଗିଲା। ପାଟିରେ ବାନ୍ଧୁଣି ବାଜିଲା ନାହିଁ। ପ୍ରାଣ ତାର ଫୁଲି ଉଠୁଛି, ଆନନ୍ଦର ଲହରୀ ତୋ ତୋ ହୋଇ ତେଉ ମାରୁଛି। ତା କଥାରେ କେହି କାନ ଦେଉ ବା ନ ଦେଉ ସେ ପୁରାଣପନ୍ଥୀ ପରି ଗାଇଯିବାକୁ ଲାଗିଲା। ବାଉଳିମା ଖାଲି ପାଟିଟା ଆଁ କରି ରହିଥାଏ। ଜୟକୃଷ୍ଣ ଭାବିଲା— ମାଇକିନିଆଟା ତା କଥାଗୁଡ଼ାକ ଖାଲି ଗିଳିଯାଉଛି,—ଭାରି ସୁଆଦୁ ଲାଗୁଛି। କିନ୍ତୁ ବାଉଳିମାକୁ କଥାଗୁଡ଼ାକ ବିଷ ପରି ବୋଧ ହେଉଥିଲା,—ତାକୁ ଖାଲି ଅଙ୍କା କରି ଦେଉଥିଲା। ଅବଶ୍ୟ ସୁଷମା ବଳିୟସୀ ହୋଇ ବସିବ—ଏ ଶବଟା ମନୋରମ। କିନ୍ତୁ ଏଥିରେ ସତ୍ୟ କେତେ, ମିଥ୍ୟା କେତେ, କିଏ ଜାଣେ? ଅପିମାଖିଆର କଥାରେ ବିଶ୍ୱାସ କଣ? ଅପୁନିଶା ତ କମ୍ ନୁହେଁ! ତାହାର ବୁକ୍ସରେ ଚନ୍ଦ୍ର କହି ଯାଉଥିବ?

ବାଉଳିମାର ମନରେ ଘୋର ସନ୍ଦେହର ଛାୟାପାତ ହେଲା। ଟିକିଏ ଭୀତ ସଞ୍ଚାର ମଧ୍ୟ ହେଲା। କିନ୍ତୁ ସେ କିଛି ନ କହି ଖାଲି ଶୁଣିଯିବାକୁ ଲାଗିଲା। ଜୟକୃଷ୍ଣର ହାସ୍ୟ ରୋଳରେ ସେ ଯୋଗ ଦେଇ ପାରିଲା ନାହିଁ। ସେଇଟା ତାକୁ ରାକ୍ଷସର ବିକଟ ହାସ୍ୟ ପରି ଶୁଭିଗଲା। ଜୟକୃଷ୍ଣ ମନ ଇଚ୍ଛା ହସଟାଏ ହସି ନେଇ ପୁନର୍ବାର ଆରମ୍ଭ କଲା—ବୁଝିଲୁ ନା ବାଉଳିମା, ସୁଷି ଏବେ ପଢୁଛି ବା ନ ପଢୁଛି, ଯାମ ଛାଯିଁଟା ଆମେ କରିଦେଲେ, କଥା ସରିଲା। ଏବେ ଜୟକୃଷ୍ଣ ଆନନ୍ଦରେ ଚାଲିବେ କଲିକତା, ଅର୍ଥାତ୍ ସେହି ଲୁଚିବାର ପୁରୀକୁ।

ବାଉଳିମା ମନେ ମନେ ଅଭିଶାପ ଦେଇ କହିଲା—“ଗାତକୁ ।”

ସ୍ମୃତି ଘର ଭିତରେ ବସି ସମସ୍ତ କଥା ଶୁଣୁଥିଲା । ମନେ ମନେ ଟିପ୍ପଣୀ ଦାଢ଼ିଲା—“ନରକକୁ ।”

ତା ପରଦିନ ବାଉଳିମା ତତ୍ତ୍ୱାନୁସନ୍ଧାନ କରିବାରେ ପ୍ରାଣପଣେ ଲାଗିଗଲା । ଗୋବର୍ଦ୍ଧନ ମହାନାଏକ ଲୋକଟା କିଏ ? ଅନେକ ପେଟଲୋକଙ୍କୁ ପଚାରି ବୁଝିଲା । ଭଲ ଭଲ କରି ସମସ୍ତ ଖବରଣୀ ସଂଗ୍ରହ କଲା । ତିନି ଗାଁ ପରେ ଗୋବର୍ଦ୍ଧନ ମହାନାଏକ ବୋଲି ଏକ ମହାଜନ ଅଛି । ଅବଶ୍ୟ ସେଭଳି ଡାକୁଆ ମହାଜନ ନୁହେଁ, ତେବେ ବେଶ୍ ପଇସାବାଲା । ଦାପ ଗୋସାଇଁବାପଙ୍କ ଅମଳରୁ ମହାଜନୀ କାରବାର । ହେଲେ ଲୋକଟା ପାକଲ,—ଓମର ପଚାଶର ଆଖପାଖ । ସନେଇମା ବାଉଳିମାର ଜଣେ ଆତ୍ମା ପେଟଲୋକ । ସେ ଆଖି ଦ’ଟା ସଦାତାଳେ କାଢ଼ି ପକାଇ କହିଲା—କ ଲୋ ! ଜାଣୁ ନାହିଁ କି ଲୋ ? ହାତ ପରି ମାଇପଟା ରହିଛି ପରା ! ପୁଚୁଛି ଡିଲା ! ହେବଲ, ମର୍ଦ୍ଦଟା କଥା କହ ନା । କାଲେ ଆଉ ଗୋଟେ ବାହା ହବ,—ମନ ସକ ସକ ହଉଚି । ପଇସା ସବୁ କରେ ଲୋ, ପଇସା ସବୁ କରେ । ହାତରେ ଧନ ଥିଲେ ଲୋକ ଦନ୍ତ କଣ, ଦନ୍ତଶ୍ରୀ ବାହା ହବାକୁ ମନ କରେ । ହଉଲୋ ମା, ତୋର ମୋର ଯାଏ ଆସେ କେତେ ? ତେବେ, ମାଇପଟା ମନରେ ସୁଖୀ ନାହିଁ । କେଉଁଠୁ ଆସିବ ? ସଉତୁଣୀ ନେଇ ଘର କରିବାକୁ କାହା ମନ ରହେ ? କହିଲା—

“ସଉତୁଣୀ ନେଇ ଘର କରିଥିବୁ, କାଠ ଲାଗିଥିବ ଚୋଳ,
ପଣତ କାନିରେ ଆଖି ପୋଛୁ ପୋଛୁ କାଟୁଥିବୁ ସାରାକାଳ ।”

ଏଇତ ଶାସ୍ତ୍ର କଥା । ସେଥିରେ ଆଉ ହରଷ ଭଉଠୁଁ ଅସିବ । ବାରୁପର ମାଇକିନାଠା, ଏଇ କଥା ଚବଶି ଘଣ୍ଟା ଭଲ ଭଲ କଣ୍ଠା ପର ହୋଇଗଲଣି ।

ବାଉଳମା ଏହା ଶୁଣି ଗାଲରେ ହାତ ଦେଲା । କଣ ! ଏଇଠା ବେକଠରେ ପଗ ଗଣୀକ ଅଣି ବାନ୍ଧବା କଥା ହଉଚ ! ସୁବର୍ଣ୍ଣ ପ୍ରତିମାକୁ ଅଲକ୍ଷଣା କ ପଙ୍କରେ ଘାଣ୍ଟିବାକୁ ଯାଉଛ ? ହାୟ୍-ହାୟ୍-ହାୟ୍ ! କିଏ ତାକୁ ଏତେ କଥା କହିବାକୁ କହୁଥିଲା ? କିଏ ତା ଗୋଡ଼ ଧରି ଅଳି କରୁଥିଲା ? ଯୋଚିମୋଖିଆଠା କେଉଁଠି ଥିଲା, ଅଟମ୍ଭିତରେ ଅସି ଏତେ ନାଠ ଲଗେଇଛି ! ସେଇ କଳିକତାରେ ମଲା ନାହିଁ ? ହାଡ଼ ଯୋଷାଇଲେ ନାହିଁ ? ଏତେ ଲୋକଙ୍କୁ ଅକାଳ ମଉତ ହଉଚି, ତାକୁ ଯା ଭୁଲିଗଲା ! ଏହାପରେ ବାଉଳମା ମନେ ମନେ ବହୁତ ବାହୁନି ହେଲା । ଜମ୍ବୁକ୍ଷେତ୍ରର ମୁଣ୍ଡଠା ଗୋଡ଼େଇ ଖାଇ ଯିବାକୁ ତାର ଇଚ୍ଛା ହେଲା । ଏହା ପରେ ପୁଣି ସେ ଖବର ପାଇଲା ଯେ ଜଇ ଏ ମଧ୍ୟରେ କିଛି ଟଙ୍କା ବ ପେଟରେ ପକେଇ ସାରିଲଣି,— ଆଉ ପୁଲାଏ ଅଚ୍ଛା କରି ମାରିବ । ବାଉଳମା ଭାବିଲା—ହାୟ୍ ରେ ଚଣ୍ଡାଳ ! ଏଇଥିପାଇଁ ତ କୁଲୁବୁଛି ! କଥା ଏତେ ଗଭୀରରେ ଯାଇ ପଶିଛି । ଭାରି ଭଲ ମଣିଷଟି ପରି କହୁଛି—ମୋ ମୁଣ୍ଡରୁ ଗୋଟାଏ ବୋଝ ଗଲା । ଓହୋ ! ଯେତେ ଯେମିତି ଦେହଗୋଠାକ ମହାପ୍ରସାଦରେ ଗଢ଼ା ରେ !

ଏହାପରେ ଭାବୁଁ ଭାବୁଁ ବାଉଳମା ଅସି ଘରେ ପହଞ୍ଚିଲା । ପହଞ୍ଚି, ଡାକିଲା—'ରଣି !' ସୁଷି ମନରେ ସୁଖ ନ ଥିଲା । ସେ ମେଞ୍ଚାଟି ହୋଇ ଘରର ଗୋଟାଏ କୋଣରେ ପଡ଼ିଥିଲା । ଅକାଶ ପାତାଳ କେତେ କଣ ଭାବୁଥିଲା । ଭାବନାର ଅଦ୍ୟ ଅନ୍ତ ନ ଥିଲା । ଅନ୍ୟମନସ୍କ ଥିବାରୁ ବାଉଳମାର ଡାକଟା ତା କାନରେ ପଶିଲା ନାହିଁ । ବାଉଳମା

ଖୋଜି ଖୋଜି ଅସି ସେହି କୋଣଅରେ ହାବୁଡ଼ଗଲା । ସୁଷିର ଅବସ୍ଥା ଦେଖି ତା ମନରେ ବଡ଼ କଷ୍ଟ ହେଲା; କିନ୍ତୁ କିଛି କହିପାରିଲା ନାହିଁ । ଖାଲି ଠିଆ ହୋଇ ରହିଲା,—ଯେପରି ବିମୂଢ଼ମୂର୍ତ୍ତି । ସୁଷି ଚମକି ପଡ଼ି ଉଠିଲା । ତାର ଅନ୍ୟମନସ୍କତା ଉଭେଇଗଲା । ମନରେ ସେ ଦୃଢ଼ତା ଅଣିବାକୁ ଚେଷ୍ଟାକରି କହିଲା—ଅସିଲଣି ମା ? ଏତେ ବେଳଯାଏ ଅଜି କୁଆଡ଼େ ଯାଇଥିଲ କହନି ?

ସୁଷି ଏବେ ବାଉଳିମାକୁ 'ମା' ବୋଲି ଡାକିବାକୁ ଅରମ୍ଭ କରିଛି । ବାଉଳିମା କହିଲା କୁଆଡ଼େ ଯିବି ସଣି ? ଏଇ ଗାଁ ଗଣ୍ଡାକୁ ଟିକିଏ ବୁଲିବାକୁ ଯାଇଥିଲି । ଅଉ କଉଁ ଗାଡ଼କୁ ଯିବି ?

ଉତ୍ତର ଦେବାର ଭଙ୍ଗିରୁ ବାଉଳିମା ମନରେ ଶାନ୍ତି ଥିଲା ପରି ଜଣା ପଡ଼ିଲା ନାହିଁ । ସୁତରାଂ ସୁଷମା ଅଉ କିଛି କହିବାକୁ ସାହସ କଲା ନାହିଁ ।

---

## ସପ୍ତବିଂଶ ପରିଚ୍ଛେଦ

ବିବାହ ଅଉ ଅଳ୍ପଦିନ ରହିଲା ।

ସୁଷମାର ଅଜି ଗୋବର୍ଦ୍ଧନଙ୍କ ଘରକୁ ଯିବାର କଥା । ଉଠା-ଚଳିଆ ହେଲେ ଯାହା କରିବାକୁ ହୁଏ ତାହା ଏହିପରି । ପାତ୍ରୀକୁ ଅଗରୁ ନେଇଯିବାକୁ ହୁଏ । ଦିନର ବିବାହ ନିଜ ଘରେ ଯଥା ସମୟରେ ହୁଏ । ତଦନୁସାରେ ସୁଷମାକୁ ଅଜି ଗୋବର୍ଦ୍ଧନଙ୍କ ଘରକୁ ନେଇଯିବାକୁ ହେବ । ସେ ଭାର ଜମ୍ବୁକୃଷ୍ଣ ଉପରେ । ସନ୍ଧ୍ୟା ପରେ ବାହାରିବା ସ୍ଥିର ।

ସନ୍ଧ୍ୟାର ଅବ୍ୟବହିତ ପୂର୍ବରୁ ଜମ୍ବୁକୃଷ୍ଣ ଗୃହ ଭିତରକୁ ପ୍ରବେଶ କରି କଡ଼ା ଗଳାରେ ଡାକିଦେଲା—ବାଉଳିମା !

ବାଉଳମା ଡାକଟା ଶୁଣି ଶୁଣିଲା ନାହିଁ । ଜୟକୃଷ୍ଣ ତାର ସ୍ୱରରେ ଚିତ୍କାର କରି ଉଠିଲା—କାନରେ କଣ ହୋଇଚି କି ?

ବାଉଳମା ତୀବ୍ର ସ୍ୱରରେ ଜବାବ୍ ଦେଲା—ହୋଇଚି, ତୋ ମୁଣ୍ଡ ଆଉ ଗଣ୍ଡି । ଏତେ ଗରମ କାହିଁକି ?

ଜୟକୃଷ୍ଣ—ଗରମଟା ଯେ ଦେଖି ତୋର ଦେଟୁଛୁ ! ଆଜ ଯିବାକୁ ହେବ, ସେ କଥା କଣ ମନେ ନାହିଁ ?

ବାଉଳମା—ଯାହାର ଯିବାର କଥା ତାକୁ କହବୁ । ମୁଁ କଣ ଯିବି ?

ଜୟକୃଷ୍ଣ ବିରକ୍ତ ହୋଇ ଡାକିଲା—ସୁଷମା !

କୌଣସି ଉତ୍ତର ଆସିଲା ନାହିଁ । ଅଧିକ ବିରକ୍ତ ହୋଇ ଗର୍ଜ୍ଜନ କଲା—ମଲୁଣି କି ? ଆଜ ଭଲଧନେ ମୋ ପାଟିରୁ ଅବାଚ୍ୟ ବାହାରୁଛି । ଘରୁ ବାହାରି ପାରୁ ନାହୁଁ ?

ସୁଷମା ବିଦ୍ୟୁତ୍ ବେଗରେ ବାହାରି ଆସି ଜୟକୃଷ୍ଣର ଗୋଡ଼ ଧରି ପଡ଼ିଗଲା । ଜୟକୃଷ୍ଣ କହିଲା—ରହ୍ ତୋ ଢଙ୍ଗ । ଏଟା ବାଉଳମାର ଶିକ୍ଷା ନା କଣ ?

ବାଉଳମା ଗର୍ଜି ଉଠିଲା—ମୁହଁ ସମ୍ଭାଳି କଥା କହ । ଆଉ ଥରେ ବାଉଳମାର ନାଁ ଧରିଲେ ଜିଭ ଉପାଡ଼ି ଦେବି ।

ସୁଷମା ବାଷ୍ପଜଡ଼ିତ କଣ୍ଠରେ କହିଲା—କ୍ଷମା କର, ଜାଉଁଭାଇ । ମୁଁ ପାରିବି ନାହିଁ ।

ଜୟକୃଷ୍ଣ ଟୁଦ୍ ଜୋରରେ ଗୋଡ଼ ଦିଟା ଛଡ଼ାଇ ନେଇ ଅଧର ଦଂଶନ କରି କହିଲା—କଣ ? ପାରିବୁ ନାହିଁ ? ଗୋଟାଏ ଟୋଇଠା ଦେଇ ତୋ କଲିଜା ଛିଚୁ କରିଦେବି । ମୋତେ ଚିହ୍ନୁ ନାହୁଁ ?

ବାଉଳମା ଆଉ ସମ୍ଭାଳି ପାରିଲା ନାହିଁ । ନିକଟରେ ଗୋଟାଏ ଝାଡ଼ୁ ପଡ଼ିଥିଲା । ସେଟା ଟାଣିଆଣି ତୁରନ୍ତ ଆସି ଆଗରେ ଛିଡ଼ା ହୋଇ-ଯାଇ କହିଲା—ନିଅ କୁଁଡ ମୋ ଝିଅ ଉପରେ ଦେଖେଁ ।

ଏହା କହି ଝାଡୁଟା ଜୟକୃଷ୍ଣଙ୍କ ମୁଖମଣ୍ଡଳର ନିତାନ୍ତ ନିକଟବର୍ତ୍ତୀ କରିଦେଲା ।

ଜୟକୃଷ୍ଣ ନିରସ୍ତ୍ର । ସୁତରାଂ ଯୁଦ୍ଧରେ ଯୋଗଦାନ କରିବାଟା ଉଚିତ ମନେ ନ କରି ଟିକିଏ ହଟିଯାଇ ଚକ୍ଷୁ ଦୁଇଟାରୁ ନିଷ୍ଫଳ ଅଗ୍ନିବର୍ଷଣ କରିବାକୁ ଲାଗିଲା । ଏହି ସମୟରେ ଦାଣ୍ଡଦ୍ୱାରରେ କଳରବ ଶୁଣାଗଲା । ଜୋତାର ମଚ୍ ମଚ୍ ଶବ୍ଦ ସଙ୍ଗେ ସଙ୍ଗେ ଦୁଇଟି ପୁରୁଷ ମୂର୍ତ୍ତିର ଅକସ୍ମାତ୍ ଆବିର୍ଭାବ ହେଲା । ଜଣେ ବର୍ଷୀୟାନ୍, ଅନ୍ୟଟି ତରୁଣ । ପଛରେ ହନୁମନ୍ତ ସିଂ, ସର୍ଦ୍ଦାର ବାବୁଲ, ନବଘନ ପଣ୍ଡା । ବାହାରେ ମୁସଲମାନୀ ଗଳାର ଆବାଜ ଶୁଣାଯାଉଛି—ବାବୁଜିକା ବଚ୍ଚା ଗାଡ଼ିସେ ଉତାର୍ କର୍ ଭିତର ଦୋ ।

ବାଉଳୀମାର ହାତରୁ ଝାଡୁଟା କେତେବେଳେ ଖସି ପଡ଼ିଲାଣି ତାକୁ ଜଣା ନାହିଁ । ଜୟକୃଷ୍ଣ ସ୍ତମ୍ଭୀଭୂତ । ସୁକି ଧୀରେ ଧୀରେ ଯାଇ କୃଷ୍ଣମାଧବଙ୍କ ପାଦତଳେ ପ୍ରଣାମ କଲା । କୃଷ୍ଣମାଧବ ସସ୍ମିତମୁଖରେ କହିଲେ—ଉଠ୍ ମା ।

ଯୁଦ୍ଧର ଘନଘଟା ଏକ ମୁହୂର୍ତ୍ତରେ ସଫା ହୋଇଗଲା ।

ଜୟକୃଷ୍ଣ ଗୃହୀଙ୍କ ଲୋକ । ସମସ୍ତ ଘଟଣା ଅଭ୍ରାନ୍ତ ଅନୁମାନ ବଳରେ ବୁଝିନେଲା । ଘରଟା ଲୋକବାକରେ ପୂର୍ଣ୍ଣ ହୋଇଗଲାଣି ଦେଖିଲା । ବାହାରକୁ ଯାଇ ଦଲଦାର ମିଆଁଙ୍କ ମୂର୍ତ୍ତି ଦେଖିଲା, ହାତରେ ପୁରୁଷେ ଉଚ୍ଚ ଠେଙ୍ଗାଟା ମଧ୍ୟ ଦେଖିଲା,—"ସଲାମ୍ ମିଆଁ ଜି" ବୋଲି କହି ଅଚଳାଭକ୍ତି ପ୍ରକାଶ କଲା । ଦଣ୍ଡେ ଘଡ଼ିଏ ଏପାଖ ସେପାଖ ଲଙ୍ଗ୍ ଲଙ୍ଗ୍ ହେଲା । ଭିତରେ ଭିତରେ ମନଟା ଭାରି ଫିକା ପଡ଼ିଗଲା । ଭାରି ବଡ଼ ଶିକାରଟାଏ ହାତରୁ ଖସିଗଲା । ହାୟ ହାୟ ! ଧନ ଦ'ଟା ଆଗରୁ ଛାମଟା ହାସଲ କରି ନେଇଥିଲେ କେତେ ଭଲ ହୋଇ ନ ଥାନ୍ତା ବୋଲି ଅନୁତାପରେ ଟିକିଏ ଦଗ୍ଧ ହେଲା । ମାତ୍ର

କପାଳକୁ ଆଦର ରହିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଗୋବର୍ଦ୍ଧନଙ୍କଠାରୁ ଶହେ ଟଙ୍କା ହାତପଇଠ କରି ସାରିଥିଲା । ସୁତରାଂ ଏପରି ଅବସ୍ଥାରେ ବୁଦ୍ଧିମାନ ବ୍ୟକ୍ତିର ଯାହା କର୍ତ୍ତବ୍ୟ ତାହା କଲା,—ଖସିଲା । ଅନ୍ଧକାରର ଆବରଣ ତଳେ ଜମ୍ବୁକୃଷ୍ଣ ନିର୍ବିବାଦରେ ଚମ୍ପଟ ମାରିଲା । ଏ ଘଟଣା ପରେ, ଯେତେ ବଡ଼ ଅବସ୍ଥିତି ଠାଏ ହୋଇ ପଡ଼ିଛି, ଜମ୍ବୁକୃଷ୍ଣଙ୍କୁ ଯେ ଆବିଷ୍କାର କରିପାରିଛନ୍ତି, ତା କାହାରିକୁ ଜଣା ନାହିଁ ।

ନୈଶଭୋଜନ ସମାପନ ପରେ କୃଷ୍ଣମାଧବ ସମସ୍ତଙ୍କୁ ଅସ୍ଥିର କରି ପକାଇଲେ । କହିଲେ, ଶୀଘ୍ର ଶୀଘ୍ର ଖିଆପିଆ ଶେଷ କରିଦିଅ, ବାହାରି ପଡ଼ିବାକୁ ହେବ । ସମସ୍ତେ ଖାଇ ପିଇ ସାରିଲେ । କେବଳ ସୁପ୍ତି ଓ ବାଉଳିମା ଖାଇ ନ ଥିଲେ । କୃଷ୍ଣମାଧବ ସୁଷମା ନିକଟରେ ଉପସ୍ଥିତ ହୋଇ କହିଲେ—"ଖାଇନାହୁଁ ମା ? ଯା, ଶୀଘ୍ର ଯା । ଆଜି ଯେ ଯିବାକୁ ହେବ, ଆଉ ଡେରି କର୍ ନା ।"

ସୁପ୍ତି ବାଉଳିମାଙ୍କୁ ଅନ୍ତରାଳକୁ ଡାକି ପଚାରିଲା—ଜଇ ଭାଇ କୁଆଡ଼େ ଗଲା ମା ?

ବାଉଳିମା ଉତ୍ତର ଦେଲା—ଯମପୁରକୁ ।

ସୁପ୍ତି—ନା, ଥରେ ଦେଖ୍ ମା, କାଳେ ବାଣ୍ଡପଡ଼େ ଥିବ । ସେ ଯେ ଖାଇନାହିଁ ।

ବାଉଳିମା କଠୋର ସ୍ୱରରେ କହିଲା—ଚାଲ ଚାଲ୍, ବେଳ ହୋଇଯାଉଛି । ମୁଁ ଆଉ ଦେଖି ନାହିଁ ଯେ ଦେଖିବି । ଭାଗ୍ୟେ ତାର ସେହି ଛୁଣ୍ଡା ବେଗ୍ ଖଣ୍ଡିକ ନେଇଯାଇଛି । ନ ହେଲେ ସେଇଟାକୁ ଚୁଲ୍ଲୀରେ ପକାଇ ପୋଡ଼ି ମନର ଓରମାନ ମେଣ୍ଟାଇଥାନ୍ତି ।

ଏ ମଧ୍ୟରେ ବାଉଳିମା ଜମ୍ବୁକୃଷ୍ଣର ଏକମାତ୍ର ସମ୍ପତ୍ତି ସେହି ବେଗ୍ ଖଣ୍ଡିକୁ ଅଣ୍ଡାଳି ଆବିଷ୍କାର କରିବାକୁ ଚେଷ୍ଟା କରି ସାରିଥିଲା । ମାତ୍ର ସେ ଚେଷ୍ଟା ନିଷ୍ଫଳ ହୋଇଥିଲା ।

ବାଉଳୀମାର ଆନନ୍ଦର ସୀମା ନ ଥିଲା । ଗୋଡ଼ ଆଜି ତାର ତଳେ ଲାଗୁ ନ ଥିଲା । ରଙ୍କ ନିଧି ପାଇଲେ ମଧ୍ୟ ଏତେ ଖୁସି ହୁଏ ନାହିଁ,—ଅନ୍ଧ ଚକ୍ଷୁ ପାଇଲେ ବି ଏତେ ଆହ୍ଲାଦ ପ୍ରକାଶ କରେ ନାହିଁ । ତାର ଯେପରି ସମସ୍ତ ମନସ୍କାମ ଆଜି ପୂର୍ଣ୍ଣ । ତା "ବାବୁ" ଆସିଛନ୍ତି, ଲୁପ୍ତ ରତ୍ନର ଉଦ୍ଧାର ହୋଇଛି । ଅକାଳ ଧୂମକେତୁଟା ଆପେ ମିଳେଇ ଯାଇଛି । ପୃଥିବୀର ଭାଗ୍ୟ-ତପନ ପୁଣି ହସି ଉଠିଛନ୍ତି । ଆଉ ବାକି ରହିଲା କଣ ? ସୁଖର ସପ୍ତମ ସ୍ୱର୍ଗରେ ବାଉଳୀମାର ଆସନ ସୁପ୍ରତିଷ୍ଠିତ ।

# ପରିଶିଷ୍ଟ

କୃଷ୍ଣମାଧବ ସଦଳବଳେ ଯେତେବେଳେ ପୃଥିକୁ ନେଇ ଫେରି ଆସିଲେ, ସେତେବେଳେ ରାଧାପ୍ରିୟା ମାଳତୀକୁ ପାଖରେ ବସାଇ କହୁଥିଲେ—ମାଳ, ଆଜି ବାଁ ଆଖିଟା କାହିଁକି ଘନ ଘନ ଫରକୁଛି କହନା ? ଅଣ୍ଟା ଅଛି, ଫରକି ଉଠୁଛି । ମାଳ କହୁଥିଲା—ସେ ତ ଭଲ ଲକ୍ଷଣ ଅପା । ଭାରି ଶୁଭଟାଏ ଘଟିଲା ଭଳି ମୋତେ ଜଣା ପଡୁଛି ।

ରାଧାପ୍ରିୟା—ହଉ, ଶୁଭଟାଏ ଘଟିବ ନାହିଁ ତ କଣ ? ଶୁଭ ଘଟିବା ଏ ଜୀବନରେ ସରିଯାଇଛି ମା !

ଠିକ୍ ଏହି ସମୟରେ କୃଷ୍ଣମାଧବ ଦୁଇ ହାତରେ ଦୁଇଜଣଙ୍କୁ ଧରି, ଦକ୍ଷିଣ ପଟରେ ହରଶଙ୍କର ଓ ବାମ ପଟରେ ସୁଷମା, ଅକସ୍ମାତ୍ ଆସି ଉପସ୍ଥିତ ହୋଇଗଲେ ଏବଂ ଆନନ୍ଦରେ ଅଧୀର ହୋଇ

କହିଲେ—“ଏଇ ନେ ନାନ, ଆଶୀର୍ବାଦ କର, ଏ ଦୁଇଟି ପ୍ରାଣୀ ଦୀର୍ଘଜୀବୀ ହୋଇ ସୁଖରେ ରହନ୍ତୁ । ଆଉ ଏ ବୁଢ଼ା କୃଷ୍ଣମାଧବର ଅପରାଧ ସମସ୍ତେ ଭୁଲିଯାଅ ।”

ରାଧାପ୍ରିୟା କ୍ଷଣକାଳ ଅବାକ୍ ହୋଇ ରହିଲେ । ପରେ ପଦ-ପ୍ରାନ୍ତରେ ଅବଲୁଣ୍ଠିତ ଦୁଇଟି ତରୁଣ ମସ୍ତକ ସ୍ପର୍ଶ କରିବାକୁ ଯାଇ ଅବାରିତ ଅଶ୍ରୁଧାର ଢାଳିଦେଲେ । ସୁଷମାକୁ ପାଦତଳୁ ଉଠାଇବା ସମୟରେ ସେ ଅଜ୍ଞାତସାରରେ କହି ପକାଇଲେ—ଉଠ୍ ମା, ସତୀ ସୁଲକ୍ଷଣୀ ! ପୁତ୍ରବତୀ ହୋଇ ଇନ୍ଦ୍ରାଣୀର ସୌଭାଗ୍ୟ ଭୋଗ କର ।

ବାଉଳମା ରାଧାପ୍ରିୟାଙ୍କୁ ଦଣ୍ଡବତ କରୁଁ କରୁଁ ହର୍ଷ ଗଦ୍‌ଗଦ ସ୍ୱରରେ କହିଲା—ମୁଁ ଆସିଛି ମା ଠାକୁରାଣୀ !

ରାଧାପ୍ରିୟା କହିଲେ—କିଏ ଲୋ ? ବାଉଳି ମା ? ଉଠ୍ ଉଠ୍, ତୁ ବି ଆସିଛୁ ? ଅଚ୍ଛା କରିଛୁ—ଭଲ କରିଛୁ ।

ବାଉଳମା ରାଧାପ୍ରିୟାଙ୍କ ଗୋଡ଼ଟିଏ ଟାଣି ନେଇ ମଦନ କରିବାକୁ ଆରମ୍ଭ କରିଦେଲା ଏବଂ କହିବାକୁ ଲାଗିଲା ଆହା ହା ! ଏ ଶ୍ରୀପାଦ ଛୁଇଁବା କମ୍ ଭାଗ୍ୟର କଥା ନୁହେଁ ମା !

ଇତ୍ୟବସରରେ ମାଳତୀ ସୁଷମାକୁ ଟାଣି ନେଇ ଗୋଟାଏ ନିର୍ଜନ କୋଠରୀରେ ଅପୂର୍ବ ପ୍ରଣୟର ପାରିବାର ଉକ୍ତିଲେଇ ଦେଉ-ଥିଲା । ମାଳତୀ କହିଲା—ସୁଷମା, ଚିହ୍ନି ପାର୍ ବା ନ ପାର୍, ଏହି ପରମ ପୂଜନୀୟ ନଡ଼ ଭଉଣୀର ଶ୍ରୀଚରଣରେ ଗୋଟାଏ ସ୍ୱାମୀଙ୍କ ପ୍ରଣାମ କର୍‌ତ ।

ସୁଷମା ସମ୍ମିତମୁଖରେ ଗୋଡ଼ତଳେ ଜୁହାର ହେଲା । ମାଳତୀ ମୁଣ୍ଡ ଉପରେ ହାତ ରଖି କହିଲା—ହର ଚରଣରେ ମତ ଅଟଳ ରହୁ ।

ସୁଷମା ହାତଟାକୁ ଠେଲିଦେଇ କହିଲା—ଯାଃ ।

ପରଦିନଟା ବୈଶାଖ ମାସର ଗୋଟାଏ ଭାର ଶୁଭଦିନ ଥିଲା, ବିବାହ ପ୍ରଭୃତି ମଙ୍ଗଳ କ୍ରିୟାପାଇଁ ପ୍ରଶସ୍ତ । କୃଷ୍ଣମାଧବ କହିଲେ—ଆଜ ଶୁଭାନୁଷ୍ଠାନ ହେବହିଁ ହେବ ।

କୃଷ୍ଣମାଧବଙ୍କ ଇଚ୍ଛା ଓ କର୍ମ ମଧ୍ୟରେ ବିଶେଷ କିଛି ବ୍ୟବଧାନ ନ ଥାଏ । ସୁତରାଂ ଶୁଭ ଘଟ ବସିଲା, ଶଙ୍ଖଘଣ୍ଟ ବାଜିଲା, ଶୁଭ ମନ୍ତ୍ର ଶୁଭ ମୁହୂର୍ତ୍ତରେ ଉଚ୍ଚାରିତ ହେଲା । ବୃଦ୍ଧ ଗୁମାସ୍ତା ବୟୋବୃଦ୍ଧ ବ୍ରାହ୍ମଣ, ମନ୍ତ୍ରୋଚ୍ଚାରଣ କରି ସୁଷିକୁ ସେ ନିଜ କୁଳକୁ ନେଲେ ଏବଂ ନିଜେ କନ୍ୟା ପିତା ହେଲେ । ବର ପିତାର କାର୍ଯ୍ୟ କଲେ—ମାତୁଳ କୃଷ୍ଣ-ମାଧବ । ହରଶଙ୍କର ବେଦବାକ୍ୟ ପଢ଼ିଲେ—"ଯଥା ରାମସ୍ୟ ବୈଦେହୀ, ଯଥା ରାବଣସ୍ୟ ମନ୍ଦୋଦରୀ" ଇତ୍ୟାଦି ।

ସୁଷମା ପାବସ୍ଥା ହେଲା ।

ମାଳତୀ ନାମରେ ସୁଷି ନିକଟକୁ ଯେଉଁ ଚିଠିଟା ପଠାଯାଇଥିଲା, ସେଇଟା ଦାବିଦାର ଅଭାବରୁ ସେହିଦିନ ଫେରି ଆସିଲା । ମାଳତୀ ତାହା ଆଣି ସୁଷି ନିକଟରେ ଉପସ୍ଥିତ ହୋଇ କହିଲା—

"ଆଲୋ ସଖି ସୁଷି ! ବସିଛୁ ପର ରୂପି !
ମୁଁହନୁହାଁଟା ପାଇଲେ ଏଥର ହୋଇଯିବୁ ତ ଖୁସି ?"

ସୁଷମା ହସି ହସି କହିଲା—ଭାରି କବି ଜିତିଛ ତ ଅପା ?

ମାଳତୀ ଜବାବ୍ ଦେଲା—

"ଦେଖି ଯେ ମୁହିଁ ଛବି,
ହୋଇଚ ଅଜ କବି,
କବିତା ଅଜ ବାହାର ପଡ଼େ ପୀରତ ତୋର ଲଭ ।"

ଏହା କହି ମାଳତୀ କଡ଼ା କଣ୍ଠରେ ଅଜ୍ଞା ଦେଲା—ହାତ ଦେଖା, ନ ହେଲେ ଭଲ କଥା ହେବ ନାହିଁ ।

ସୁଚି ପୋଷ ମାନିଲା ପରି ହାତ କାଢ଼ିଲା ।

ମାଳତୀ କହିଲା—ଅଞ୍ଜଳି କର ।

ସୁଚି ସୁବୋଧ ଶିଷ୍ୟାଟି ଭଳି ଏ ଅଜ୍ଞା ପାଳନ କଲା ।

ଝଣ୍, ଝଣ୍, ଝଣ୍ । ମାଳତୀ ସେ ଅଞ୍ଜଳି ଭିତରେ ଠଙ୍କା ଗୁଡ଼ାଏ ଅଜାଡ଼ି ଦେଲା ।

ଏହି ଠଙ୍କାର ଇତିହାସଟା ସେ ମାଳତୀ ମୁହଁରୁ ପରେ ଶୁଣି ସମସ୍ତ କଥା ବୁଝି ପାରିଥିଲା ।

ଏଥର ଖାଲି ମଧୁରଜନୀର ଉପାଖ୍ୟାନଟା ବାଡ଼ିଦେଲେ ମୋର ଛୁଟି !

*

ସୁନ୍ଦର ଚନ୍ଦ୍ରକିରଣ ଜକ୍ ଜକ୍ ବୈଶାଖୀ ରଜନୀ । ସୁସଜ୍ଜିତ ଶୟନ କକ୍ଷ । ମନୋରମ ମଧୁଶଯ୍ୟା । ସମଗ୍ର କକ୍ଷଟି ସମୁଜ୍ଜ୍ୱଳ କରି ରଖିଛି ଏକ ମୂଲ୍ୟବାନ୍ ଅଲୋକ ଝାଡ଼ । ବାହାରେ ଜ୍ୟୋସ୍ନା ହସୁଛି, ଭିତରେ ଅଲୋକ ।

ଶୁଭ୍ରଶଯ୍ୟା ଉପରେ ଉପବେଶନ କରି ପ୍ରଚୁର ସ୍ୱର୍ଣ୍ଣାଳଙ୍କାର-ମଣ୍ଡିତା ସୁଚି ହରିଶଙ୍କରଙ୍କ ହାତକୁ ବଢ଼େଇ ଦେଲା ଗୋଟିଏ ଛୋଟ ପାର୍ସେଲ ବାକ୍ସ । ହରିଶଙ୍କର ତନ୍ମଧ୍ୟରୁ ସୁବର୍ଣ୍ଣହାର କାଢ଼ିଲେ,

ସ୍ୱର୍ଣ୍ଣାଙ୍ଗୁରୀୟ ବାହାର କଲେ, ସୁନ୍ଦର ଚୁଡ଼ି ମଧ୍ୟ କାଢ଼ିଲେ ଏବଂ ଗୋଟି ଗୋଟି କରି ପ୍ରିୟତମାର ଅଙ୍ଗଦେଶରେ ପିନ୍ଧାଇଦେଲେ । ଅନ୍ୟାନ୍ୟ ଅନେକ ଅଳଙ୍କାର ପରିଧାନ କରିଥିବା ସତ୍ତ୍ୱେ ଏହି କେତୋଟି ଅଳଙ୍କାର ପାଇଁ ଯେପରି ସ୍ଥାନ ଖାଲି ଥିଲା ।

ସ୍ମିତ ପ୍ରସ୍ଫୁଟିତମୁଖରେ ସଲଜ୍ଜ ନୟନର ଦୃଷ୍ଟି ନିକ୍ଷେପ କରି ପଚାରିଲା—"ଏଥର ହେଲା ?"

ହରିଶଙ୍କର ଉଦ୍‌ବେଳିତ ପ୍ରାଣରେ ପ୍ରଗାଢ଼ ଆଲିଙ୍ଗନ କରି ଉତ୍ତର ଦେଲେ—"**ପରିପୂର୍ଣ୍ଣ** ।"



Printed by U. C. Mohanty, Cuttack Publishing Press, Cuttack—1947